ସୁବର୍ଣ୍ଣ ଜୟନ୍ତୀ ପୁସ୍ତକ ମାଳା

# ସାରସ୍ୱତ ସାଧକ

# ଲକ୍ଷ୍ମୀନାରାୟଣ



ହଂ ନନ୍ଦ ମହାନ୍ତି

ସାରସ୍ୱତ ସାଧକ ଲକ୍ଷ୍ମୀନାରାୟଣ

ଲେଖକ :
ଇଂ ନନ୍ଦ ମହାନ୍ତି

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର - ୧୪

ପ୍ରଥମ ପ୍ରକାଶ : ୨୦୦୯

ଅକ୍ଷର ବିନ୍ୟାସ ଓ ମୁଦ୍ରଣ :
ବିଜୟିନୀ ପବ୍ଲିକେଶନ୍ସ, କଟକ

ମୂଲ୍ୟ : ଟ ୭୫.୦୦
(ପଞ୍ଚସ୍ତରୀ ଟଙ୍କା ମାତ୍ର)

SARASWATA SADHAKA LAXMINARAYAN

Written by :
Er Nanda Mohanty

Publisher :
Orissa Sahitya Akademi
Sanskruti Bhawan, Bhubaneswar - 751 014

First Edition : 2009

Data Process & Printed by :
Bijayinee Publications, Cuttack

Price : Rs 75.00
(Rupees Seventy Five Only)

ISBN: 81-7586-188-6

# ଅଗ୍ରଲେଖ

ସାରସ୍ୱତ ସାଧକ ଲକ୍ଷ୍ମୀନାରାୟଣ ମହାନ୍ତି (୧୦.୦୧.୧୯୧୯-୨୭.୦୧.୨୦୦୫) ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଅନୁବାଦ ବ୍ୟତୀତ ଗଳ୍ପ, ଉପନ୍ୟାସ, ଜୀବନୀ, ଦର୍ଶନ ଓ ଆଧ୍ୟାତ୍ମିକ ବିଭାଗରେ ନିଜର ବଳିଷ୍ଠ ସ୍ୱାକ୍ଷର ଛାଡ଼ିଯାଇଛନ୍ତି । ନିଜର ଗଭୀର ଅଧ୍ୟବସାୟ ଫଳରେ ବିଶ୍ୱର ବିଭିନ୍ନ ଭାଷାର ଅନେକ ପୁସ୍ତକକୁ ସେ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଛନ୍ତି । ଅନୁବାଦ ସାହିତ୍ୟ ସୃଜନଶୀଳ ସାହିତ୍ୟ ଠାରୁ ଯେ କୌଣସି ପ୍ରକାରେ ନ୍ୟୁନ ନୁହେଁ ଏକଥା ଲକ୍ଷ୍ମୀନାରାୟଣ ଗଦ୍ୟ ଅନୁବାଦରେ ପ୍ରମାଣ କରିଛନ୍ତି । ଓଡ଼ିଆ ସାହିତ୍ୟରେ ମିନିଗଳ୍ପର ଧାରା ପ୍ରାୟତଃ ତାଙ୍କଠାରୁ ଆରମ୍ଭ ହୋଇଥିଲା । ୧୯୪୪ ମସିହାରେ ସହକାର ପତ୍ରିକାରେ ପ୍ରକାଶିତ 'ଅନୁରକ୍ତି' ଗବେଷକମାନଙ୍କ ଦୃଷ୍ଟିରେ ତାଙ୍କର ପ୍ରଥମ ମିନିଗଳ୍ପ । ସେ ରାଶି ରାଶି ସଂସ୍କାରଧର୍ମୀ ଓ ମିନିଗଳ୍ପ ରଚନା କରି ପାଠକୀୟ ଆଦୃତି ଲାଭ କରିଥିଲେ । ଜଣେ ଗାଳ୍ପିକ ଭାବରେ ସାରସ୍ୱତ ସାଧକ ମହାନ୍ତି ପରିବେଶ ବିଷୟବସ୍ତୁ ଖୋଜନ୍ତି ନାହିଁ ବରଂ ପରିବେଶ, ବିଷୟବସ୍ତୁ ଲକ୍ଷ୍ମୀନାରାୟଣଙ୍କୁ ଖୋଜି ଖୋଜି ସର୍ଜନାତ୍ମକ ଜାଲରେ ତାଙ୍କୁ ବାନ୍ଧି ପକାନ୍ତି । ଗଳ୍ପ କବିର ଶ୍ରେଷ୍ଠ ଦାନ ଏହାର ଏକ ଉଜ୍ଜ୍ୱଳ ଉଦାହରଣ । ତାଂକର ସେହିପରି ଉପହାର, ନୂଆ ବୋହୂ, ଲୁଥରୁ ବହ୍ନିଶିଖା ଇତ୍ୟାଦି ଗଳ୍ପ ତତ୍‌କାଳୀନ ସମୟରେ ସାହିତ୍ୟ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଜଣେ ଔପନ୍ୟାସିକ ଭାବରେ ମଧ୍ୟ ତାଙ୍କର କୃତିତ୍ୱ ସର୍ବଜନାଦୃତ । ମୁଖ୍ୟତଃ ଅନୁବାଦ ମାଧ୍ୟମରେ ସେ ଓଡ଼ିଆ ପାଠକମାନଙ୍କ ପାଇଁ ବିଶ୍ୱସାହିତ୍ୟର ଦ୍ୱାର ଖୋଲି ଦେଇଥିଲେ । ଏହିଭଳି ଜଣେ ଲେଖକଙ୍କ ଜୀବନୀ, ସାରସ୍ୱତ କୃତି ସମୂହକୁ ଭବିଷ୍ୟତ ପିଢ଼ିଙ୍କ ନିକଟରେ ପରିଚିତ କରାଇବା ଉଦ୍ଦେଶ୍ୟରେ ଓଡ଼ିଶା ସାହିତ୍ୟ ଏକାଡେମୀ ଅନେକ ଦିନ ତଳୁ ଉଦ୍ୟମ କରିଆସୁଥିଲା । ଲକ୍ଷ୍ମୀନାରାୟଣଙ୍କ ଅନ୍ୟତମ ସହଯୋଗୀ ଭାବରେ ପରିଚିତ ସାହିତ୍ୟିକ ଡଃ ନନ୍ଦ ମହାନ୍ତିଙ୍କୁ ଏହି ମନୋଗ୍ରାଫ୍‌ଟିର ପାଣ୍ଡୁଲିପି ପ୍ରସ୍ତୁତି ଦାୟିତ୍ୱ ଏକାଡେମୀ ପକ୍ଷରୁ ପ୍ରଦାନ କରାଯାଇଥିଲା । ଡଃ ମହାନ୍ତି ଏକାଡେମୀର ଅନୁରୋଧ ରକ୍ଷା କରି ଅତ୍ୟନ୍ତ ଆଗ୍ରହ ସହକାରେ ଅନୁବାଦକ ଲକ୍ଷ୍ମୀନାରାୟଣଙ୍କ ସଂପର୍କରେ ତଥ୍ୟମାନ ସଂଗ୍ରହ କରି ଖୁବ୍ କମ୍ ଦିନ ମଧ୍ୟରେ ପାଣ୍ଡୁଲିପିଟିକୁ ପ୍ରସ୍ତୁତ କରି ତାଙ୍କର ସାରସ୍ୱତ ଦାୟିତ୍ୱ ନିର୍ବାହ କରିଥିବାରୁ ଏକାଡେମୀ ପକ୍ଷରୁ ତାଙ୍କୁ ଧନ୍ୟବାଦ ଜ୍ଞାପନ କରୁଅଛି । ପାଣ୍ଡୁଲିପିଟିକୁ

ପ୍ରଥମ ପର୍ଯ୍ୟାୟରେ ବିଶିଷ୍ଟ ସାହିତ୍ୟ ସମାଲୋଚକ, ପ୍ରାବନ୍ଧିକ ଡକ୍‌ଟର ନଟବର ଶତପଥୀଙ୍କୁ ସମୀକ୍ଷା ନିମନ୍ତେ ଦିଆଯାଇଥିଲା ଏବଂ ସେ ପାଣ୍ଡୁଲିପିରେ ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟକୃତି, ବିଶେଷକରି ତାଙ୍କର ଅନୁବାଦ କୃତି ସମ୍ବନ୍ଧରେ ଅଧିକ ତଥ୍ୟ ପ୍ରଦାନ ନିମନ୍ତେ ମତବ୍ୟକ୍ତ କରିଥିଲେ । ତାହା ପୁନଃ ଲେଖକଙ୍କ ଦ୍ୱାରା ସମାହିତ ହୋଇ ପୁନର୍ବାର ସାହିତ୍ୟିକ ଡକ୍‌ଟର ମନୀନ୍ଦ୍ର ମହାନ୍ତିଙ୍କ ଦ୍ୱାରା ସମୀକ୍ଷା କରାଯାଇଥିଲା । ପୁସ୍ତକର ପ୍ରକାଶ କାଳରେ ସମୀକ୍ଷକ ଦ୍ୱୟଂକ ସାରସ୍ୱତ ନିଷ୍ଠା ପ୍ରତି ମୁଁ ଗଭୀର ସମ୍ମାନ ପ୍ରଦର୍ଶନ କରୁଅଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଚାଶବର୍ଷ ସୁବର୍ଣ୍ଣ ଜୟନ୍ତୀ ପୂର୍ତ୍ତୀପାଳନ ଅବକାଶରେ ଏହି ପୁସ୍ତକଟି ପ୍ରକାଶ ପାଉଥିବା ଅତ୍ୟନ୍ତ ଆନନ୍ଦ କଥା । ପୂର୍ବ ପ୍ରକାଶିତ ମନୋଗ୍ରାଫ୍‌ଗୁଡ଼ିକ ଭଳି ଏହି ମନୋଗ୍ରାଫ୍‌ଟି ପାଠକୀୟ ଆଦର ଲାଭ କରିପାରିଲେ ଏକାଡେମୀର ଶ୍ରମ ସାର୍ଥକ ହେବ ବୋଲି ଆଶା କରୁଛି ।

ତା ୨୮.୦୨.୨୦୦୯ ରିଖ
ଭୁବନେଶ୍ୱର

ଡକ୍‌ଟର ହରପ୍ରସାଦ ପରିଛା ପଟନାୟକ
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ

# ଏହି ପୁସ୍ତକ ସଂପର୍କରେ

ସାରସ୍ୱତ ସାଧକ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ଜୀବନ ଚରିତ ଲେଖିବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ମୋତେ ଅନୁରୋଧ କରାଯାଇଥିଲା । ଲକ୍ଷ୍ମୀନାରାୟଣ ଆମ ଗାଁର ଗର୍ବ ଓ ଗୌରବ । ତାଙ୍କର ଜୀବନୀ ପୁସ୍ତକଟିଏ ହେବା ଉଚିତ୍ ବୋଲି ତାଙ୍କ ଇହଲୀଳା ସମ୍ବରଣ ପରଠାରୁ ମୁଁ ଅନୁଭବ କରୁଥିଲି । କୌଣସି ଜଣେ ଓଡ଼ିଆ ଅଧ୍ୟାପକଙ୍କ ଦ୍ୱାରା ଏହା ଲିଖିତ ହେଲେ ଭଲ ହେବ ବୋଲି ମନେ ମନେ ମୁଁ ଭାବିଥିଲି । ତାଙ୍କ ଜୀବନର ଶେଷ ଦଶନ୍ଧିରେ ମୁଁ ତାଙ୍କ ସହିତ ମିଶିବାର ସୁଯୋଗ ପାଇଥିଲି । ସେହି କାରଣରୁ ବୋଧହୁଏ, ସାହିତ୍ୟ ଏକାଡ଼େମୀ ମୋ ଉପରେ କାର୍ଯ୍ୟଟି ନ୍ୟସ୍ତକଲେ । ତାଙ୍କ ଦ୍ୱାରା ରଚିତ ଶତାଧିକ ଅନୁବାଦ, ମୌଳିକ ଗଳ୍ପ ଓ ଉପନ୍ୟାସ ଇତ୍ୟାଦିରୁ କେତେ ବା ମୁଁ ପଢ଼ିଛି ? ଏ ଦିଗରେ ସବୁଠାରୁ ବଡ଼ ସମସ୍ୟାଟି ହେଲା ତାଙ୍କର ବିପୁଳ କୃତିକୁ ସଂଗ୍ରହ କରିବା । ତେଣୁ ଅତି ଆଶଙ୍କିତ ଭାବରେ ମୁଁ ଏହି କାର୍ଯ୍ୟରେ ହାତଦେଇ ସମାପ୍ତ କରିଛି ।

ଲକ୍ଷ୍ମୀନାରାୟଣ ଆଜୀବନ ଜଣେ ସାହିତ୍ୟ ସାଧକ ଥିଲେ । ସେ ଅତ୍ୟନ୍ତ ସ୍ୱାଭାବିକ ଓ ସ୍ୱଚ୍ଛନ୍ଦତାବାଦୀ ଲେଖକ । ମାନବିକତାବାଦୀ ଗଳ୍ପ ଓ ଉପନ୍ୟାସ ଲେଖି ଗତ ଶତାବ୍ଦୀର ଚାଳିଶରୁ ଷାଠିଏ ଦଶକ ମଧ୍ୟରେ ସେ ଯେତିକି ଯଶ ଅର୍ଜନ କରିଥିଲେ, ତା ପରବର୍ତ୍ତୀ ସମୟରେ ବିଶ୍ୱ ସାହିତ୍ୟର ରାଶି ରାଶି ଅନୁବାଦ ଓ ଅନୁସୃଜନ ମାଧ୍ୟମରେ ତତୋଧିକ ପ୍ରସିଦ୍ଧିଲାଭ କଲେ । ସେ ଅନୁବାଦ ସାହିତ୍ୟରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ସୋଭିଏତ୍ ଦେଶ ନେହେରୁ ପୁରସ୍କାର ଦ୍ୱାରା ମଧ୍ୟ ସମ୍ମାନିତ ହୋଇଛନ୍ତି । ସାହିତ୍ୟର ଅନ୍ୟାନ୍ୟ ବିଭାଗ, ଯଥା ଶିଶୁ ଓ ଅନ୍ୟାନ୍ୟ ବିଜ୍ଞାନ ଭିତ୍ତିକ ଅନୁବାଦ, ଭ୍ରମଣ ସାହିତ୍ୟର ଅନୁବାଦ, ଦର୍ଶନ ଓ ଆଧ୍ୟାତ୍ମିକ ଆଲୋଚନା ଇତ୍ୟାଦି କ୍ଷେତ୍ରରେ ମଧ୍ୟ ତାଙ୍କର ସ୍ୱାକ୍ଷର ବିଦ୍ୟମାନ । ସମ୍ପାଦନା ଓ ସାହିତ୍ୟ ସଂଗଠନ କ୍ଷେତ୍ରରେ ମଧ୍ୟ ସେ ଆମ ସାହିତ୍ୟ ଜଗତରେ ଏକ ପୂଜନୀୟ ବ୍ୟକ୍ତିତ୍ୱ । ସାହିତ୍ୟ ହିଁ ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟଥିଲା । ଏହି ସାହିତ୍ୟ ଭିତରେ ସେ ଦୁନିଆର ସବୁ ଗ୍ଳାନିକୁ ଭୁଲି ଯାଉଥିଲେ ।

ଏପରି ଜଣେ ସାରସ୍ୱତ ସାଧକଙ୍କ ସମ୍ପର୍କରେ କିଛି ଲେଖିବାର ସୁଯୋଗ ପାଇବା ମୋର ସୌଭାଗ୍ୟ । ତେବେ ଏହି କାର୍ଯ୍ୟଟି ଆଶାନୁରୂପ ଭାବେ ସହଜସାଧ୍ୟ ନଥିଲା । ତାଙ୍କର ବିପୁଳ ରଚନାବଳୀର ସଂଗ୍ରହ ଓ ପଠନ ନିମନ୍ତେ ଅନେକ କଷ୍ଟ ସ୍ୱୀକାର କରିବା ସତ୍ତ୍ୱେ,

ଯେତିକି ସଂଗ୍ରହ କରିପାରିଛି ସେତିକି କଥା ଏଠାରେ ବାଢ଼ି ଦେଇଛି । ତେବେ ତାଙ୍କ ଜୀବନ ଓ ସାରସ୍ୱତ କୃତି ସଂପର୍କରେ ଯଦି କାହା ପାଖରେ ଅଧିକ କିଛି ତଥ୍ୟ ଥାଏ, ତେବେ ତାହା ମୋତେ ଜଣାଇବାକୁ ବିନମ୍ର ଅନୁରୋଧ କରୁଛି । ତାଙ୍କ ଜୀବନର କିଛି ତଥ୍ୟ ଓ ତାଙ୍କ ରଚନାବଳୀରୁ କିଛି ପୁସ୍ତକ ସଂଗ୍ରହ ଓ ପାଠ କରିବାରେ ମୋତେ କେତେଜଣ ସହୃଦୟ ବ୍ୟକ୍ତି ସହଯୋଗ କରିଛନ୍ତି ।

ଲକ୍ଷ୍ମୀନାରାୟଣଙ୍କ ସାନ ଭଉଣୀ ପ୍ରମିଳା ଦେବୀ ଓ ଭିଣୋଇ ବିନୋଦ ବିହାରୀ ଦାସ, ଲକ୍ଷ୍ମୀନାରାୟଣଙ୍କ ବଡ଼ ପୁଅ (ମୋର ପିଲାଦିନର ସାଙ୍ଗ) ଆଦି ନାରାୟଣ ତଥା ତାଙ୍କ ଭାତୃଷ୍ପୁତ୍ର ଶ୍ରଦ୍ଧେୟ ମୁନୁ ତାଙ୍କ ପାରିବାରିକ ଜୀବନର ଅନେକ ତଥ୍ୟ, ଚିଠିପତ୍ର ଓ ଫଟୋ ଯୋଗାଇ ଦେଇ ମୋତେ କୃତାର୍ଥ କରିଛନ୍ତି । ବିଶିଷ୍ଟ ସାହିତ୍ୟିକ ଡ. ବିଜୟାନନ୍ଦ ସିଂହ, ଜନସୁଧା ପତ୍ରିକାର ଡ. ପ୍ରକାଶ କୁମାର ପରିଡ଼ା ଓ ଶ୍ରୀଯୁକ୍ତ ଦିଲୀପ କୁମାର ବେଉରା ତଥା ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ଗୋବିନ୍ଦ ଚାନ୍ଦଙ୍କ ସହଯୋଗରେ ରାଜ୍ୟ ଅଭିଲେଖାଗାର, ପଢ଼ିହାରୀ ଲାଇବ୍ରେରୀ, କଟକ, ବିଶ୍ୱନାଥ ପଣ୍ଡିତ ଲାଇବ୍ରେରୀ, କଟକ, ଉତ୍କଳ ସାହିତ୍ୟ ସମାଜ କଟକର ପାଠାଗାର ଓ ଉଦୟ ପଟ୍ଟନାୟକ ଲାଇବ୍ରେରୀରୁ ବହି ସଂଗ୍ରହ କରି ପଢ଼ିବାର ସୁଯୋଗ ମିଳିଛି । ଏମାନଙ୍କ ବ୍ୟତୀତ ଛତିଆର ସାହିତ୍ୟ ସଂସ୍କୃତି ପ୍ରେମୀ ଶ୍ରଦ୍ଧେୟ ସୁବ୍ରତ ଷଣ୍ଢ ଓ ସାହାପୁର (ଭଦ୍ରକ)ର ସମ୍ମାନନୀୟ କିରଣ ବାବୁ ଅତି ଆଗ୍ରହରେ ସେମାନଙ୍କ ନିକଟରେ ଥିବା ବହି ଗୁଡ଼ିକ ପଢ଼ିବାକୁ ଦେଇଛନ୍ତି । ମୁଁ ସେହି ଉଦାର ହୃଦୟ ବ୍ୟକ୍ତିଗଣ ଓ ଅନୁଷ୍ଠାନ ମାନଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି, ସମ୍ପାଦକ ଓ କର୍ତ୍ତୃପକ୍ଷ ମୋତେ ଏପରି ସୌଭାଗ୍ୟ ଦେଇଥିବାରୁ ମୋର ଗଭୀର କୃତଜ୍ଞତା ଜଣାଉଛି ।

ଏହି ପୁସ୍ତକ ଖଣ୍ଡିକ ଲେଖି ମୁଁ ଅଶେଷ ଆନନ୍ଦ ଲାଭ କରିଛି । ଆଶା କରୁଛି ସୁଧୀ ପାଠକ ମାନଙ୍କୁ ମଧ୍ୟ ଏହା ଆନନ୍ଦ ପ୍ରଦାନ କରିବ ।

ଇଂ ନନ୍ଦ ମହାନ୍ତି



# ସୂଚୀ

# ପ୍ରଥମ ପରିଚ୍ଛେଦ

# ପ୍ରସ୍ତାବନା

ସଂସାରର ଚିରାଚରିତ ଗଗଡ ଗୁଳାର ବାହାରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ଧ୍ୟେୟ କରି ଆପଣାର କର୍ମ ସମ୍ପାଦନ କରିବା ଉଚ୍ଚ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତି ମାନଙ୍କର ଆଦର୍ଶ । ସେମାନେ ଜୀବନକୁ ଏକ ବୃହତ୍ତର ପରିଧି ଭିତରେ ହିଁ ଦେଖନ୍ତି ।

ବ୍ୟକ୍ତିତ୍ୱ ର ବିକାଶ ନିମନ୍ତେ ସ୍ୱାମୀ ବିବେକାନନ୍ଦଙ୍କ ଉକ୍ତିଟି ହେଲା -

Take up one goal. Think of it, let every part of your body be full of it. Leave other things alone. This is the way to success.

ଅର୍ଥାତ୍ ଜୀବନର ଗୋଟିଏ ଲକ୍ଷ୍ୟ ସ୍ଥିର କର । କେବଳ ସେହି ଲକ୍ଷ୍ୟ କଥା ହିଁ କାୟ, ମନ, ବାକ୍ୟରେ ଚିନ୍ତା କର । ଏହା ହିଁ ସଫଳତାର ମାର୍ଗ ।

ଏହିପରି ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତିମାନଙ୍କ ଜୀବନର ଲକ୍ଷ୍ୟ ଏବଂ ଆଦର୍ଶ ଏକ ନୁହେଁ, ଭିନ୍ନ ଭିନ୍ନ । କିଏ ସଂଗୀତ ସମ୍ରାଟ ତାନସେନ, ଭୀମସେନ ଯୋଶୀ, ବାଳକୃଷ୍ଣ ଦାଶ ବା ଅକ୍ଷୟ ମହାନ୍ତିଙ୍କ ପରି ସଂଗୀତକୁ ନିଜ ଜୀବନର ଚରମ ଧ୍ୟେୟ ଭାବରେ ବାଛି ନିଅନ୍ତି ତ କିଏ ଗାନ୍ଧୀ, ଗୋପବନ୍ଧୁଙ୍କ ପରି, ଦେଶ ଓ ସମାଜର ସେବାକୁ ଜୀବନର ବ୍ରତ ଭାବରେ ଗ୍ରହଣ କରି ନିଅନ୍ତି । ପୁଣି ସେକ୍ସପିୟର, ରବୀନ୍ଦ୍ର ନାଥ, ଗୋପୀନାଥ, ସୀତାକାନ୍ତ, ରମାକାନ୍ତ ଙ୍କ ଠାରୁ ଆରମ୍ଭ କରି ତରୁଣତମ କବି ଲେଖକମାନଙ୍କ ପର୍ଯ୍ୟନ୍ତ ଅନେକେ ସାହିତ୍ୟ କୁ ଜୀବନର ଏକମାତ୍ର ଲକ୍ଷ୍ୟ ଭାବରେ ଗ୍ରହଣ କରି ଜୀବନଯାକ କେବଳ ସାରସ୍ୱତ କର୍ମରେ ହିଁ ତଲ୍ଲୀନ ହୋଇ ରହନ୍ତି ।

ସେମାନେ ସଂସାର କରି ମଧ୍ୟ ସେଥିପ୍ରତି ଉଦାସୀନ । ଜୀବନକୁ ଭୟ କରି ବା ଅସାର ମଣି ସେମାନେ ବୈରାଗୀ ହୋଇ ଯାଆନ୍ତି ନାହିଁ; ବରଂ ଜୀବନକୁ ଆପଣେଇ ନେଇ ତାହାକୁ ଅଧିକ ମଧୁମୟ ଓ ସମ୍ବେଦନଶୀଳ କରିବା ପାଇଁ ସେମାନଙ୍କ ଅନ୍ତଃକରଣରେ ଏକ ସଂକଳ୍ପବୋଧର ସ୍ଫୁରଣ ଘଟିଥାଏ । ଜୀବନ ସେମାନଙ୍କ ପାଇଁ ଏକ ଆହ୍ୱାନ । 'ସଂକଟ' ସେମାନଙ୍କ ଚଲାପଥର ପାଥେୟ । 'ସଂକଟ' ବୋଧ ତୀବ୍ର ହେଲେ, ଜିଜ୍ଞାସା ତୀକ୍ଷଣ ହୁଏ । ଜିଜ୍ଞାସା ତୀକ୍ଷଣ ହେଲେ ହୃଦୟ ପ୍ରସାରିତ ହୋଇ ଏକ କାନ୍ତ କୋମଳ ନମ୍ର ବ୍ୟକ୍ତିସତ୍ତା ଦୀପ୍ତିମନ୍ତ ହୁଏ ।

ଏହିପରି ଜଣେ ସାରସ୍ୱତ ସାଧକ ଥିଲେ; ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ମହାନ୍ତି । ଶୈଶବରୁ ପିତୃ ହରା ହୋଇ ଦାରୁଣ ଆର୍ଥିକ ସଂକଟର ଶିକାର ହେବା ସତ୍ତ୍ୱେ, ଅନେକ ସାରସ୍ୱତ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତିଙ୍କର ସାନ୍ନିଧ୍ୟର ପ୍ରଭାବରୁ, ସେହି ବାଲ୍ୟ କାଳରୁ ହିଁ ସେ ସାହିତ୍ୟକୁ ଜୀବନର ଚରମ ଲକ୍ଷ୍ୟ ଭାବରେ ଗ୍ରହଣ କରିନେଇଥିଲେ ।

ଆର୍ଥିକ ସଂକଟ କାରଣରୁ ସେ ଉଚ୍ଚଶିକ୍ଷା ଲାଭ କରିପାରିନ ଥିଲେ । ତଥାପି ତାଙ୍କ ଜୀବନ-ଜିଜ୍ଞାସା ଅତି ତୀବ୍ର ଥିଲା । ମାଟ୍ରିକ ପର୍ଯ୍ୟନ୍ତ ତାଙ୍କର ଶିକ୍ଷାଗତ ଯୋଗ୍ୟତା । ତଥାପି ଅଧ୍ୟବସାୟ ବଳରେ ପୃଥିବୀର ବିଭିନ୍ନ ଭାଷାର ଶତାଧିକ ପୁସ୍ତକ ଓଡିଆ ଭାଷାରେ ଅନୁବାଦ ବା ଅନୁସୃଜନ କରି ଓଡିଆମାନଙ୍କ ପାଇଁ ସେ ବିଶ୍ୱକୁ ଗବାକ୍ଷ ଉନ୍ମୁକ୍ତ କରିଥିଲେ । ପରିମାଣ ଏବଂ ଗୁଣାତ୍ମକ ଉଭୟ ଦୃଷ୍ଟିରୁ ତାଙ୍କର ଅନୁବାଦ କର୍ମ ତାଙ୍କୁ ଓଡିଆ ସାହତ୍ୟର ଅନୁବାଦ କ୍ଷେତ୍ରରେ କିମ୍ବଦନ୍ତୀ ପୁରୁଷର ମାନ୍ୟତା ଦିଏ । ଅନ୍ୟ କୌଣସି ପ୍ରାନ୍ତୀୟ ଭାଷାରେ ଜଣେ ବ୍ୟକ୍ତିଙ୍କ ଦ୍ୱାରା ଏତେ ସଂଖ୍ୟାର ଅନୁବାଦ ବା ଅନୁସୃଜନ ହୋଇଥିବାର ନଜିର ନାହିଁ । କେବଳ ଅନୁବାଦ ନୁହେଁ, ମୌଳିକ ଗଳ୍ପ ଓ ଉପନ୍ୟାସ ରଚନାରେ ମଧ୍ୟ ସେ ସିଦ୍ଧହସ୍ତ ଥିଲେ ।

୧୯୧୯ ମସିହା ଜାନୁୟାରୀ ୧୦ ତାରିଖରେ ଜନ୍ମିତ ଏହି ସାରସ୍ୱତ ସାଧକ ୨୦୦୫ ମସିହା ଜାନୁୟାରୀ ୨୭ ତାରିଖ ଦିନ ଇହଲୀଳା ସମ୍ବରଣ କରିଥିଲେ । ଛୟାଅଶି (୮୬) ବର୍ଷର ଜୀବନ କାଳ ଭିତରେ ସେ ରଚନା କରିଛନ୍ତି ବାରଖଣ୍ଡ ଗଳ୍ପ ସଂକଳନ, ଆଠ ଖଣ୍ଡ ଉପନ୍ୟାସ, ଶହେରୁ ଅଧିକ ଅନୁବାଦ ପୁସ୍ତକ ଏବଂ ଜୀବନୀ, ଆଧ୍ୟତ୍ମିକ ଇତ୍ୟାଦି ଅନ୍ୟାନ୍ୟ ପୁସ୍ତକ ପ୍ରାୟ ପନ୍ଦର ଖଣ୍ଡ । ଏହା ବ୍ୟତୀତ ଝଙ୍କାର ଓ ଅନ୍ୟାନ୍ୟ ପତ୍ର ପତ୍ରିକା ମାନଙ୍କରେ ଅନୁଦିତ (ଅନୁସୃଜିତ) ଶତାଧିକ ଗଳ୍ପ ପ୍ରକାଶିତ, ଯାହା ପୁସ୍ତକ ଆକାରରେ ସଂକଳିତ ହୋଇ ପାରି ନାହିଁ । ତାଙ୍କର ସମଗ୍ର ରଚନାବଳୀର ତାଲିକାଟିଏ ପ୍ରସ୍ତୁତ କରିବା ସମ୍ଭବ ହୋଇ ପାରୁ ନାହିଁ, କାରଣ ସେ ସବୁ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ।

ଏହି ବିପୁଳ ରଚନାବଳୀର ରଚୟିତା ଲକ୍ଷ୍ମୀନାରାୟଣ ସଂସାର ବି କରିଥିଲେ । ବିବାହ କରିଥିଲେ, ଚାକିରି କରିଥିଲେ, ପିତୃ ବିୟୋଗ ପରେ ଅକାଳରେ ପତ୍ନୀ ବିୟୋଗ ଏବଂ ମାତୃ ବିୟୋଗ ବି ଭୋଗିଥିଲେ । ତାଙ୍କ ଜୀବନର ଏହି ସାଂସାରିକ ଜଟିଳ ସଂକଟ ସବୁ କେବଳ ନିରଳସ ସାହିତ୍ୟ ସାଧନା ଭିତରେ ହିଁ ସମାହିତ ହୋଇ ଯାଇଥିଲା । ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରଚୁର ପଢ଼ିବା ଓ କିଛି ଲେଖିବାର ଅଭ୍ୟାସ ସେ ଅବ୍ୟାହତ ରଖିଥିଲେ ।

ଦୀର୍ଘ ପ୍ରାୟ ଚାଳିଶି ବର୍ଷ ଚାକିରି କାଳ ମଧ୍ୟରୁ ଅର୍ଦ୍ଧାଧିକ ସମୟ କଟିଥିଲା ଓଡିଆ ସାହିତ୍ୟର ପ୍ରାଣ କେନ୍ଦ୍ର କଟକ ସହରରେ । ଏହି କଟକରେ ସାହିତ୍ୟ ସାଧନା ସହିତ 'ଲେଖକ ସହଯୋଗ ସମିତି' ପରି ସାରସ୍ୱତ ସଂଗଠନ ଗଠନ କରି ଓଡିଆ ସାହିତ୍ୟ ର ତତ୍କାଳୀନ ଲେଖକ କବିମାନଙ୍କୁ ସେ ଏକାଠି କରି ପାରିଥିଲେ । ସଂଗଠନ ତରଫରୁ ତ୍ରୟ ମାସିକ 'ଉଦୟ' ପତ୍ରିକା ତାଙ୍କରି ଦ୍ୱାରା ସମ୍ପାଦିତ ହେଉଥିଲା ।

ନିଜର ଜନ୍ମମାଟି ପ୍ରତି ତାଙ୍କର ଅହେତୁକ ଆକର୍ଷଣ ଥିଲା । ତେଣୁ ୧୯୭୮ ମସିହାରେ ଚାକିରିରୁ ଅବସର ଗ୍ରହଣ କରିବା ପରେ ସେ ନିଜର ଜନ୍ମମାଟିକୁ ଫେରି ଆସି ସେଠାରେ ବି ସାହିତ୍ୟ ସାଧନା ଅବ୍ୟାହତ ରଖିଥିଲେ । ନିଜ ବାସଗୃହର ନାମ ରଖିଥିଲେ 'ତପୋବନ' । ସେଇଠି ତପୋନିଷ୍ଠ ତପସ୍ୱୀଟିଏ ପରି ସେ ସାହିତ୍ୟ ସାଧନା କରୁଥିଲେ, ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ । ବାସ୍ତବରେ ସେ ଥିଲେ ତପୋବନର 'ତପସ୍ୱୀ' । ତାଙ୍କ ପରି ଜଣେ ସାରସ୍ୱତ ସାଧକଙ୍କ ମହାପ୍ରୟାଣ ପରେ ଆମ ସାହିତ୍ୟରେ ନିଶ୍ଚିତ ଭାବରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି ।

## ଜନ୍ମମାଟି

ଜ୍ୱାଳା କରାଳ ମୃତ୍ୟୁଗମ ଶେଷାସୁର ସୂଦନଂ
ତ୍ରିଶୂଳଂ ପାତୁନୋଭୀତେ ଭଦ୍ରକାଳୀ ନାମାସ୍ତୁତେ ।
(ସପ୍ତସତୀ ଚଣ୍ଡୀ - ଏକାଦଶ ଅଧ୍ୟାୟ)

× × × × ×

ଅଗ୍ନିଜ୍ୱଳା ରୌଦ୍ରମୁଖୀ କାଳରାତ୍ରୀ ସପ୍ତସ୍ୱିନୀ
ନାରାୟଣୀ, ଭଦ୍ରକାଳୀ ବିଷ୍ଣୁମାୟା ଜଳୋଦରୀ ।
(ଦୁର୍ଗା ଅଷ୍ଟୋତ୍ତର ସ୍ତୋତ୍ର)

× × × × ×

ଜୟନ୍ତୀ ମଙ୍ଗଳାକାଳୀ, ଭଦ୍ରକାଳୀ କପାଳିନୀ
ଦୁର୍ଗା, କ୍ଷମା, ଶିବା, ଧାତ୍ରୀ, ସ୍ୱାହା ସ୍ୱଧା ନମୋସ୍ତୁତେ ।
(ତନ୍ତ୍ରଶାସ୍ତ୍ର ମହାମାୟୀ)

× × × × ×

ମହାଭାରତ, ପଦ୍ମପୁରାଣ, ବିଷ୍ଣୁପୁରାଣ, ସ୍କନ୍ଦପୁରାଣ, ମାର୍କଣ୍ଡେୟ ପୁରାଣ ପରି ଅନେକ ପୁରାଣ ଗ୍ରନ୍ଥରେ ଭଦ୍ରକାଳୀଙ୍କର ସ୍ତୁତି, ବନ୍ଦନା ଓ ବର୍ଣ୍ଣନା କରାଯାଇଛି । ଶକ୍ତି ସ୍ୱରୂପିଣୀ ଏବଂ ମାତୃସ୍ୱରୂପିଣୀ ଭଦ୍ରକାଳୀଙ୍କ ପୀଠ ଭଦ୍ରକ, ପ୍ରାଚୀନ ଉତ୍କଳର ପୀଠମାନଙ୍କ ମଧ୍ୟରେ ଅନ୍ୟତମ । ଏହା ପୁରାଣ ଏବଂ ଇତିହାସରେ ପ୍ରମାଣସିଦ୍ଧ ।

ଭଦ୍ରୌକ ଶବ୍ଦର ଅପଭ୍ରଂଶରୁ ଭଦ୍ରକ ଶବ୍ଦର ଉତ୍ପତ୍ତି ବୋଲି ପଣ୍ଡିତମାନେ ମତ ଦିଅନ୍ତି, ଯାହାର ଅର୍ଥ - ଯିଏ ଭଦ୍ର କରେ; ଅର୍ଥାତ୍ ଭଦ୍ରବ୍ୟକ୍ତି ମାନଙ୍କ ବାସସ୍ଥାନ । ଭଦ୍ରକାଳୀଙ୍କ ନାମାନୁସାରେ ଭଦ୍ରକର ପ୍ରଶସ୍ତି ବହୁଜନ ସମ୍ମତ ।

'ଭଦ୍ର' ଶବ୍ଦର ଅର୍ଥ ସୌଭାଗ୍ୟ, କୁଶଳ, କଲ୍ୟାଣ । ସୁତରାଂ ସାମଗ୍ରିକ ଭାବରେ ବୁଝିବାକୁ ହେବ ଯେ ଭଦ୍ରକାଳୀଙ୍କର କଲ୍ୟାଣର ଦିପ୍ତୀରେ ଉଦ୍ଭାସିତ ଯେଉଁ କ୍ଷେତ୍ର, ସେ କ୍ଷେତ୍ର - 'ଭଦ୍ରକ' ।

ଭଦ୍ରକ, ଓଡ଼ିଶାର ଭୌଗୋଳିକ ମାନଚିତ୍ରରେ ଏକ ବିଶିଷ୍ଟ ସ୍ଥାନ । ଏହାର ଉପକଣ୍ଠରେ ସ୍ଥିତ ଚାନ୍ଦବାଲି ବନ୍ଦର ଦିନେ ପ୍ରାଚୀନ ଉତ୍କଳର ପ୍ରମୁଖ ନୌବାଣିଜ୍ୟ କେନ୍ଦ୍ର ଥିଲା ।

ପୁନଶ୍ଚ, ଐତିହାସିକ ଦୃଷ୍ଟିକୋଣରୁ ମଧ୍ୟ ଭଦ୍ରକର ଗୌରବ ସୁବିଦିତ । ତେବେ ସଂକ୍ଷେପରେ ଏତିକି କହିଲେ ଯଥେଷ୍ଟ ହେବଯେ ବୌଦ୍ଧ ଯୁଗର ପୂର୍ବରୁ ଏହି ଅଂଚଳର ଅବସ୍ଥିତି ଥିଲା । ସାଳନ୍ଦୀ ନଦୀକୂଳରେ 'ଶ୍ରୀଭଦ୍ରକ' ନାମଧାରୀ ଜଣେ ବୌଦ୍ଧାଚାର୍ଯ୍ୟ ଥିଲେ ଏବଂ ତାଙ୍କ ଅଧୀନରେ ବୌଦ୍ଧ ବିହାର ଓ ସ୍ତୁପମାନ ଥିଲା ବୋଲି ତନ୍ତ୍ର ବିଶାରଦ ଶ୍ରୀ ଗଣେଶ ପ୍ରସାଦ ପରିଚ୍ଛା ଉଲ୍ଲେଖ କରିଛନ୍ତି । ଭଦ୍ରକ ନିକଟସ୍ଥ ଖଡ଼ିପଦା, ସୋଲାମପୁର, ଚରମ୍ପା ଇତ୍ୟାଦି ସ୍ଥାନମାନଙ୍କରୁ ଅଷ୍ଟମ ନବମ ଶତାବ୍ଦୀର ଅନେକ ବୌଦ୍ଧ, ଜୈନ, ଶାକ୍ତ ତଥା ଗାଣପତ୍ୟ କୀର୍ତ୍ତି ଆବିଷ୍କୃତ ହୋଇଛି ।

ପଞ୍ଚଦଶ ଶତାବ୍ଦୀରେ ଶ୍ରୀଚୈତନ୍ୟ ଏହି ରାସ୍ତାରେ ପୁରୁଷୋତ୍ତମ କ୍ଷେତ୍ରକୁ ଭକ୍ତମାନଙ୍କ ଗହଣରେ ମହାମନ୍ତ୍ର ଗାନ କରି ପଦବ୍ରଜରେ ଯାଉଥିବା ସମୟରେ ଭଦ୍ରକର ସନ୍ଥିଆ ଗ୍ରାମରେ ରାତ୍ରି ଯାପନ କରିଥିଲେ । ତହିଁ ଉତ୍ତାରୁ ସମଗ୍ର ଭଦ୍ରକକୁ ବୈଷ୍ଣବୀୟ ଚିନ୍ତା ଓ ଚେତନା ପ୍ଲାବିତ କରିଥିଲା । ଚୈତନ୍ୟଙ୍କ ଆଗମନର ସ୍ମୃତି ସ୍ୱରୂପ ସନ୍ଥିଆ ଗ୍ରାମସ୍ଥ ରାଧାକୃଷ୍ଣଙ୍କ ମନ୍ଦିରରେ ତାଙ୍କ ଦ୍ୱାରା ବ୍ୟବହୃତ କନ୍ଥା ରଖାଯାଇଛି । ପ୍ରତିବର୍ଷ ହେରା ପଞ୍ଚମୀ ଦିନ ଏଠାରେ ଚୈତନ୍ୟ ଦେବଙ୍କ ଆଗମନର ସ୍ମାରକୀ ପାଳନ କରାଯାଏ ।

ଅଷ୍ଟାଦଶ ଶତାବ୍ଦୀରେ ରାମକୃଷ୍ଣ ପରମହଂସଙ୍କ ଲୀଳା ସଙ୍ଗିନୀ ମା ଶାରଦା ଦେବୀ ମଧ୍ୟ ଭଦ୍ରକ ଆଗମନ କରି କୋଠାର ଗ୍ରାମରେ ଅବସ୍ଥାନ କରିଥିଲେ । ଏଠାରେ ମଧ୍ୟ ଏକ ସ୍ମୃତି ମନ୍ଦିର ବିଦ୍ୟମାନ ।

ଭଦ୍ରକ ଜିଲ୍ଲାର ଧାମନଗରସ୍ଥ ଗୋହିରାଟିକିରୀ ଠାରେ ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ ସ୍ୱାଧୀନ ଭାରତର ଶେଷ ଯୁଦ୍ଧ ଲଢ଼ି ପରାଜିତ ହୋଇଥିଲେ ।

ଗଙ୍ଗବଂଶର ରାଜତ୍ୱ କାଳରୁ ଭଦ୍ରକ ଓଡ଼ିଶା ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ, ଯାହାର ଖ୍ୟାତି ମୋଗଲ ଶାସନ ସମୟରେ ଅତିମାତ୍ରାରେ ବିସ୍ତାରିତ ହୋଇଥିଲା । ଏହି ସମୟରେ ମୋଗଲମାନେ ତତ୍କାଳୀନ ଓଡ଼ିଶାକୁ ତିନୋଟି ସରକାରରେ ବିଭକ୍ତ କରିଥିଲେ - ଜଳେଶ୍ୱର, କଟକ ଓ ଭଦ୍ରକ । ସମ୍ରାଟ ଆକବରଙ୍କ ସମୟରେ ଆଫଗାନମାନଙ୍କ ସହିତ ସନ୍ଧିହେବା ପରେ ସେ ଆଫଗାନମାନଙ୍କୁ ଭଦ୍ରକରେ ଜମିଦାରୀ ପ୍ରଦାନ କରିଥିଲେ । ଅଦ୍ୟାବଧି ଏଠାରେ ମୁସଲମାନ ମାନଙ୍କ ଅକ୍ଷୁଣ୍ଣ ସଂସ୍କୃତି ତାର ନିଦର୍ଶନ ପ୍ରଦାନ କରେ ।

ଏହିପରି ଏକ ଐତିହ୍ୟ ସମ୍ପନ୍ନ ଅଂଚଳ 'ଭଦ୍ରକ' ଯାହା ଅଧୁନା ଏକ ଜିଲ୍ଲାର ମାନ୍ୟତା ପାଇସାରିଛି; ସେହି ଭଦ୍ରକ ସହରର ପୌର ପରିଷଦର ପରିସୀମା ଭିତରେ ଛୋଟ ଗୋଟିଏ ଗାଁ - **ଜଗନ୍ନାଥପୁର** ।

ଉତ୍ତରପଟକୁ ସ୍ୱଚ୍ଛ ସଲୀଳା ସାଳନ୍ଦୀ ନଦୀ । ନଦୀ ଆରପଟକୁ ସାହାପୁର ଓ ଗେଲଟୁଆ ଇତ୍ୟାଦି ଗାଁ, ପୂର୍ବପଟକୁ ଅସ୍ତଳ, ବଙ୍କସାହି ଓ ଭଦ୍ରକର କଚେରୀ ବଜାର, ପଶ୍ଚିମକୁ ଜାନୁଗଞ୍ଜ, ବାଗୁରାଇ ଓ ବାଉଦପୁର ଇତ୍ୟାଦି ଗାଁ ଏବଂ ଦକ୍ଷିଣକୁ ବିସ୍ତୀର୍ଣ୍ଣ ଚାଷକ୍ଷେତ ।

ମୋଟାମୋଟି କହିବାକୁ ଗଲେ 'ଭଦ୍ରକ' ନଦୀକୂଳ ସଭ୍ୟତାର ଏକ ଐତିହାସିକ ଭୂମି ଏବଂ ଜଗନ୍ନାଥପୁର ସମେତ ଉପରୋକ୍ତ ଗ୍ରାମ ଗୁଡ଼ିକ ଏହି ଭୂମିର ଗୋଟିଏ ଗୋଟିଏ କ୍ଷୁଦ୍ର ଅଂଶ ।

ଜଗନ୍ନାଥପୁର ଗାଁର ଉତ୍ତର ପଶ୍ଚିମ କୋଣରେ ସୁବିଶାଳ ଆମ୍ରକୁଞ୍ଜ ଏବଂ ସମଗ୍ର ଉତ୍ତର ଦିଗ ସ୍ୱଚ୍ଛ ସଲୀଳା ସାଳନ୍ଦୀ ନଦୀ । ସାଳନ୍ଦୀର ଉଭୟ ତଟରେ କାଶତଣ୍ଡୀ ଚାମରର ମନୋହାରିଣୀ ଦୃଶ୍ୟ ବେଶ୍ ରମଣୀୟ । ଏକଦା ଉତ୍ତର ପୂର୍ବ କୋଣର ବିରାଟ ଆମ୍ବ ତୋଟାର ଅର୍ଦ୍ଧାଧିକ ଅଂଶ କୌଣସି ମୁସଲମାନ ଜମିଦାରଙ୍କ ସ୍ୱତ୍ୱ ହୋଇଥିବାରୁ ଏହାକୁ 'ମିଆଁବାଡ଼ି' ରୂପେ ଅଭିହିତ କରାଯାଇଥିଲା । ସଂପ୍ରତି ଏହି ତୋଟାର ମଧ୍ୟଭାଗରେ ବିଶାଳ ଶିକ୍ଷାୟତନ ଭଦ୍ରକ କଲେଜ ବିଦ୍ୟମାନ । ଆମ୍ରକୁଞ୍ଜ ମଧ୍ୟରେ ଏହି ଶିକ୍ଷାୟତନକୁ ମହାନ୍ ସାରସ୍ୱତ ସାଧକ ପଦ୍ମଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି 'ଓଡ଼ିଶାର ବିଶ୍ୱଭାରତୀ' ଆଖ୍ୟା ଦେଇଥିଲେ । ଜଗନ୍ନାଥପୁର ଗ୍ରାମର ସ୍ୱର୍ଗତ ଛକଡ଼ି ମହାନ୍ତିଙ୍କର ଆପ୍ରାଣ ଉଦ୍ୟମ ଓ ସର୍ବସ୍ୱ ଦାନ ଯୋଗୁ ଓଡ଼ିଶାର ଶିକ୍ଷାକ୍ଷେତ୍ରକୁ ଏହି ମହାନ୍ ଶିକ୍ଷାନୁଷ୍ଠାନ ଉତ୍ସର୍ଗୀକୃତ ହୋଇ ପାରିଥିଲା ।

ଆଜି ମଧ୍ୟ ଏହି ଗାଁର ଉତ୍ତରପଟ ନଈକୂଳ, ବାଲିପଠା ଏବଂ ଉତ୍ତର ପଶ୍ଚିମ କୋଣର ଆମ୍ବତୋଟା; ଏକ ଗ୍ରାମ୍ୟ ପରିବେଶର ଶିହରଣ ଆଣନ୍ତି । ତେବେ ପୂର୍ବ ଓ ଦକ୍ଷିଣ ଦିଗରେ ଜାତୀୟ ରାଜପଥ, ତହିଁପରେ ଓଭରବ୍ରିଜ୍ ଇତ୍ୟାଦିର ଚଳଚଞ୍ଚଳତା, କଚେରୀ ବଜାରର ବ୍ୟସ୍ତତା ଏବଂ କଲେଜ ରାସ୍ତାର ଗହଳି ପରିବେଶ ଦେଖିଲେ, ଏହି ଅଂଚଳକୁ ଏକ ଗ୍ରାମ କହିବାକୁ ଦ୍ୱିଧା ବୋଧହୁଏ ।

କେଜାଣି କେତେକାଳର ପୁରୁଣା ଏହି ଜନବସତିର ଇତିହାସ । ସେ ସମ୍ପର୍କରେ କୌଣସି ପ୍ରାମାଣିକ ତଥ୍ୟ ମଧ୍ୟ ନାହିଁ । ଗ୍ରାମର ଅନ୍ତେବାସୀମାନେ ବି ସେମିତି କିଛି ଠୋସ୍ ପ୍ରମାଣ ଦେଇ ପାରନ୍ତି ନାହିଁ ।

ଜନଶ୍ରୁତି ଅନୁସାରେ ପ୍ରଥମେ ଦୁଇଟି ବ୍ରାହ୍ମଣ ପରିବାର କୌଣସି କାରଣରୁ ସମ୍ଭବତଃ ଯାଜପୁର ଅଂଚଳରୁ ଉଠି ଆସି ଏଠାରେ ବସତି ସ୍ଥାପନ କରିଥିଲେ । କୁହାଯାଏ, ସେମାନେ ଥିଲେ ଅଥର୍ବ ବେଦୀୟ । ଏହି ଦୁଇ ପରିବାରରୁ ଗୋଟିଏ ପଣ୍ଡା ପରିବାର ଓ ଗୋଟିଏ କର ପରିବାର ଥିଲେ; କାଳକ୍ରମେ ଏହି ଦୁଇ ପରବାର ପରିବର୍ଦ୍ଧିତ ହୋଇ ଦୁଇଟି ସାହିରେ ପରିଣତ ହେଲେଣି - ପଣ୍ଡାସାହି ଓ କରସାହି ।

ସେତେବେଳେ ଏହି ଅଂଚଳର ନାମ 'କୂଳମୂଳେଇ' ଥିଲା । ସାଳନ୍ଦୀ ନଦୀର କୂଳକୁ ସଂଲଗ୍ନ ହୋଇଥିବା କାରଣରୁ ଏପରି ନାମକରଣ ହୋଇଥିବା ଅନୁମାନ କରାଯାଇପାରେ । ସାଳନ୍ଦୀର ପଟୁମାଟି ଏ ଅଂଚଳର ଜମିକୁ ଉର୍ବର କରୁଥିଲା । ନଦୀକୂଳର ପାଟ (ସ୍ଥାନୀୟ ଲୋକେ 'ପାଳ' କହନ୍ତି) ମାନଙ୍କରେ ବର୍ଷାଋତୁ ପରେ ଭଲ ପନିପରିବା ଚାଷ ହେଉଥିବା ବେଳେ ତାର ଦକ୍ଷିଣକୁ ବିସ୍ତୀର୍ଣ୍ଣ ଚାଷଜମି ଧାନ ଚାଷ ପାଇଁ ବେଶ୍ ଉପଯୋଗୀ ଥିଲା । (ଏବେ କିନ୍ତୁ ନଦୀକୂଳ ପାଟଠାରୁ ଆରମ୍ଭ କରି ବିସ୍ତୀର୍ଣ୍ଣ ଚାଷଜମି ପର୍ଯ୍ୟନ୍ତ ସବୁଠି ବହୁତଳ ପ୍ରାସାଦରେ ଭରା ଏକ କଂକ୍ରିଟ ଜଙ୍ଗଲର ଛାପ) ।

ପଣ୍ଡାସାହି ପ୍ରଭୁ ଜଗନ୍ନାଥଙ୍କର ବିଜେସ୍ଥଳୀ । ମନ୍ଦିରରେ କେବଳ ଶ୍ରୀ ଜଗନ୍ନାଥହିଁ ପୂଜିତ ହୁଅନ୍ତି । ଏହି ଜଗନ୍ନାଥ ମନ୍ଦିର ନିର୍ମାଣ ସମ୍ପର୍କରେ ଏକ କିମ୍ବଦନ୍ତୀ ରହିଛି -

କୌଣସି ଏକ ବର୍ଷଣ ମୁଖର ରାତ୍ରିରେ ଜଣେ ବୃଦ୍ଧ ବ୍ରାହ୍ମଣ ସ୍ୱପ୍ନାଦେଶ ପାଇଲେ- 'ଆସନ୍ତା କାଲି ସାଳନ୍ଦୀ ନଦୀରେ ବନ୍ୟା ଆସିବ । ବନ୍ୟା ଜଳରେ ତିନିଖଣ୍ଡ କାଠଗଣ୍ଡି ଭାସି ଆସିବ । ସେହି କାଠଗଣ୍ଡି ଗୁଡ଼ିକୁ ଉଦ୍ଧାର କରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନି ମୂର୍ତ୍ତି ଗଠନ କରି ପୂଜା କରିବାର ବ୍ୟବସ୍ଥା କର ।' ସ୍ୱପ୍ନ ମୁତାବକ ବଡ଼ି ସକାଳୁ ବୃଦ୍ଧ ଧାଇଁଲେ ନଦୀକୂଳକୁ । କୂଳ ଲଂଘୁଥିବା ବଢ଼ି ପାଣିର ପ୍ରଖର ସ୍ରୋତରେ ପ୍ରଥମେ ଦୁଇଖଣ୍ଡ କାଠଗଣ୍ଡି ତାଙ୍କ ଆଖି ଆଗରେ ଭାସିଗଲା । କିନ୍ତୁ କାଠଗଣ୍ଡିମାନଙ୍କୁ ଉଦ୍ଧାର କରିବାକୁ ତାଙ୍କର ସାହସ କୁଳାଇଲା ନାହିଁ । କିନ୍ତୁ ତୃତୀୟ କାଠଗଣ୍ଡିଟି ଭାସି ଆସିବା ବେଳକୁ ସେ ନିଜକୁ ସମ୍ଭାଳି ପାରିଲେ ନାହିଁ । 'ଜୟ ଜଗନ୍ନାଥ' କହି ପାଣିକୁ ଡ଼େଇଁ ପଡ଼ିଲେ ଓ କାଠଗଣ୍ଡି ଖଣ୍ଡିକ ଉଦ୍ଧାର କରି, ଜଗନ୍ନାଥଙ୍କ ମୂର୍ତ୍ତି ଗଢ଼ାଇ ପୂଜା କରିବାର ବ୍ୟବସ୍ଥା କଲେ । ସମୟ କ୍ରମେ ଜଗନ୍ନାଥ ମନ୍ଦିର ତୋଳା ହେଲା । କୂଳମୂଳାଇ ଗ୍ରାମର ନାମ ଜଗନ୍ନାଥପୁରକୁ ପରିବର୍ତ୍ତିତ ହେବାର ଏହା ହିଁ ବୋଧହୁଏ ଯଥାର୍ଥ ଇତିହାସ । ସରକାରୀ ବନ୍ଦୋବସ୍ତରେ ମଧ୍ୟ ଏହା 'କୂଳମୁଳାଇ' ଗ୍ରାମ ନାମରେ ଲିଖିତ ଥିଲା ଓ ପରେ ପରିବର୍ତ୍ତିତ ହୋଇ 'ଜଗନ୍ନାଥପୁର' ହୋଇଅଛି ।

ଏହି ଘଟଣାର ପରବର୍ତ୍ତୀ କାଳରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଆଉ ଦୁଇଟି କରଣ ପରିବାର ଏହି ଅଂଚଳର ପ୍ରାକୃତିକ ଶୋଭା ଏବଂ ଚାଷ ଉପଯୋଗୀ ଉର୍ବର ଜମି ପ୍ରତି ଆକୃଷ୍ଟ ହୋଇ ଏହି ଅଂଚଳକୁ ଆସି ବସତି ସ୍ଥାପନ କଲେ । ଦୁଇ ବ୍ରାହ୍ମଣ ବସତିର ମଧ୍ୟବର୍ତ୍ତୀ ସ୍ଥାନରେ ଏମାନେ ବସବାସ କଲେ । ଏମାନେ ନିର୍ଦ୍ଦିଷ୍ଟ ଭାବରେ କେଉଁ ଅଂଚଳରୁ ଆସିଥିଲେ ତାର ପ୍ରମାଣିକ ତଥ୍ୟ ନ ମିଳିଲେ ମଧ୍ୟ ଯାଜପୁର ଜିଲ୍ଲାର ବିଂଝାରପୁର ଓ କୋରାଇ ଅଂଚଳରୁ ଆସିଥିବାର ଜନଶ୍ରୁତି ରହିଛି। ହୁଏତ ପୂର୍ବରୁ ବସତି ସ୍ଥାପନ କରିଥିବା ପଣ୍ଡା ଓ କର ପରିବାର ସେମାନଙ୍କୁ ଏଥି ନିମନ୍ତେ ପ୍ରବର୍ତ୍ତାଇ ଥିବେ ।

ସମୟକ୍ରମେ ଏହି ଦୁଇ ପରିବାର ଦୁଇଟି ସାହିରେ ପରିଣତ ହୋଇଛନ୍ତି - ଉପର ସାହି ଓ ମଝି ସାହି । ଉଭୟ କରଣ ସାହି।

ଏହାର ପରବର୍ତ୍ତୀ ସମୟରେ କ୍ରମବର୍ଦ୍ଧିଷ୍ଣୁ ଏହି ଅଧିବସାୟୀ କରଣ ଓ ବ୍ରାହ୍ମଣ ପରିବାରମାନଙ୍କର ଚାଷ କାର୍ଯ୍ୟ ଓ ଅନ୍ୟାନ୍ୟ କ୍ଷେତ୍ରରେ ସହାୟତା ପାଇଁ ଗାଁ ପଛପଟରେ ଥିବା ଆମ୍ବତୋଟା (ମିଆଁବାଡ଼ି)ରେ ଏକ ହରିଜନ ବସ୍ତି ବି ଗଢ଼ି ଉଠିଲା । ଜମି ମାଲିକମାନଙ୍କ କୃଷି ଅନୁପଯୋଗୀ ଆମ୍ବତୋଟାରେ ସେମାନେ କୁଡ଼ିଆ କରି ରହିଲେ ଏବଂ ସମ୍ଭ୍ରାନ୍ତ କରଣ ଓ ବ୍ରାହ୍ମଣମାନଙ୍କର ମୂଲ ଲାଗି ପେଟ ପୋଷିଲେ ।

ଏହିପରି ଭାବରେ ଜଗନ୍ନାଥପୁର ଗ୍ରାମର ଅଭ୍ୟୁଦୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ସଂଘଟିତ ହୋଇ ସାରିଥିଲା । ଏହି ଗ୍ରାମର ପାଞ୍ଚଟି ସାହି ଯଥା - ପଣ୍ଡାସାହି (ବ୍ରାହ୍ମଣ), ଉପରସାହି (କରଣ), ମଝିସାହି (କରଣ), କରସାହି (ବ୍ରାହ୍ମଣ) ଓ ହରିଜନସାହି । କାଳକ୍ରମେ ଏହି ଗ୍ରାମ ପୂର୍ବକୁ ଅସ୍ତଳ ଗ୍ରାମର ସୀମା ପର୍ଯ୍ୟନ୍ତ ବିସ୍ତାରିତ ହୋଇଛି ।

ପଞ୍ଚଦଶ ଶତାବ୍ଦୀରେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଭଦ୍ରକ ଆଗମନ ଓ ସନ୍ଥିଆ ଗ୍ରାମରେ ଅବସ୍ଥାନ ପରେ ସାରା ଓଡ଼ିଶା ତଥା ଭଦ୍ରକରେ ବୈଷ୍ଣବୀୟ ଚେତନାର ପ୍ରସାର ଅନୁଭୂତ ହୋଇଥିଲା, ସେଥିରୁ ମଧ୍ୟ ଜଗନ୍ନାଥପୁର ଗ୍ରାମ ବାଦ୍ ଯାଇ ନାହିଁ ।

ଗ୍ରାମର ସ୍ୱଚ୍ଛଳ କରଣ ପରିବାର ସହିତ ସନ୍ଥିଆ ଓ କୁଆଁସ ଗ୍ରାମର ବୈଷ୍ଣବମାନଙ୍କର ସମ୍ପର୍କ ନିବିଡ଼ ହୋଇଛି । ଅଦ୍ୟାବଧି ଜଗନ୍ନାଥପୁର ଗ୍ରାମବାସୀମାନଙ୍କ ବିବାହ, ବ୍ରତ ଏବଂ ଅଶୌଚ କର୍ମମାନଙ୍କରେ ସନ୍ଥିଆଗ୍ରାମର ବୈଷ୍ଣବ ପରିବାର ଆବଶ୍ୟକୀୟ କ୍ରିୟା କର୍ମ କରି ଆସୁଛନ୍ତି । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ନଦିଆ ନବଦ୍ୱୀପରୁ ବୈଷ୍ଣବ ବାବାଜୀମାନେ ଆସି ଜଗନ୍ନାଥପୁରବାସୀ କରଣ ପରିବାର ମଧ୍ୟରେ ବୈଷ୍ଣବ ଧର୍ମ ପ୍ରଚାର କରିଛନ୍ତି ଓ ସେମାନଙ୍କୁ ଦୀକ୍ଷିତ କରିଛନ୍ତି ମଧ୍ୟ । ଏହା ପ୍ରଭାବରେ ଉପର, ମଝି ଓ କର ସାହିରେ ରାଧାକୃଷ୍ଣଙ୍କର ମନ୍ଦିରମାନଙ୍କରେ ଯଥାକ୍ରମେ - ରାଈକିଶୋର, ରାଧା ଗୋବିନ୍ଦ ଓ ଗୋପୀନାଥଜୀଉ ପ୍ରତିଷ୍ଠିତ ହୋଇ ପୂଜା ପାଇ ଆସୁଛନ୍ତି । କେବଳ ଜଗନ୍ନାଥପୁର ନୁହେଁ ଭଦ୍ରକର ପ୍ରାୟ ସମସ୍ତ କରଣ ବସ୍ତିରେ ବୈଷ୍ଣବୀୟ ସଂସ୍କୃତିର ପ୍ରଭାବ ପଡ଼ିଥିଲା । ଜଗନ୍ନାଥପୁରର ପଣ୍ଡା ସାହିରେ ଜଗନ୍ନାଥ ମନ୍ଦିର ଏଥି ପୂର୍ବରୁ ପ୍ରତିଷ୍ଠିତ ବୋଲି ଆଗରୁ ଉଲ୍ଲେଖ କରାଯାଇଛି ।

ଅଦ୍ୟାବଧି ଏହି ମନ୍ଦିରମାନଙ୍କର ଜଣେ ଜଣେ ପରମ ବୈଷ୍ଣବ ତତ୍ତ୍ୱାବଧାରକ ଅଛନ୍ତି ଏବଂ ମନ୍ଦିର ପରିସରରେ କାର୍ତ୍ତିକ ବ୍ରତ, ଜନ୍ମାଷ୍ଟମୀ, ରାଧାଷ୍ଟମୀ, ନନ୍ଦ ଉତ୍ସବ, ଗିରି ଗୋବର୍ଦ୍ଧନ ପୂଜା ପରି ବୈଷ୍ଣବୀୟ ପର୍ବମାନ ନିଷ୍ଠାର ସହିତ ପାଳିତ ହେଉଛି । ଶ୍ରାବଣ ମାସରେ ତେରଦିନ ବ୍ୟାପୀ ଝୁଲଣ ଯାତ୍ରା ଜଗନ୍ନାଥପୁର ଉପର, ମଝି ଓ କର ସାହିର ପ୍ରମୁଖ ପର୍ବ । ପଣ୍ଡା ସାହିର ଜଗନ୍ନାଥ ମହାପ୍ରଭୁଙ୍କର ଘୋଷଯାତ୍ରା ସମଗ୍ର ଜଗନ୍ନାଥପୁର ବାସୀଙ୍କର ବିଶେଷ ପର୍ବ ।

ପ୍ରାଥମିକ ଅବସ୍ଥାରେ ଜଗନ୍ନାଥପୁରବାସୀ କୃଷି ଉପରେ ନିର୍ଭର କରୁଥିଲେ । ମୋଗଲ ଅମଳରୁ ଭଦ୍ରକର ସମସ୍ତ ସରକାରୀ ଦପ୍ତର ସାଳନ୍ଦୀ ନଦୀର ଅପରପାର୍ଶ୍ୱ ପୁରୁଣା- ଭଦ୍ରକ (ପୁରୁଣା ବଜାର)ରେ ଅବସ୍ଥିତ ଥିଲା । ବ୍ରିଟିଶ ଶାସନ ସମୟରେ କାର୍ଯ୍ୟାଳୟଗୁଡ଼ିକ ଧୀରେ

ଧୀରେ ନଣର ପଶ୍ଚିମ ଦିଗସ୍ଥ ବଙ୍କସାହି ନିକଟକୁ ଉଠି ଆସିଲା ଓ କଚେରୀ ବଜାର ନାମରେ ଏକ ନୂଆ ଭଦ୍ରକ ଗଢ଼ି ଉଠିଲା । କଲିକତାରୁ ପୁରୀ-ଜଗନ୍ନାଥ ସଡ଼କର ଗମନାଗମନ ସୁବିଧା ହେତୁ ଏପରି ହୋଇଥିବା ଅନୁମାନ କରାଯାଏ । କଚେରୀ ବଜାର ଜଗନ୍ନାଥପୁରକୁ ନିକଟତର ହୋଇଥିବା କାରଣରୁ କାଳକ୍ରମେ ଗ୍ରାମର କରଣମାନେ କଚେରୀର ଲେଖାଲେଖି କାମ ଗ୍ରହଣ କରି ସହରୀ ଜୀବନର ସ୍ୱାଦ ଚାଖିବାକୁ ଲାଗିଲେ । ଅଧୁନା ଏହି ଗ୍ରାମରେ ପ୍ରାୟ କେହି କୃଷିଜୀବୀ ନାହାଁନ୍ତି । ସମସ୍ତେ ପ୍ରାୟତଃ ଚାକିରିଜୀବୀ ।

ବହୁ ବର୍ଣ୍ଣରେ ବର୍ଣ୍ଣିଳ ଏହି ଜଗନ୍ନାଥପୁର ଗାଁରେ ଜନ୍ମ ଲାଭ କରିଛନ୍ତି ଅନେକ କବି, ସାହିତ୍ୟିକ ଓ ସମାଜ ସେବକ । ଗ୍ରାମର ପୂର୍ବ ପ୍ରାନ୍ତରେ ଜନ୍ମଲାଭ କରିଥିଲେ ଓଡ଼ିଆ ସାରସ୍ୱତ କ୍ଷେତ୍ରର ଅନ୍ୟତମ ରଥୀ କବି ଶେଖର ଚିନ୍ତାମଣି ମହାନ୍ତି । ତାଙ୍କର ସୁଯୋଗ୍ୟ ପୁତ୍ର ଆଦର୍ଶ ଶିକ୍ଷକ ଉପେନ୍ଦ୍ର ପ୍ରସାଦ ମହାନ୍ତି ମଧ କବି ହିସାବରେ ପ୍ରସିଦ୍ଧି ଲାଭ କରିଥିଲେ । ଚିନ୍ତାମଣିଙ୍କ ଶାଳକ ସ୍ୱର୍ଗତ ସୋମନାଥ ମହାନ୍ତି ମଧ ଜଣେ ସାହିତ୍ୟପ୍ରେମୀ ଓ ସମାଜ ସଂସ୍କାରକ ହିସାବରେ ଯଶ ଅର୍ଜନ କରିଛନ୍ତି । ପୁନଶ୍ଚ ଏହି ଗ୍ରାମର ଉପର ସାହିରେ ଜନ୍ମଲାଭ କରିଥିଲେ ଭଦ୍ରକ କଲେଜର ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗତ ଛକଡ଼ି ମହାନ୍ତି । ଶିକ୍ଷାର ପ୍ରସାର ପାଇଁ ତାଙ୍କ ପରି ତ୍ୟାଗୀ ପୁରୁଷର ପଟାନ୍ତର ନାହିଁ । ଏକଦା ପଶ୍ଚିମବଂଗରେ କ୍ରୀଡ଼ା କ୍ଷେତ୍ରରେ ଯଶ ଅର୍ଜନ କରିଥିବା ଅନିଲ କୁମାର ମହାନ୍ତି, ସମାଜ ସଂସ୍କାରକ ସ୍ୱର୍ଗତ କ୍ଷେତ୍ରମୋହନ ମହାନ୍ତିଙ୍କ ପରି ଯଶସ୍ୱୀ ବ୍ୟକ୍ତିମାନେ ଜନ୍ମଲାଭ କରି ଜଗନ୍ନାଥପୁର ଗ୍ରାମକୁ ଧନ୍ୟ କରିଛନ୍ତି ।

ସର୍ବୋପରି ଜଗନ୍ନାଥପୁର ଗ୍ରାମର ମଝି ସାହିରେ ଜନ୍ମଲାଭ କରିଥିଲେ ଆଉ ଜଣେ ଯଶସ୍ୱୀ ସାହିତ୍ୟିକ । ମୌଳିକ ଗଳ୍ପ ଓ ଉପନ୍ୟାସ ରଚନାରେ ସେ ଥିଲେ ସିଦ୍ଧହସ୍ତ । ସେ ପୁଣି ଥିଲେ ଓଡ଼ିଆ ଅନୁବାଦ ସାହିତ୍ୟର ଦିଗଦ୍ରଷ୍ଟା । ନାମ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ମହାନ୍ତି । (ଜନ୍ମ ୧୯୧୯ ମସିହା ଜାନୁଆରୀ ୧୦ତାରିଖ) ।

ପୃଥିବୀର ଅଧିକାଂଶ ଭାଷାର ରାଶି ରାଶି ପୁସ୍ତକ ଓଡ଼ିଆରେ ଅନୁବାଦ କରି ଲକ୍ଷ୍ମୀ ନାରାୟଣ ଏ ଜାତିର ସାହିତ୍ୟିକ ମାନଙ୍କୁ ପୃଥିବୀର ବିଭିନ୍ନ ଦେଶର ଭାଷା ସାହିତ୍ୟ ସହିତ ପରିଚିତ କରାଇ ପାରିଛନ୍ତି । ତା ଛଡ଼ା ସେ ଲେଖିଛନ୍ତି - ୧୨ଖଣ୍ଡ ମୌଳିକ ଗଳ୍ପଗୁଚ୍ଛ ଏବଂ ୯ଖଣ୍ଡ ମୌଳିକ ଉପନ୍ୟାସ । ସାହିତ୍ୟ ଓ ଧର୍ମ ଆଲୋଚନା ଏବଂ ଜୀବନୀ ପୁସ୍ତକ ପ୍ରାୟ ୧୫ଖଣ୍ଡ ରଚନା କରିବା ସହିତ ସେ ବହୁ ସାହିତ୍ୟ ଅନୁଷ୍ଠାନ ଗଠନ କରିଥିଲେ । ଆମ ସାହିତ୍ୟକୁ ଋଦ୍ଧିମନ୍ତ କରିବାରେ ତାଙ୍କର ଅବଦାନ ଚିର ସ୍ମରଣୀୟ ।

ଲକ୍ଷ୍ମୀନାରାୟଣ ଆପଣା ଗାଁ ମାଟିକୁ ଏବଂ ଭଦ୍ରକ ସହରକୁ ପ୍ରାଣଦେଇ ଭଲ ପାଉଥିଲେ । ଜୀବନର ଶେଷ ଅବସ୍ଥା ପର୍ଯ୍ୟନ୍ତ ସେ ଗାଁରେ ତପସ୍ୱୀଟିଏ ପରି ସାହିତ୍ୟ ସାଧନା କରୁଥିଲେ । ନିଜ ପୈତୃକ ବାସଗୃହଟିର ନାମ ରଖିଥିଲେ 'ତପୋବନ' । ବାସ୍ତବରେ ସେ ସେହି 'ତପୋବନ'ର ତପସ୍ୱୀ ଥିଲେ ।

ରାଉରକେଲାରୁ ପ୍ରକାଶିତ ସାହିତ୍ୟ ପତ୍ରିକା 'ନବପତ୍ର' ପୃଷ୍ଠାରେ ଧାରାବାହିକ ଭାବରେ ସେ ଆପଣା ଜୀବନୀ ଲେଖୁଥିଲେ, 'ଥକାମନ' ଶିରୋନାମାରେ । ସେତେବେଳକୁ ସେ ବାସ୍ତବରେ ଥକି ପଡ଼ିଥିଲେ । ଆତ୍ମଜୀବନୀ ସମ୍ପୂର୍ଣ୍ଣ ହୋଇ ପାରିନାହିଁ; ମାତ୍ର ଅଠେଇଶିଟି ଅନୁଚ୍ଛେଦ ପରେ ଅସମ୍ପୂର୍ଣ୍ଣ ରହିଯାଇଛି । ଆତ୍ମଜୀବନୀର ଏହି ଅଠେଇଶିଟି ଅନୁଚ୍ଛେଦ ଭିତରେ କେଉଁଠି ସେ ଆତ୍ମବଡ଼ିମା କରିନାହାନ୍ତି । ଏହାର ଛତ୍ରେ ଛତ୍ରେ ରହିଛି ଭଦ୍ରକର ଜୟଗାନ, ଆପଣ ଗାଁ ମାଟିର ପ୍ରଶସ୍ତି, ଭଦ୍ରକର ବରପୁତ୍ରମାନଙ୍କର ପ୍ରଶସ୍ତି ।

ଗାଁ ମାଟି ଜଗନ୍ନାଥପୁର ସମ୍ପର୍କରେ ତାଙ୍କର ପ୍ରାରମ୍ଭିକ ଉପସ୍ଥାପନା ଏହିପରି -

"ଉତ୍କଳେ କାଳିନ୍ଦୀ ରୂପିଣୀ, ସ୍ୱଚ୍ଛ ସଲୀଳା ସାଳନ୍ଦୀ ଭଦ୍ରକ ସହରର ବୁକୁ ଚିରି ବହିଯାଇଛି ଭଦ୍ରକକୁ ଦି ଭାଗ କରିଦେଇ । ଡାହାଣ କୂଳରେ ଅବସ୍ଥିତ ଜଗନ୍ନାଥପୁର ଗାଁଟି ଆମ୍ବ, ପଣସ, ଓଉ, ତାଳ, ନଡ଼ିଆ, ଖଜୁରି, କଦମ୍ବ, ବର, ଅଶ୍ୱତ୍ଥ, ନିମ୍ବ ଇତ୍ୟାଦି କିସମର ଗଛରେ ପରିଶୋଭିତ ।

ବିରାଟ ତୋଟାଟିକୁ ଲୋକେ 'ମିଆଁବାଡ଼ି' ବୋଲି କହନ୍ତି । ରଜରେ ଆମ ଗାଁ ଓ ଆଖପାଖ କେତେ ଖଣ୍ଡ ଗାଁର ଟୋକାଏ ଏଠି ବାଗୁଡ଼ି, ଦାଣ୍ଡିଆ ଇତ୍ୟାଦି ଖେଳି ମଉଜରେ ତିନୋଟି ଦିନ କଟାନ୍ତି । ତା କଡିରେ ଘାସ ପଡ଼ିଆରେ ଫୁଟବଲ ଖେଳ ହୁଏ । ଗାଈଆଳମାନେ ଗୋରୁ ଚରାନ୍ତି । ମଶାଣିରେ ଶବଦାହ ହୁଏ । (ବର୍ତ୍ତମାନ ଆମ ଗାଁରେ ଗୋଚର ଖଣ୍ଡିଏ କି ମଶାଣିଟିଏ ନାହିଁ) । ସେଇଠି ଛିଡ଼ା ହୋଇଛି ଭଦ୍ରକ କଲେଜ ।' (ନବପତ୍ର- ୧୯୯୦ ପ୍ରଥମ ସଂଖ୍ୟା- ପୃ ୨୫)

ସତରେ ଜନ୍ମମାଟିର ଆକର୍ଷଣ ତାଙ୍କୁ ବାନ୍ଧି ରଖିଥିଲା । ଜନ୍ମରୁ ମେଟ୍ରିକ୍ ପାଶ୍ କଲା ପର୍ଯ୍ୟନ୍ତ ତାଙ୍କର ଶୈଶବ ଓ କୈଶୋର ଏହି ଗାଁରେ କଟିଥିଲା । ଦୀର୍ଘ ଚାଳିଶ ବର୍ଷର ଚାକିରି କାଳ ଭିତରେ ମଧ୍ୟ ସେ ଗାଁ ମାଟିର ମୋହ ଛାଡ଼ି ନଥିଲେ । ଚାକିରି କାଳର ଅର୍ଦ୍ଧାଧିକ ସମୟ ତାଙ୍କର କଟିଥିଲା କଟକ ସହରରେ । ଏହି ସମୟ ମଧ୍ୟରେ ସେ ସାହିତ୍ୟିକ ହିସାବରେ ଅର୍ଜନ କରିଥିଲେ ଅପରିମିତ ଯଶ ।

କିନ୍ତୁ ଲକ୍ଷ୍ମୀନାରାୟଣଙ୍କ ପାଇଁ  ଗାଁ ମାଟିରେ ଆକର୍ଷଣ ଏମିତି ଥିଲା ଯେ, ଓଡ଼ିଆ ସାହିତ୍ୟର ପ୍ରାଣ କେନ୍ଦ୍ର କଟକ ସହରରେ ଜଣେ ବିଶିଷ୍ଟ ସାହିତ୍ୟିକ ରୂପେ ଆସନ ଜମାଇ ସାରିଥିବା ସତ୍ତ୍ୱେ, ଅବସର ଗ୍ରହଣ କରିବା ମାତ୍ରେ ସେ ଜଗନ୍ନାଥପୁର ଫେରି ଆସି ମୃତ୍ୟୁ ପର୍ଯ୍ୟନ୍ତ ସେଇଠି ସାହିତ୍ୟ ସାଧନା କରୁଥିଲେ । ଗାଁ ମାଟିର ସାନ୍ନିଧ୍ୟରେ ସେ ନିଜକୁ ଧନ୍ୟ ମଣୁଥିଲେ ।

ଲକ୍ଷ୍ମୀନାରାୟଣଙ୍କ ପରି ନିଷ୍ଠାପର ସାହିତ୍ୟିକ ଓ ସଂଗଠକଙ୍କ ପାଇଁ ଜଗନ୍ନାଥପୁର ଗାଁ ମାଟି ମଧ୍ୟ ଧନ୍ୟ ହୋଇଯାଇଛି ।

## ଜନ୍ମ :

୧୯୧୯ ମସିହା ଜାନୁଆରୀ ୧୦ତାରିଖ (୧୩୨୬ ସାଲ ପୌଷମାସ ୨୬ ଦିନ) । ସେଦିନ ଗୁରୁବାର, ଅପରାହ୍ନ ସମୟ । ଭାବଗ୍ରାହୀ ମହାନ୍ତି ସବୁଦିନପରି ଜୀବିକା ଦାୟରେ ଭଦ୍ରକ କଚେରୀକୁ ଯାଇଥିଲେ । ଖବର ପହଞ୍ଚିଲା ତାଙ୍କର ପତ୍ନୀ ମହୁଡ଼ମଣିଙ୍କ ଦ୍ୱିତୀୟ ଗର୍ଭରୁ ପୁଅଟିଏ ଜନ୍ମ ନେଇଛି । ଅତି ଆନନ୍ଦ ମନରେ ସେ କଚେରୀ କାମ ଛାଡ଼ି ଧାଇଁଲେ ଘରକୁ । ଘରେ ପହଞ୍ଚିଲା ବେଳକୁ ସାନଭାଇ ଭାସ୍କର ଏକୁଡ଼ିଶାଳରୁ ପିଲାଟିକୁ ଟେକି ନେଇ ସାରିଥାଏ । ସେହି ସୂତ୍ରରୁ ଭାସ୍କରବାବୁ ତାଙ୍କର ସାନବାବା ଓ ତାଙ୍କ ସ୍ତ୍ରୀ ଗୋଦାବରୀ ତାଙ୍କର ସାନବୋଉ ।

ପରିବାରର ସମ୍ପର୍କୀୟ ଆଉ ଜଣେ ଦାଦା, ବେଣୁଧର । ପୋଲିସ ବିଭାଗରେ ମୁଖ୍ୟ କିରାଣି କାମ କରୁଥିଲେ । ସେଦିନ ସେ ବି ଛୁଟିରେ ଥିଲେ । ସ୍ୱଭାବରେ ଧର୍ମପରାୟଣ ବ୍ୟକ୍ତି । ଖବର ପାଇ ସେ ମଧ୍ୟ ପହଞ୍ଚିଲେ ଭାବଗ୍ରାହୀଙ୍କ ଘରେ । ନବଜାତ ଶିଶୁଟି ଲକ୍ଷ୍ମୀଙ୍କର ପ୍ରିୟ ଗୁରୁବାର ଦିନ ଜନ୍ମ ନେଇଥିବାରୁ ସେ ତାର ନାମକରଣ କଲେ ଲକ୍ଷ୍ମୀନାରାୟଣ ।

ଗ୍ରାମର କୁଳ ଜ୍ୟୋତିଷ ହରିନାରାୟଣ ଶାସ୍ତ୍ରୀ ଶିଶୁ ପୁତ୍ରର ଜନ୍ମ ପତ୍ରିକା କରିବା ବେଳେ ଏହି ନାମକୁ ସମର୍ଥନ କରିଥିଲେ ଏବଂ ଭବିଷ୍ୟତରେ ଏହି ବାଳକ ଯଶସ୍ୱୀ ହେବ ବୋଲି ଭବିଷ୍ୟତବାଣୀ କରିଥିଲେ । ତେବେ ମାତା ମହୁଡ଼ମଣି ଅତି ଆନନ୍ଦରେ ତାଙ୍କ ଗେହ୍ଲାପୁଅକୁ ଡ଼ାକୁଥିଲେ 'ବାବାଜୀ' । ଧୀରେ ଧୀରେ ଗାଁ ସାରା ସମସ୍ତଙ୍କ ପାଖରେ ସେ ହେଲେ ଆଦରର ବାବାଜୀ ।

## ପିତୃପରିବାର:

ପୂର୍ବରୁ ଉଲ୍ଲେଖ କରାଯାଇଛି, ଜଗନ୍ନାଥପୁରର ମଝିସାହିରେ ସାହିତ୍ୟିକ ଲକ୍ଷ୍ମୀନାରାୟଣଙ୍କ ଜନ୍ମ । ଏହି ମଝି ସାହିର କରଣ ପରିବାର ଯାଜପୁର ଜିଲ୍ଲା କୋରାଇ ଅଂଚଳରୁ ଉଠି ଆସିଥିବା କଥା ମଧ୍ୟ ଉଲ୍ଲେଖ ହୋଇସାରିଛି । ମଝି ସାହିର ସମ୍ଭ୍ରାନ୍ତ କରଣ ପିରବାର ମୂଳ ଉତ୍ସରୁ ପ୍ରଥମେ ତିନୋଟି ବଂଶବୃକ୍ଷରେ ବିଭକ୍ତ ହେଲେ । ସ୍ୱର୍ଗତ ଦୈତାରୀ ମହାନ୍ତି ଏହି ତିନି ଉତ୍ସ ମଧ୍ୟରୁ ଅନ୍ୟତମ ଏବଂ ସେ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ପ୍ରପିତାମହ ଅଟନ୍ତି । ଲକ୍ଷ୍ମୀନାରାୟଣଙ୍କ ବଂଶଲତା ପରିଶିଷ୍ଟ -୧ରେ ସନ୍ନିବିଷ୍ଟ ।

ଦୈତାରୀଙ୍କର ଦୁଇ ପୁଅ ପ୍ରଜାପତି ଓ ଦାଶରଥି । ବଡ଼ପୁଅ ପ୍ରଜାପତିଙ୍କର ତିନିପୁଅ । ଯଥାକ୍ରମେ ଭାବଗ୍ରାହୀ, ଉଦୟନାଥ ଓ ଭାସ୍କର । ଜ୍ୟେଷ୍ଠପୁତ୍ର ଭାବଗ୍ରାହୀଙ୍କର ପୁତ୍ର ଲକ୍ଷ୍ମୀନାରାୟଣ । ତାଙ୍କର ବଡ଼ ଭଉଣୀ ସ୍ୱର୍ଗତ ହୀରାମଣି ଓ ସାନ ଭଉଣୀ ପ୍ରମିଳା (ପାତି) । ତେଣୁ ଲକ୍ଷ୍ମୀ ନାରାୟଣ ଭାବଗ୍ରାହୀଙ୍କ ଏକମାତ୍ର ପୁତ୍ର । ବଡ଼ଦାଦି ଉଦୟନାଥ ଯୁବାକାଳରୁ କୁଆଡ଼େ ନିରୁଦ୍ଦିଷ୍ଟ ହୋଇଯାଇଥିଲେ । ସାନ ଦାଦି ଭାସ୍କରଙ୍କର ଗୋଟିଏ ବୋଲି ପୁଅ ରବି ନାରାୟଣ ।

ଶୈଶବରେ ମାତ୍ର ଆଠବର୍ଷ ବୟସରେ ଲକ୍ଷ୍ମୀନାରାୟଣ ପିତା ଭାବଗ୍ରାହୀଙ୍କୁ ହରାଇ ଥିଲେ ଓ ଭାସ୍କର ହିଁ ତାଙ୍କର ପିତା ଥିଲେ । ଲକ୍ଷ୍ମୀନାରାୟଣ ତାଙ୍କୁ 'ବାବା' ବୋଲି ଡ଼ାକୁଥିଲେ । ଭାସ୍କର ମଧ୍ୟ ବହୁଦିନ ପର୍ଯ୍ୟନ୍ତ ନିଃସନ୍ତାନ ଥିଲେ ।

ଲକ୍ଷ୍ମୀନାରାୟଣଙ୍କ ପିତା ଭାବଗ୍ରାହୀ କଚେରୀରେ ମୋହରୀର କାମ କରୁଥିଲେ । ରୋଜଗାର ମନ୍ଦ ନଥିଲା । ଆଦର୍ଶ ବ୍ୟକ୍ତିତ୍ୱସମ୍ପନ୍ନ ଭାବଗ୍ରାହୀ ନିର୍ଭୟରେ ପରିବାରକୁ ଚଳାଉଥିଲେ । ଗାଁର କୁଳଦେବତା ରାଧାଗୋବିନ୍ଦଜୀଉଙ୍କୁ ନିଷ୍ଠାର ସହ ସେବା ପୂଜା କରୁଥିଲେ । ଭଲ ସଂକୀର୍ତ୍ତନ କରୁଥିଲେ । ଲକ୍ଷ୍ମୀନାରାୟଣଙ୍କୁ ସେ ଅତ୍ୟନ୍ତ ସ୍ନେହ କରୁଥିଲେ । ତେବେ ତାଙ୍କ ସ୍ନେହ ସହିତ ପ୍ରଚ୍ଛନ୍ନ ଶାସନ ବି ଥିଲା । ମୋଟାମୋଟି ସେ ନିଜର ପରିବାରକୁ ଅନୁଶାସନ ଭିତରେ ବେଶ୍ ଶୃଙ୍ଖଳିତ ଭାବରେ ଚଳାଉଥିଲେ । ଏଥି ନିମନ୍ତେ ସାନ ଭାଇ ଭାସ୍କର ଉପରେ ସେ ଆଦୌ ନିର୍ଭରଶୀଳ ନଥିଲେ ।

ଅନ୍ୟପକ୍ଷରେ ଲକ୍ଷ୍ମୀନାରାୟଣଙ୍କ ଦାଦି (ସାନବାବା) ଭାସ୍କର ଅତି ସରଳ ବ୍ୟକ୍ତି ଥିଲେ । କଚେରୀରେ ମୋହରୀର କାମ କରୁଥିଲେ ବି ସେଥିପ୍ରତି ତାଙ୍କର ସେତେବେଳେ ସେମିତି ଲକ୍ଷ୍ୟ ନଥିଲା । ରୋଜଗାର ସେମିତି ହେଉ ନଥିଲା ଏବଂ ସେଥିପ୍ରତି ତାଙ୍କର ନିଘା ବି ନଥିଲା । ତେବେ ବଡ଼ ଭାଇ ଭାବଗ୍ରାହୀଙ୍କୁ ସେ ବାପ ପରି ମାନୁଥିଲେ ଏବଂ ଲକ୍ଷ୍ମୀନାରାୟଣଙ୍କୁ ପୁଅଠୁ ଅଧିକ ସ୍ନେହ କରୁଥିଲେ । ଭାବଗ୍ରାହୀଙ୍କ ଅକାଳ ବିୟୋଗ ପରେ ଲକ୍ଷ୍ମୀନାରାୟଣ ଚାକିରୀ କରିବା ପର୍ଯ୍ୟନ୍ତ ଏହି ଭାସ୍କରଙ୍କୁ ହିଁ ପିରବାରର ସବୁ ଦାୟିତ୍ୱ ନିଜେ ବହନ କରିବାକୁ ପଡ଼ିଥିଲା ।

ଲକ୍ଷ୍ମୀନାରାୟଣଙ୍କ ମା ମହୁଡ଼ମଣି, ଅତ୍ୟନ୍ତ ଧର୍ମପରାୟଣା, ପରମବୈଷ୍ଣବୀ ଓ ସ୍ନେହଶୀଳା ଥିଲେ । ତାଙ୍କରି ସ୍ନେହ, ପ୍ରେରଣା ଓ ଶାସନ ଭିତରେ ଲକ୍ଷ୍ମୀନାରାୟଣ ନିଜକୁ ସଫଳ ମଣିଷ କରି ଗଢ଼ିଥିଲେ । କଥା କଥାକେ କୋଳକୁ ଟାଣିନେଇ ସେ ପୁଅକୁ ରାମାୟଣ, ମହାଭାରତ ଓ ଭାଗବତର କାହାଣୀ ଶୁଣାଉଥିଲେ ।

ଲକ୍ଷ୍ମୀନାରାୟଣଙ୍କ ଖୁଡ଼ି - ଅର୍ଥାତ୍ ଭାସ୍କର ବାବୁଙ୍କ ପତ୍ନୀଙ୍କୁ ଲକ୍ଷ୍ମୀନାରାୟର ସାନବୋଉ ବୋଲି ଡ଼ାକୁଥିଲେ । ସେ ଲକ୍ଷ୍ମୀନାରାୟଣଙ୍କୁ ପୁଅଠୁ ବଳି ସ୍ନେହ କରୁଥିଲେ । ତାଙ୍କର ମଧ୍ୟ ବହୁଦିନ ପର୍ଯ୍ୟନ୍ତ ସନ୍ତାନ ସନ୍ତତି ହୋଇ ନଥିଲା ।

ସାନବାବା ଓ ସାନବୋଉଙ୍କର ଏକମାତ୍ର ପୁଅ ରବିନାରାୟଣ । ଭାସ୍କର ବାବୁ ବିବାହର ଅନେକ ବର୍ଷ ପର୍ଯ୍ୟନ୍ତ ଅପୁତ୍ରିକ ଥିଲେ । ଲକ୍ଷ୍ମୀନାରାୟଣ ରବି ନାରାୟଣଙ୍କୁ ପୁତ୍ରତୁଲ୍ୟ ସ୍ନେହ କରୁଥିଲେ ।

## ଶୈଶବ :

ଲକ୍ଷ୍ମୀନାରାୟଣଙ୍କ ପିତା ଭାବଗ୍ରାହୀ ଥିଲେ ଜଣେ ଆଦର୍ଶ ସମ୍ପନ୍ନ ବ୍ୟକ୍ତି, ଶୃଙ୍ଖଳିତ ଏବଂ ଆଧ୍ୟାତ୍ମିକ ଭାବ ସମ୍ପନ୍ନ । ଜଣେ ପ୍ରତିଷ୍ଠିତ ମୋହରୀର ହିସାବରେ ରୋଜଗାର ନିହାତି ମନ୍ଦ

ନଥିଲା । ସାନ ଭାଇ ଭାସ୍କର ବାବୁ ଯଦିଓ ସେତେବେଳକୁ ମୋହରୀର କାମ ଆରମ୍ଭ କରିଥିଲେ, ତେବେ ସେ ଦିଗରେ ତାଙ୍କର ସେମିତି ଆଗ୍ରହ ନଥାଏ । ଲକ୍ଷ୍ମୀନାରାୟଣଙ୍କ ଜନ୍ମ ପରେ ସେ ତାକୁ ଭ କୋଳରେ ଧରି ଗାଁ ଦାଣ୍ଡରେ ବୁଲିବାରେ ଆନନ୍ଦ ପାଉଥିଲେ, କଚେରୀ ଯିବାକୁ ମନ କରୁନଥିଲେ । ତାଙ୍କ ରୋଜଗାର ଉପରେ ବି ନିର୍ଭରଶୀଳ ନ ହୋଇ ଭାବଗ୍ରାହୀ ନିଜର ଯୌଥ ପରିବାରଟି ଚଳାଇ ନେଉଥିଲେ ।

ତାଙ୍କର ଆଠ ବର୍ଷ ହେବା ପର୍ଯ୍ୟନ୍ତ ବାପା ଓ ମାଙ୍କ ସ୍ନେହ ଶ୍ରଦ୍ଧା ସାଙ୍ଗକୁ ସାନବାବା (ଦାଦା) ଓ ସାନ ବୋଉ (ଖୁଡ଼ି)ଙ୍କର ଗେହ୍ଲବସରରେ ଲକ୍ଷ୍ମୀନାରାୟଣଙ୍କ ଦିନ କଟିଯାଉଥିଲା । ବୋଧହୁଏ ଏହି ଅଲିଅଳ ପଣ ଭିତରେ ସେ ପର୍ଯ୍ୟନ୍ତ ତାଙ୍କର ଖଡ଼ି ଛୁଆଁ ହୋଇ ନଥିଲା ।

ସେତେବେଳକୁ ବଡ଼ ଝିଅ ହୀରାମଣିର ବାହାଘର ପାଇଁ ଭାବଗ୍ରାହୀ ବ୍ୟସ୍ତ ହେଉଥାଆନ୍ତି । ନିଜ ଶଳାର ପ୍ରସ୍ତାବ କ୍ରମେ ଆଗରପଡ଼ା ଅଂଚଳରେ ଯେଉଁ ବରପାତ୍ରରେ ସେ ଝିଅକୁ ବିବାହ ଦେଲେ, ସେଠାରେ ଝିଅ ସୁଖୀ ହୋଇ ପାରିଲା ନାହିଁ । ଝିଅର ଦୁଃଖରେ ଭାବଗ୍ରାହୀ ଅତିଶୟ ଦୁଃଖରେ ଭାଙ୍ଗି ପଡ଼ି ଅକାଳରେ ଚଳି ପଡ଼ିଲେ । ସେତେବେଳକୁ ଲକ୍ଷ୍ମୀନାରାୟଣଙ୍କୁ ମାତ୍ର ଆଠବର୍ଷ ବୟସ । ହୀରାମଣି ମଧ୍ୟ ଦୁଇବର୍ଷ ପରେ ଦେହତ୍ୟାଗ କଲେ ।

ଦୁଃଖ ସମୁଦ୍ର ମାଡ଼ି ଆସିଲା ।

ଜଣେ ଭଲ ମୋହରୀର ଭାବରେ ଭାବଗ୍ରାହୀ ଯାହା ରୋଜଗାର କରୁଥିଲେ ସେଥିରେ ତାଙ୍କ ପରିବାର ସୁରୁଖୁରୁରେ ଚଳି ଯାଉଥିଲା ସତ, କିନ୍ତୁ ଝିଅ ବାହାଘର ବେଳକୁ ତାଙ୍କୁ କିଛି କରଜ କରିବାକୁ ପଡ଼ିଥିଲା । ତାଙ୍କର ମୃତ୍ୟୁ ପରେ ମହାଜନମାନେ ତାଙ୍କୁ ହଇରାଣ ହରକତ କଲେ । କରଜ ସୁଝିଦେବା ବାହାନାରେ ସରଳ ଭାସ୍କରଙ୍କୁ ଫୁସୁଲେଇ କେତେକ ସମ୍ପର୍କୀୟ ବ୍ୟକ୍ତି କିଛି ଭଲ କିସମର ଜମି ମଧ୍ୟ ଆପଣା ନାମରେ କରାଇ ନେଲେ ।

ଭାସ୍କର ଏଣିକି ନିୟମିତ ମୋହରୀର କାମରେ ଲାଗିଲେ । ତେବେ ତାଙ୍କର ରୋଜଗାର ସେମିତି ସ୍ୱଚ୍ଛଳ ହେଉ ନଥିଲା । ପରିବାରର ସବୁ ଦାୟିତ୍ୱ ସତ୍ତ୍ୱେ ତାଙ୍କର ସବୁଠାରୁ ବଡ଼ ଚିନ୍ତା ଥିଲା - ଆଦରର ବାବାଜୀ ପାଠଶାଠ ପଢ଼ି କେମିତି ବଡ଼ ମଣିଷ ହେବ ।

ମାଆ ମହୁଡ଼ମଣି ବି ପୁଅର ପାଠପଢ଼ା ପାଇଁ ବ୍ୟସ୍ତ ବିକଳ ହେଉଥିଲେ । ତାଙ୍କର ଅକାଳ ବୈଧବ୍ୟରେ ସେ ବିଚଳିତ ହୋଇ ନଥିଲେ । ଲକ୍ଷ୍ମୀନାରାୟଣଙ୍କ ମାମୁଘର (ଗେଲ୍‌ଟୁଆ ଗ୍ରାମ) ମଧ୍ୟ ଏ ବେଳରେ ସାନ୍ତ୍ୱନା ଦେବା ବ୍ୟତୀତ ଆର୍ଥିକ ସହାୟତା ଯୋଗାଇବାକୁ ଅସମର୍ଥ ଥିଲା । ଏଇମିତି ଗଭୀର ଅଭାବବୋଧ ଭିତରେ ଆରମ୍ଭ ହୋଇଥିଲା ଲକ୍ଷ୍ମୀନାରାୟଣଙ୍କ ପାଠପଢ଼ା ।

## ଛାତ୍ର ଜୀବନ:

ଲକ୍ଷ୍ମୀନାରାୟଣଙ୍କ ପାଠପଢ଼ା ଆରମ୍ଭ ହୁଏ ମୁକୁନ୍ଦ ମାଷ୍ଟ୍ରଙ୍କ ଚାହାଳିରୁ । ମୁକୁନ୍ଦ ମାଷ୍ଟ୍ରେ ଉପରସାହି ଝୁଲଣ ବଙ୍ଗଳାରେ ଚାଟଶାଳୀ ଖୋଲିଥିଲେ । ଗାଁରେ ସମସ୍ତେ ତାଙ୍କୁ ଚେମା ବୋଲି

ଡ଼ାକୁଥିଲେ । ତାଙ୍କରି ପୁଅ ସ୍ୱର୍ଗତ ସତ୍ୟ ନାରାୟଣ ମହାନ୍ତି ପରବର୍ତ୍ତୀ କାଳରେ ଜଣେ ବିଶିଷ୍ଟ ପ୍ରଶାସକ ଓ ସାହିତ୍ୟିକ ହିସାବରେ ଯଶ ଅର୍ଜନ କରିଥିଲେ ।

ମାଷ୍ଟ୍ରେ ଥିଲେ ଭାରି କଡ଼ା ମିଜାଜର । ତାଙ୍କ ଚାଟଶାଳୀକୁ ଲାଗି ଲକ୍ଷ୍ମୀନାରାୟଣଙ୍କ ପିଉସୀ ଘର । ଲକ୍ଷ୍ମୀନାରାୟଣ ସେଇଠି ବେମା ମାଷ୍ଟ୍ରଙ୍କ ବେତମାଡ଼ ଖାଇ ଫଳା, ପଣିକିଆ, କଡ଼ାଗଣ୍ଡା ଆଦି ଶେଷ କଲେ ।

ଚାଟଶାଳୀ ପାଠ ପରେ ସେ ବାଗୁରାଇ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । ଉପର ସାହିର ସ୍ୱର୍ଗତ ଛକଡ଼ି ମହାନ୍ତି (ଭଦ୍ରକ କଲେଜର ପ୍ରାଣ ପ୍ରତିଷ୍ଠାତା) ଥିଲେ ଏହି ବିଦ୍ୟାଳୟର ସେକ୍ରେଟେରୀ । ସେ ନିଜେ ବିଦ୍ୟାଳୟର ପଢ଼ାଶୁଣା ତଦାରଖ କରୁଥିଲେ । ଫେରନ୍ତା ବାଟରେ ପିଲାମାନଙ୍କୁ ଅଟକାଇ ପାଠ ପଚାରୁଥିଲେ । ତାଙ୍କ ଡ଼ରରେ ଅନେକ ସମୟରେ ଲକ୍ଷ୍ମୀନାରାୟଣ ସଡ଼କ ବାଟେ ନ ଆସି ନଈ ବାଲିରେ ଚାଲି ଚାଲି ଘରକୁ ଫେରୁଥିଲେ ।

ଏହି ବିଦ୍ୟାଳୟର ଉଚ୍ଚ ପ୍ରାଥମିକ ଶ୍ରେଣୀରେ ମଦନବାବୁ ଓ ମାଇନର ସ୍କୁଲରେ ସୁରେନ୍ଦ୍ର ବାବୁ ପ୍ରଧାନ ଶିକ୍ଷକ ଥିଲେ । ସମ୍ପାଦକ ଛକଡ଼ି ମହାନ୍ତି ଓ ଦୁଇଜଣ ଅଭିଜ୍ଞ ପ୍ରଧାନ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଆଖପାଖ ଅସ୍ତଳ, ଚାନ୍ଦୁଗଞ୍ଜ, ବାଉଦପୁର ପରି ଅନେକ ଗାଁର ପିଲାମାନେ ଏଠାରେ ପଢୁଥିଲେ ।

ଲକ୍ଷ୍ମୀନାରାୟଣଙ୍କ ପଡ଼ିଶାର ଆଉ ଜଣେ ବଡ଼ ବାପାଙ୍କ ପୁଅ ନିମାଇଁ ମହାନ୍ତି ରାତିରେ ଟ୍ୟୁସନ କରୁଥିଲେ । ପିଉସୀ ପୁଅ ଭାଇ ବାଷ୍ଟୁ ଓ ଜିତୁ ତାଙ୍କ ପାଖରେ ଟ୍ୟୁସନ୍ ହେଉଥିଲେ । ବିନା ପଇସାରେ ଲକ୍ଷ୍ମୀନାରାୟଣଙ୍କୁ ମଧ୍ୟ ଟ୍ୟୁସନ୍ କରିବାକୁ ସେ ରାଜି ହେଲେ । ପ୍ରତିଦିନ ସନ୍ଧ୍ୟାରେ ଲଣ୍ଠନ ଧରି ସେ ନିମାଇଁ ମହାନ୍ତି (ଭାଇ)ଙ୍କ ସହିତ ଉପରସାହିରେ ପିଉସୀଙ୍କ ଘରକୁ ଯାଉଥିଲେ ଓ ଟ୍ୟୁସନ୍ ସାରି ଫେରି ଆସୁଥିଲେ । ପରେ ନିମାଇଁ ଭାଇ ପୋଲିସ୍ ବିଭାଗରେ ଚାକିରି ପାଇ ଚାଲିଯିବାରୁ, ଲକ୍ଷ୍ମୀନାରାୟଣ କାଉପୁର ନିବାସୀ ଭଗବାନ ମହାନ୍ତିଙ୍କ ପାଖରେ ଟ୍ୟୁସନ୍ ହେଲେ ।

ଭଗବାନ ମହାନ୍ତି ମଧ୍ୟ ବାଗୁରାଇ ସ୍କୁଲରେ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଜଗନ୍ନାଥପୁରର ମଥୁରୀ ବାବୁଙ୍କ ଘରେ ରହି ସେ କେତେଜଣ ପିଲାଙ୍କୁ ଟ୍ୟୁସନ୍ କରୁଥିଲେ ।

ମାଇନର୍ ପଢୁଥିବା ସମୟରେ ଥରେ ଉଦୁଉଦିଆ ଖରାବେଳେ ଜଗନ୍ନାଥପୁର ମଝି ସାହିରେ ନିଆଁ ଲାଗିଲା । ଚାହୁଁ ଚାହୁଁ ବଡ଼ବାନଳ ଗାଁ ଭିତରର ଛଅ ଖଣ୍ଡ ଖଞ୍ଜା ଓ ଠାକୁର ବଗିଚାକୁ ଚାଟି ପକାଇଲା । ପିଲା ଛୁଆଙ୍କୁ ଧରି ଲୋକମାନେ ନାନା ଦୁର୍ଦ୍ଦଶା ଭିତରେ ଗାଁ ମୁଣ୍ଡ ବାଉଁଶ ବାଡ଼ିରେ ଆଶ୍ରୟ ନେଲେ ।

ସେହି ବର୍ଷ ଲକ୍ଷ୍ମୀନାରାୟଣଙ୍କର ସପ୍ତମ ଶ୍ରେଣୀ - ମାଇନର୍ ଶେଷ କ୍ଲାସ୍‌ର ବୋର୍ଡ଼ ପରୀକ୍ଷା । ପରୀକ୍ଷା ମାସକ ଆଗରୁ ସ୍କୁଲରେ କୋଚିଂ କ୍ଲାସ ହେଲା । ଅନ୍ୟ ପିଲାଙ୍କ ସହିତ ହଷ୍ଟେଲରେ ରହି ଲକ୍ଷ୍ମୀନାରାୟଣ ପଢ଼ାପଢି କଲେ ଓ ମାଇନର ପାଶ୍ କଲେ ।

ମାଇନର୍ ପାଶ୍ ଉତାରୁ, ମା ମହୁଡ଼ମଣି ଚିନ୍ତାରେ ପଡ଼ିଗଲେ । ଏତେ ଅଭାବ ଭିତରେ କେମିତି ବାବାଜୀ ଆଗକୁ ପଢ଼ିବ ? ସବୁବେଳେ ଏହି ଚିନ୍ତା ।

ସାନ ବାବା (ଦାଦା)ଙ୍କ ଆୟରୁ ଭଦ୍ରକ ହାଇସ୍କୁଲରେ ନାମ ଲେଖାଇ ଚାରିବର୍ଷ ପାଠ ପଢ଼ିବା କାଠିକାର ପାଠ । ବାଗୁରାଇରେ ସେତେବେଳକୁ ହାଇସ୍କୁଲ ହୋଇ ନଥାଏ । ଭଦ୍ରକ ହାଇସ୍କୁଲ ଥିଲା ଜିଲ୍ଲାର ପ୍ରଥମ ହାଇସ୍କୁଲ । ବଡ଼ବଡ଼ିଆ ମାନଙ୍କର ସ୍କୁଲ । ଭାସ୍କର ବାବୁଙ୍କ ଉପରେ ପାଞ୍ଚ ପ୍ରାଣୀ କୁଟୁମ୍ବଙ୍କ ଦାୟିତ୍ୱ (ଭାସ୍କର ବାବୁ ନିଜେ, ତାଙ୍କ ସ୍ତ୍ରୀ, ଲକ୍ଷ୍ମୀନାରାୟଣଙ୍କ ମା ମହୁଡ଼ମଣି, ଲକ୍ଷ୍ମୀନାରାୟଣ ଓ ସାନଭଉଣୀ) । ତା ସହିତ କୁଳଦେବତା ରାଧାଗୋବିନ୍ଦଙ୍କ ଯାନିଯାତ୍ରା, ଘରେ ଭାଗବତ ଗୋସେଇଙ୍କ ନୀତି ପୂଜା, ଘର ଛପର, ଖଜଣା ଟିକସ ଇତ୍ୟାଦି ଇତ୍ୟାଦି । ମହୁଡ଼ମଣିଙ୍କ ପାଖରେ ଥିବା ରୂପା ଅଳଙ୍କାରରୁ କିଛି କିଛି ମଝିରେ ମଝିରେ ବିକ୍ରି ହେଉଥାଏ ।

ଲକ୍ଷ୍ମୀନାରାୟଣଙ୍କ ସମ୍ପର୍କୀୟ ଦାଦା (ଜେଜେ ବାପା ପ୍ରଜାପତିଙ୍କ ସାନଭାଇ ଦାଶରଥିଙ୍କ ପୁଅ) ବଂଶୀଧର ସେତେବେଳକୁ ପୁଲିସ୍ ସବ୍‌ଇନିସ୍‌ପେକ୍ଟର । ମହୁଡ଼ମଣି ମିନତୀ କରି ତାଙ୍କୁ ଖଣ୍ଡେ ଚିଠି ଲେଖିଲେ, ପୁଅର ପାଠ ପଢ଼ା ବିଷୟରେ । ବଂଶୀଧର ଅପୁତ୍ରିକ ଥିଲେ । ସମାଜ ସେବା ମୂଳକ କାମରେ ତାଙ୍କର ଆଗ୍ରହ ବି ଥିଲା । ସେ ଚାରିବର୍ଷ ପର୍ଯ୍ୟନ୍ତ ମାସିକ ପାଞ୍ଚଟଙ୍କା ଦେବାକୁ ରାଜି ହେଲେ । ସାହାରା ମିଳିଗଲା । ଲକ୍ଷ୍ମୀନାରାୟଣ ଓଡ଼ିଶାର ଅନ୍ୟତମ ସମ୍ଭ୍ରାନ୍ତ ହାଇସ୍କୁଲ ଯାହାର ନାମ 'ଭଦ୍ରକ ହାଇସ୍କୁଲ' (ଅଧୁନା ଭଦ୍ରକ ଜିଲ୍ଲା ସ୍କୁଲ) ସେଇଠି ନାମ ଲେଖାଇଲେ ।

ଲକ୍ଷ୍ମୀନାରାୟଣ ନିଜର ସୁନ୍ଦର ହସ୍ତାକ୍ଷର, ସାଧାରଣ ଜ୍ଞାନ, ପଦ୍ୟ ଆବୃତ୍ତି ଏବଂ ପରିଷ୍କାର ପରିଛନ୍ନତା ପାଇଁ ଶିକ୍ଷକମାନଙ୍କର ପ୍ରିୟ ଭାଜନ ହୋଇ ପାରିଥିଲେ । ସେତେବେଳେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଗୋକୁଳାନନ୍ଦ ନାୟକ ଏବଂ ସହକାରୀ ପ୍ରଧାନ ଶିକ୍ଷକ ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି (କବିଶେଖର ଚିନ୍ତାମଣି ମହାନ୍ତିଙ୍କ ପୁଅ)ଙ୍କ ପାଇଁ, ଏହି ସ୍କୁଲ, ସାରା ରାଜ୍ୟରେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଥାଏ । ଡ଼କ୍ଟର ହରେକୃଷ୍ଣ ମହତାବ, ଶ୍ରୀ ନୀଳମଣି ରାଉତ୍‌ରାୟ, ଶ୍ରୀ ବିଧୂଭୂଷଣ ଦାସ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଜନକବି ବାଞ୍ଛାନିଧିଙ୍କ ପରି ଅନେକ ବରପୁତ୍ର ଶିକ୍ଷାଲାଭ କରିଥିବାରୁ ସାରା ରାଜ୍ୟରେ ଏହି ବିଦ୍ୟାଳୟ ବେଶ୍ ପ୍ରଶସ୍ତି ଲାଭ କରିସାରିଥାଏ ।

ଲକ୍ଷ୍ମୀନାରାୟଣଙ୍କ ନବମ ଶ୍ରେଣୀରେ ସମଗ୍ର ବିଦ୍ୟାଳୟ ସ୍ତରରେ ଏକ ସାଧାରଣଜ୍ଞାନ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ଏହି ପ୍ରତିଯୋଗିତାରେ ଲକ୍ଷ୍ମୀନାରାୟଣ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଏହି ପୁରସ୍କାର ତାଙ୍କୁ ସାହିତ୍ୟ ରଚନା ଦିଗରେ ଅଧିକ ଉତ୍ସାହିତ କରିଥିଲା ।

ଲକ୍ଷ୍ମୀନାରାୟଣଙ୍କ ଅନ୍ୟତମ ସହପାଠୀ ତଥା ଘନିଷ୍ଠତମ ବନ୍ଧୁଥିଲେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ କନିଷ୍ଠ ପୁତ୍ର ଗୌରଚନ୍ଦ୍ର ମହାପାତ୍ର । ବୟସରେ ଗୌରଚନ୍ଦ୍ର ବଡ଼ । ଲକ୍ଷ୍ମୀନାରାୟଣ ତାଙ୍କୁ 'ଗୌରଭାଇ' ଡ଼ାକନ୍ତି ।

ସାଧାରଣଜ୍ଞାନ ପ୍ରତିଯୋଗିତା ପରେ ଲକ୍ଷ୍ମୀନାରାୟଣ ଗୌରଭାଇଙ୍କୁ ରାଜି କରାଇ ନବମ ଶ୍ରେଣୀର ହାତଲେଖା ସାହିତ୍ୟ ପତ୍ରିକାଟିଏ ଆରମ୍ଭ କଲେ । ନାମ ରଖାଗଲା 'ରଶ୍ମିରେଖା' । ଗୌରଭାଇ ସମ୍ପାଦକ ରହିଲେ । ଶ୍ରେଣୀର ପିଲାମାନଙ୍କ ଠାରୁ ଲେଖା ସଂଗ୍ରହ କରି ସୁନ୍ଦର ଭାବେ ସଂଜ୍ଞାଇ ଲେଖିବା ଦାୟିତ୍ୱ ଖୋଦ୍ ଲକ୍ଷ୍ମୀନାରାୟଣ ନେଲେ । ଲାଗ ଲାଗ ଦୁଇଟି ସଂଖ୍ୟା ବାହାରିଥିଲା । ତାଙ୍କର ଏହି ସାଧୁ ଉଦ୍ୟମକୁ ଶିକ୍ଷକମାନେ, ବିଶେଷ କରି ସହକାରୀ ପ୍ରଧାନ ଶିକ୍ଷକ, କବି ଶେଖର ଚିନ୍ତାମଣି ମହାନ୍ତିଙ୍କ ସୁପୁତ୍ର ସୁସାହିତ୍ୟିକ ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି ଭୂୟସୀ ପ୍ରଶଂସା କରିଥିଲେ ।

ଲକ୍ଷ୍ମୀନାରାୟଣଙ୍କ ସାରସ୍ୱତ ରୁଚିର ଆଉ ଏକ ଉଦାହରଣ ଉଲ୍ଲେଖଯୋଗ୍ୟ। କବି କୃଷ୍ଣଚରଣ ତ୍ରିପାଠୀ ସେତେବେଳେ ଭଦ୍ରକ ହାଇସ୍କୁଲର ସାହିତ୍ୟ ଶିକ୍ଷକ ଥିଲେ । ଥରେ ସେ ପ୍ରବନ୍ଧଟିଏ ଲେଖିବା ପାଇଁ ଦେଇଥିଲେ । କୌଣସି କାରଣରୁ ଲକ୍ଷ୍ମୀନାରାୟଣ ସେ କଥା ଭୁଲି ଯାଇଥିଲେ । ତେବେ ନିର୍ଦ୍ଦିଷ୍ଟ ଦିନ ମନେ ପଡ଼ିବାରୁ ସେ ବାସୁଦେବ ମହାପାତ୍ରଙ୍କ 'ପ୍ରବନ୍ଧ ପ୍ରବେଶ' ବହିରୁ ପ୍ରବନ୍ଧଟି ପଢ଼ି ସାମାନ୍ୟ ଅଦଳବଦଳ କରି ଲେଖି ଦେଇଥିଲେ । ତେବେ କବି ତ୍ରିପାଠୀ ମହୋଦୟ ଅନାୟସରେ ପ୍ରବନ୍ଧଟି ପଢ଼ି ଏହା ଜାଣି ପାରିଲେ ଓ ଲକ୍ଷ୍ମୀନାରାୟଣଙ୍କୁ ଭର୍ତ୍ସନା କରି ତାଙ୍କ ରଚନା ଖାତା ଚିରିଦେଲେ । ଲକ୍ଷ୍ମୀନାରାୟଣ ସେଦିନ କାନ୍ଦି ପକାଇଲେ । ପୁଣି କିଛି ଦିନ ପରେ ତ୍ରିପାଠୀ ମହୋଦୟ ଆଉ ଗୋଟିଏ ରଚନା ଦେଲେ - 'ପୋଷାକ' ।

ନାନାବିଧ ପୁସ୍ତକ ଅଧ୍ୟୟନ କରି ଲକ୍ଷ୍ମୀନାରାୟଣ ଏତେ ସୁନ୍ଦର ରଚନାଟିଏ ଲେଖିଲେ ଯେ ତ୍ରିପାଠୀ ମହୋଦୟ ତାହା ପଢ଼ି ସମସ୍ତଙ୍କୁ ଶୁଣାଇଲେ ଓ ଲକ୍ଷ୍ମୀନାରାୟଣଙ୍କୁ ଆଶୀର୍ବାଦ କରି କହିଲେ - "ତୁମେ ନିଶ୍ଚୟ ଜଣେ ଲେଖକ ହେବ।" ଅତି ସଙ୍କୋଚରେ ଲକ୍ଷ୍ମୀନାରାୟଣ ତାଙ୍କୁ ଜଣାଣ କରିଥିଲେ - "ସାର୍ ମୁଁ ଜଣେ ଅତି ଗରିବ ଛାତ୍ର । ଲେଖକ ହେଲେ କ'ଣ ମୋ ସଂସାର ଚଳିବ ?" ସେତେବେଳେ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ତାଙ୍କୁ କହିଲେ "ତୁମେ ଜାଣିନାହଁ କବି ଲେଖକଙ୍କର କେତେ ମାନସମ୍ମାନ । ତୁମ ଭିତରେ ସାରସ୍ୱତ ପ୍ରତିଭା ଅଛି, ତୁମେ ନିଶ୍ଚୟ ଜଣେ ବଡ଼ ଲେଖକ ହେବ । ଓଡ଼ିଆ ସାହିତ୍ୟର ମୁଖ ଉଜ୍ଜ୍ୱଳ କରିବ ।" ସତରେ ତାଙ୍କ ଆଶିଷ ସଫଳ ହୋଇଛି । ଅନେକ ଗଳ୍ପ, ଉପନ୍ୟାସ ସହିତ ରାଶି ରାଶି ଦେଶୀ ବିଦେଶୀ ସାହିତ୍ୟକୁ ଓଡ଼ିଆରେ ଅନୁବାଦ କରି ସେ ଆମ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ସେହି ସମୟର ଆଉ ଏକ ଘଟଣା । ୧୯୩୫ ମସିହାର କଥା । ସେ ବର୍ଷ ତତ୍କାଳୀନ ବ୍ରିଟିଶ ସମ୍ରାଟ ପଞ୍ଚମ ଜର୍ଜଙ୍କ ରଜତ ଜୟନ୍ତୀ ସାରା ଭାରତବର୍ଷରେ ପାଳନ କରାଯାଉଥିଲା । ସେହି ଉପଲକ୍ଷେ ଏକ ପ୍ରବନ୍ଧ ପ୍ରତିଯୋଗିତା ଅନୁଷ୍ଠିତ ହେଲା । ସେତେବେଳେ ଲକ୍ଷ୍ମୀନାରାୟଣ ଦଶମ ଶ୍ରେଣୀର ଛାତ୍ର । ପ୍ରତିଯୋଗିତାରେ ଲକ୍ଷ୍ମୀନାରାୟଣ ତୃତୀୟ ସ୍ଥାନ ଅଧିକାର କରିଥିଲେ ଓ ଭଦ୍ରକର ଏସ୍.ଡ଼ି.ଓ ଅହମ୍ମଦ ସାହେବଙ୍କ ହାତରୁ ଆଶୁତୋଷ ଦେବଙ୍କ ପ୍ରଣୀତ ଇଂରାଜୀ-ବଙ୍ଗଳା ଷ୍ଟୁଡେଣ୍ଟସ୍ ଡ଼ିକ୍ସନେରୀ ଖଣ୍ଡିଏ ପୁରସ୍କାର ପାଇଥିଲେ (ସେତେବେଳେ ମୂଲ୍ୟ ତିନିଟଙ୍କା

ମାତ୍ର ।) ଏହି ଡ଼ିକ୍‌ସିନେରୀଟି ଅନୁବାଦ କାର୍ଯ୍ୟରେ ଲକ୍ଷ୍ମୀ ନାରାୟଣଙ୍କୁ ବିଶେଷ ସହାୟକ ହୋଇଛି ଓ ଅତି ଯତ୍ନରେ ଆଜି ମଧ୍ୟ ତାଙ୍କ ନିଜସ୍ୱ ପାଠାଗାରରେ ସାଇତା ହୋଇ ରହିଛି । ସେହିବର୍ଷ ଭଦ୍ରକ ହାଇସ୍କୁଲର ମୁଖପତ୍ର ସାଳନ୍ଦୀରେ ତାଙ୍କର ଇଂରାଜୀ ଗପ 'ଟିଟ୍ ଫର୍ ଟେଟ୍' ପ୍ରକାଶିତ ହୋଇ ସମସ୍ତଙ୍କ ଦ୍ୱାରା ବେଶ୍ ପ୍ରଶଂସିତ ହୋଇଥିଲା ।

ସାହିତ୍ୟ ପ୍ରତି ଦିନକୁ ଦିନ ଆଗ୍ରହ ବଢ଼ିବା ସହିତ ପାଠ୍ୟ ପୁସ୍ତକ ପରିବର୍ତ୍ତେ ତାଙ୍କର ଅନ୍ୟାନ୍ୟ ପୁସ୍ତକ ପଢ଼ିବାର ଆଗ୍ରହ ବଢୁଥିଲା । ଭଲ ବହିଖଣ୍ଡିଏ ମିଳିଲେ କୋଟିଧନ ମିଳିବା ପରି ତାଙ୍କୁ ଲାଗୁଥିଲା । ଲେଖକମାନଙ୍କୁ ଦର୍ଶନ କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ବଢୁଥିଲା । ସାଥୀ ଗୌର ମହାପାତ୍ର ଏବଂ ଅନନ୍ତ ମହାପାତ୍ରଙ୍କ ଗହଣରେ କବି ଶେଖର ଚିନ୍ତାମଣି ମହାନ୍ତି ଓ ଜନକବି ବାଞ୍ଛାନିଧି ମହାନ୍ତିଙ୍କ ସାନ୍ନିଧ ଲାଭ କରି ଏହି କିଶୋର ଜୀବନରେ ସେ ନିଜକୁ ଧନ୍ୟ ମଣିଥିଲେ ।

ତେବେ ତାଙ୍କର ଏହି ଅତ୍ୟଧିକ ସାହିତ୍ୟପ୍ରୀତି ଯୋଗୁ ପାଠ୍ୟପୁସ୍ତକ ପ୍ରତି ଅବହେଳା ବି ହୋଇଥିଲା । ପରିଣତି ସ୍ୱରୂପ ଗଣିତ ଓ ସଂସ୍କୃତରେ ସେ ଦୁର୍ବଳ ହୋଇଗଲେ । ଗଣିତ ଶିକ୍ଷକ ନିତ୍ୟାନନ୍ଦ ସେନାପତିଙ୍କ ପୁତୁରା ଭାବଗ୍ରାହୀ ଓ ସଂସ୍କୃତ ଶିକ୍ଷକଙ୍କ ପୁଅ ନେତ୍ରାନନ୍ଦ ତାଙ୍କର ସହପାଠୀ ଥିଲେ । ସେମାନେ ଏହି ଦୁଇଟି ବିଷୟରେ ପଢ଼ିବା ଓ ବୁଝିବା ଦିଗରେ ସାହାଯ୍ୟ କରିଥିଲେ ।

ତଥାପି ମାଟ୍ରିକ୍ ପାଇଁ ଉଦ୍ଦିଷ୍ଟ ଟେଷ୍ଟ ପରୀକ୍ଷାରେ ଗଣିତରେ କମ୍ ନମ୍ବର ରହିବା କାରଣରୁ ସେ ସେଣ୍ଟଅପ୍ ହୋଇ ପାରିଲେ ନାହିଁ । ତାଙ୍କୁ ଏହା ଭାରି ବାଧିଲା । ଖିଆପିଆ ଛାଡ଼ି ଦେଲେ । ଶେଷରେ ସାନବାବା (ପ୍ରକୃତ ଦାଦା) ଯାଇ ପ୍ରଧାନ ଶିକ୍ଷକଙ୍କୁ ଅନେକ ଅନୁରୋଧ କରିବା ପରେ ଗଣିତରେ ଟ୍ୟୁସନ ହେବାର ସର୍ତ୍ତ ରଖି ସେ ତାଙ୍କୁ ସେଣ୍ଟଅପ୍ କରାଇଲେ ।

ତା ପରେ ମାଟ୍ରିକ୍ ପାସ୍ କରିବାର ଚିନ୍ତା । ସ୍ଥାନୀୟ ବାଉଦପୁର ଗ୍ରାମର ଜୀବନାନନ୍ଦ ଦାସ ବୃତ୍ତିରେ ଜଣେ ଓକିଲ ଥିଲେ । ତାଙ୍କ ପାଖରେ କିଛି ଛାତ୍ର ନିୟମିତ ଟ୍ୟୁସନ ହେଉଥିଲେ । ଲକ୍ଷ୍ମୀନାରାୟଣ ବି ତାଙ୍କରି ପାଖରେ ଟ୍ୟୁସନ ହେଲେ । ସେ ମୁଖ୍ୟତଃ ଗଣିତ ପଢ଼ାଉଥିଲେ ।

ନିଜ ଗାଁ ଜଗନ୍ନାଥପୁରରେ ଜଣେ ସମ୍ପର୍କୀୟ ଭାଇ, ପ୍ରଖ୍ୟାତ ସଂସ୍କୃତ ପଣ୍ଡିତ, ଲାଲବିହାରୀ ମହାନ୍ତି (ନାଲା ପଣ୍ଡିତ ବୋଲି ତାଙ୍କୁ ସାରା ଭଦ୍ରକର ଲୋକ ଜାଣିଥିଲେ।); ଭଦ୍ରକ ହାଇସ୍କୁଲ ପାଖରେ ତାଙ୍କର ସଂସ୍କୃତ ଟୋଲ୍‌ଟିଏ ଥିଲା । ତେବେ ଘର ପାଖରେ ଝୁଲଣ ବଙ୍ଗଳାରେ ସେ ଲକ୍ଷ୍ମୀନାରାୟଣଙ୍କୁ ଘଣ୍ଟାଏ ସଂସ୍କୃତ ପଢ଼ାଇଲେ । ମଧ୍ୟାହ୍ନ ଭୋଜନ ପରେ ସେ ଏହି ବଙ୍ଗଳାରେ ବିଶ୍ରାମ ନିଅନ୍ତି । ସେହି ସମୟରେ ଲକ୍ଷ୍ମୀନାରାୟଣ ତାଙ୍କ ପାଖରେ ସଂସ୍କୃତ ପଢ଼ିଲେ ।

ନଈ ଆରପଟ ସାହାପୁରର ବିଷ୍ଣୁଚରଣ ଦାସ; ଆଉ ଜଣେ ଦୂର ସମ୍ପର୍କୀୟ ଭାଇ । ସେ କଚେରୀରେ ମୋହରୀର କାମ କରୁଥିଲେ । ସାନବାବା (ପ୍ରକୃତ ଦାଦା) ଭାସ୍କର ବାବୁ ତାଙ୍କୁ ବି କହିଲେ, ବାବାଜୀର ପାଠପଢ଼ା ଟିକେ ଦେଖିବାପାଇଁ । ସେ ମଧ୍ୟ ଅନେକ ସମୟରେ କଚେରୀ

କାମ ପରେ ଜଗନ୍ନାଥପୁର ଆସି ଲକ୍ଷ୍ମୀନାରାୟଣଙ୍କୁ ପଢ଼ାଉଥିଲେ । ଆଉ ଜଣେ ସମ୍ପର୍କୀୟ ଦାଦା ବୃନ୍ଦାବନ ମହାନ୍ତି ରାତିରେ ତାଙ୍କୁ ଇଂରାଜୀ ପଢ଼ାଉଥିଲେ ଓ ତାଙ୍କ ଘରେ ରାତ୍ର ଭୋଜନ କରୁଥିଲେ ।

ରାତିରେ ଅଧିକ ଦୁଇଜଣଙ୍କ ଖିଆପିଆ ବ୍ୟବସ୍ଥା ଭିତରେ ଅନେକ ସମୟରେ ବୋଉ ମହୁଡ଼ମଣିଙ୍କୁ ଉପବାସ ରହିବାକୁ ପଡୁଥିଲା ।

ଲକ୍ଷ୍ମୀନାରାୟଣ ବି ଏତେଗୁଡ଼ିଏ ଶିକ୍ଷକଙ୍କ ତଦାରଖ ଭିତରେ ପାଠପ୍ରତି ଭୟାତୁର ହୋଇ ପଡୁଥିଲେ । ବିଶେଷ କରି ଗଣିତ ଏବଂ ସଂସ୍କୃତ ପ୍ରତି । ଅନ୍ୟ ବିଷୟଗୁଡ଼ିକ ପ୍ରତି ତାଙ୍କର ଭୟ ନଥିଲା ।

୧୯୩୭ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଲକ୍ଷ୍ମୀନାରାୟଣ ମାଟ୍ରିକ ପରୀକ୍ଷା ଦେଲେ । ଏତେ ଯତ୍ନ ସତ୍ତ୍ୱେ ସେହି ଗଣିତ ହିଁ କାଳ ହେଲା । ସେ ଫେଲ ହୋଇଗଲେ ।

ଏହା ତାଙ୍କ ପାଇଁ ଏବଂ ତାଙ୍କ ପରିବାର ପାଇଁ ଏକ ଶକ୍ତ ଧକ୍କା ଥିଲା । ଯେଉଁମାନେ ସାହାଯ୍ୟ ସହଯୋଗ କରୁଥିଲେ, ସେମାନେ ବିମୁଖ ହେଲେ । ଦାଦା, ବଂଶୀଧର, ଯିଏ ଚାରିବର୍ଷ କାଳ ମାସିକ ପାଞ୍ଚଟଙ୍କା ସାହାଯ୍ୟ କରି ଆସୁଥିଲେ, ସେ ସପ୍ଲିମେଣ୍ଟାରୀ ପରୀକ୍ଷା ଫିସ୍ ଦେବେ ନାହିଁ ବୋଲି ସ୍ପଷ୍ଟ ମନା କରିଦେଲେ ।

ଶେଷରେ ସାନବାବା ଭାସ୍କରବାବୁ ଓ ମା ମହୁଡ଼ମଣିଙ୍କ ଅନୁରୋଧ କ୍ରମେ ପିଉସା ରମାକାନ୍ତ ବାବୁ ପଚିଶ ଟଙ୍କା ଦେଇଥିଲେ । ପରେ ଜଣାପଡ଼ିଲା, ଏହି ପଚିଶ ଟଙ୍କା ବଦଳରେ ଭାସ୍କରବାବୁଙ୍କୁ ପୁସୁଲେଇ ସେ କିଛି ସଡ଼କ ପାଖ ଜମି ହାତେଇ ନେଇଥିଲେ । ଚାକିରି କରିବା ପରେ ଲକ୍ଷ୍ମୀନାରାୟଣ ସେହି ଟଙ୍କା ସୁଧ ସହ ପରିଶୋଧ କରି ମଧ ସେ ଜମି ଫେରସ୍ତ ପାଇ ପାରିଲେ ନାହିଁ ।

ଯାହା ହେଉ, ପିଉସାଙ୍କର ଏହି ଉଦ୍ଦେଶ୍ୟମୂଳକ ସାହାଯ୍ୟ ଯୋଗୁ ସେତେବେଳେ ସେ ମାଟ୍ରିକ୍ ସପ୍ଲିମେଣ୍ଟାରୀ ପରୀକ୍ଷା ଦେଇ ପାରିଲେ ।

ସପ୍ଲିମେଣ୍ଟାରୀ ପରୀକ୍ଷା କଟକରେ । ସେତେବେଳକୁ ସାନ ଭଉଣୀ ପାତିର (ପ୍ରମିଳା) ବାହାଘର ସରିଥାଏ, ନଣ ସେପଟ ସାହାପୁର ଗାଁରେ । ଭିଣୋଇ ବିନୋଦ ବାବୁଙ୍କର ଜଣେ ବନ୍ଧୁ କୁଆଁସ ଗ୍ରାମର ଅନାଦି ଚରଣ ରାୟ । ସେ କଟକରେ ପୋଲିସ୍ ବିଭାଗର କିରାଣି ଥିଲେ । ବିନୋଦବାବୁଙ୍କ ଅନୁରୋଧ କ୍ରମେ ଲକ୍ଷ୍ମୀନାରାୟଣ ତାଙ୍କରି ମେସ୍‌ରେ ରହି ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ସପ୍ଲିମେଣ୍ଟାରୀ ପରୀକ୍ଷା ଦେଲେ । ରହିବା ଓ ଖାଇବା ଖର୍ଚ୍ଚ ଲାଗିଲା ନାହିଁ ।

୧୯୩୭ ମସିହା ଅଗଷ୍ଟ ମାସରେ ପରୀକ୍ଷା ଫଳ ବାହାରିଲା । ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ନିଜେ ଅନୁଭବ କରିଥିଲେ ଯେ, ସପ୍ଲିମେଣ୍ଟାରୀ ପରୀକ୍ଷାରେ ତାଙ୍କୁ ଆଗପରି ଅତ୍ୟଧିକ ପରିଶ୍ରମ କରିବାକୁ ପଡ଼ିନାହିଁ ଏବଂ ଏକକାଳୀନ ଏତେଜଣ ଶିକ୍ଷକଙ୍କ ତରଫରୁ ତାଙ୍କ ଉପରେ ମାନସିକ ଚାପ ପଡ଼ିନାହିଁ । ଖୋଲାମନରେ ଓ ଅଳ୍ପ ପରିଶ୍ରମରେ ସେ କୃତିତ୍ୱର ସହ ପାଶ୍ କଲେ ।

ସେତେବେଳେ ଜଗନ୍ନାଥପୁର ଗାଁରେ ଧୁମ୍‌ଧାମ୍‌ରେ ଚାଲିଥାଏ ଝୁଲଣଯାତ୍ରା । ଏହି ଯାତ୍ରାର ଆନନ୍ଦକୁ ଲକ୍ଷ୍ମୀନାରାୟଣଙ୍କ ପାଶ୍ ଖବର ଦ୍ୱିଗୁଣ କରିଦେଲା ।

ମାଟ୍ରିକ୍ ପରେ କଲେଜ ମାଟି ମାଡ଼ି ପାରିଲେ ନାହିଁ ଲକ୍ଷ୍ମୀନାରାୟଣ । ସେତେବେଳେ ଭଦ୍ରକରେ କଲେଜ ସ୍ଥାପିତ ହୋଇନଥିଲା । ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବାଲେଶ୍ୱର ସହରରେ ସେତେବେଳର ଏକମାତ୍ର କଲେଜ ଥିଲା - ଫକୀର ମୋହନ କଲେଜ । ଆଜି ଲକ୍ଷ୍ମୀନାରାୟଣଙ୍କ ବାଡ଼ିପଟ ଆମ୍ବ ବଗିଚାରେ 'ଓଡ଼ିଶାର ଶାନ୍ତିନିକେତନ' ଭଦ୍ରକ ମହାବିଦ୍ୟାଳୟ ସମଗ୍ର ରାଜ୍ୟର ଏକ ପ୍ରମୁଖ କଲେଜ ।

ଲକ୍ଷ୍ମୀନାରାୟଣଙ୍କ ପ୍ରକୃତ ଦାଦା, ଯାହାଙ୍କୁ ଲକ୍ଷ୍ମୀ ନାରାୟଣ ସାନବାବା ବୋଲି ଡ଼ାକୁଥିଲେ, ତାଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ଥିଲା । ତେଣୁ ଏହିଠାରେହିଁ ତାଙ୍କ ଛାତ୍ର ଜୀବନର ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ଲକ୍ଷ୍ୟ କରିବାର କଥା, ଦାଦା ଭାସ୍କର ଓ ମାଆ ମହୁଡ଼ମଣିଙ୍କ ଇଚ୍ଛାଶକ୍ତି ବଳରେ ସମସ୍ତ ପ୍ରତିକୂଳ ପରିସ୍ଥିତି ଭିତରେ ଲକ୍ଷ୍ମୀ ନାରାୟଣ ଭଦ୍ରକ ହାଇସ୍କୁଲ ପରି ଏକ ସମ୍ଭ୍ରାନ୍ତ ବିଦ୍ୟାଳୟରୁ ମାଟ୍ରିକ୍ ପାଶ୍ କଲେ ଓ ଏହି ବିଦ୍ୟାଳୟରେ ପାଠ ପଢ଼ିବା ସମୟରେ ତାଙ୍କ ଭିତରେ ସାହିତ୍ୟର ସୂକ୍ଷ୍ମ ଚେତନାଟିଏ ଅଙ୍କୁରିତ ହୋଇ କିଛି ପରିମାଣରେ ବିକଶିତ ହୋଇଛି ମଧ୍ୟ ।

ମାଟ୍ରିକ୍ ପାଶ୍ ଉତ୍ତାରୁ ସେ ଅଳ୍ପ କେତେମାସ କଲିକତାରେ ରହି ଟାଇପ୍ ଓ ସର୍ଟହ୍ୟାଣ୍ଡ ଶିକ୍ଷା କରିଥିଲେ । ତେବେ ଚାକିରି ସମ୍ବନ୍ଧୀୟ ଏହା ଏକ ବୈଷୟିକ ଶିକ୍ଷା ହୋଇଥିବାରୁ ଏହି ସମୟକୁ ଛାତ୍ର ଜୀବନର ପରିସର ଭିତରେ ଗ୍ରହଣ କରାଯିବ ନାହିଁ । ଅବଶ୍ୟ କଲିକତାରେ ସ୍ୱଳ୍ପ ସମୟ ପାଇଁ ଅବସ୍ଥାନ କରିବା ଭିତରେ ସେ କଲେଜ ଷ୍ଟ୍ରୀଟ୍ ବହି ଦୋକାନମାନଙ୍କରେ କିଛି ବଙ୍ଗଳା ପତ୍ରପତ୍ରିକା ଓ ବହି ପଢ଼ିବାର ସୁଯୋଗ ପାଇଛନ୍ତି, ଯାହା ତାଙ୍କ ସାହିତ୍ୟିକ ଜୀବନକୁ ପ୍ରଭାବିତ କରିଛି ।

ସେହିପରି କଲିକତାକୁ ଟାଇପ୍ ଶିକ୍ଷା କରିବାକୁ ଯିବା ପୂର୍ବରୁ ବିଶିଷ୍ଟ ସାହିତ୍ୟିକ ତଥା ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ପରାମର୍ଶ ଓ ଅନୁରୋଧ କ୍ରମେ ସେ ତାଙ୍କ ପିତା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପ୍ରତିଷ୍ଠିତ 'ଡ଼ଗର' ପତ୍ରିକାର କାର୍ଯ୍ୟାଳୟରେ କିଛି ଦିନ କାର୍ଯ୍ୟ କରିବାର ସୁଯୋଗ ପାଇଛନ୍ତି । ସେତେବେଳେ 'ଡ଼ଗର' ଭଦ୍ରକରୁ ବାହାରୁଥିଲା ।

## ଅମୃତ ସ୍ପର୍ଶ

'ଡ଼ଗର' ସହିତ ସମ୍ପୃକ୍ତ ହେବା ଓ ସେହି କ୍ରମରେ କାନ୍ତକବିଙ୍କ ସମ୍ପର୍କରେ ଆସିବା ତାଙ୍କ ଚାକିରିକାଳର କଥା ହୋଇପାରେ । ତେବେ ମାତ୍ର ଦୁଇଟି ଶିକ୍ଷାନୁଷ୍ଠାନ (ବାଗୁରାଇ ମାଇନର ସ୍କୁଲ ଓ ଭଦ୍ରକ ହାଇସ୍କୁଲ) ମଧ୍ୟରେ ସୀମିତ ତାଙ୍କର ଛାତ୍ର ଜୀବନ ଭିତରେ ସେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କପରି କେତେକ ବ୍ୟକ୍ତିବିଶେଷଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ଏହି

ସଂସ୍ପର୍ଶ ପରିବର୍ତ୍ତୀ କାଳରେ ତାଙ୍କ ଜୀବନକୁ, ବିଶେଷ କରି ତାଙ୍କ ସାରସ୍ୱତ ଜୀବନକୁ ଗଭୀରଭାବେ ପ୍ରଭାବିତ କରିଥିଲା ।

ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି, କେତେକ ସାରସ୍ୱତ ସ୍ରଷ୍ଟା, ପୃଷ୍ଠପୋଷକ, ରାଜନେତା, ସମାଜ ସଂସ୍କାରକ, ଆଦର୍ଶ ଶିକ୍ଷକ ଏବଂ ସହପାଠୀ ଛାତ୍ରବନ୍ଧୁ ।

ଏଠାରେ ସେମାନଙ୍କ ମଧ୍ୟରୁ କେତେଜଣଙ୍କ ସମ୍ପର୍କରେ ସାମାନ୍ୟ ଆଲୋକପାତ କରିବା ଅପ୍ରାସଙ୍ଗିକ ହେବ ନାହିଁ ।

## କବିଶେଖର ଚିନ୍ତାମଣି ମହାନ୍ତି

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ସାରଥି ରାଧାନାଥ ଓ ଫକୀର ମୋହନଙ୍କ ସୁଯୋଗ୍ୟ ସାରସ୍ୱତ ଦାୟାଦ ଭାବେ ଚିନ୍ତାମଣି ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କର ବାସସ୍ଥାନ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ଗ୍ରାମ ଜଗନ୍ନାଥପୁରର ପୂର୍ବପ୍ରାନ୍ତରେ, ଅସ୍ତଳ ଗ୍ରାମକୁ ଲାଗି ଅବସ୍ଥିତ । ଚିର ଦାରିଦ୍ର୍ୟ ଏବଂ ବ୍ୟାଧିଗ୍ରସ୍ତ ଏହି ମହାନ ସ୍ରଷ୍ଟା, ଉତ୍କଳ ବାଣୀଭଣ୍ଡାରକୁ ବହୁମତେ ଋଦ୍ଧିମନ୍ତ କରିଥିଲେ । ଜନ୍ମ ୧୮୬୮ରେ, ତିରୋଧାନ ୧୯୪୩ରେ । ଯୁଗଳମଠ, ଟଙ୍କାଗଛ, ରୂପାଚୂଡ଼ି, ତ୍ରିବେଣୀ, ବୁଲାଫକୀର, ଶନିସପ୍ତା ଇତ୍ୟାଦି ଉପନ୍ୟାସ, ଘୁମୁସର, ଶଶୀପ୍ରଭା, ଖୁଦମଲୁଖ, ସାଳନ୍ଦୀ, ପତ୍ରପୁଷ୍ପ, ମେଘାସନ, ବିକ୍ରମାଦିତ୍ୟ ଇତ୍ୟାଦି କାବ୍ୟ ସହିତ, ଅସରନ୍ତି ଅନେକ ଚୂନାଚୂନା କବିତା ଓ କ୍ଷୁଦ୍ରଗଳ୍ପ ତାଙ୍କର ଅମରକୀର୍ତ୍ତି । ଚିନ୍ତାମଣି ଗ୍ରନ୍ଥାବଳୀ (୪ଖଣ୍ଡ-ପୃଥୁଳକାୟ ଗ୍ରନ୍ଥ) ଆଜି ଦୁଷ୍ପ୍ରାପ୍ୟ । କବିବର ରାଧାନାଥ ରାୟ ତାଙ୍କୁ ବିଭିନ୍ନ କ୍ଷେତ୍ରରେ ଭୂୟଶୀ ପ୍ରଶଂସା କରିଛନ୍ତି । କିଛିଦିନ ଶିକ୍ଷକତା କରିବା ପରେ ସେ ଓଡ଼ିଶାର ବିଭିନ୍ନ ରାଜସଭାରେ ରାଜକବି କାର୍ଯ୍ୟକରି ବଡ଼ ଖେମୁଣ୍ଡି ରାଜାଙ୍କ ଠାରୁ କବିବର ଓ ଆନ୍ଧ୍ରରେ କବି ଶେଖର (ସେତେବେଳେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ୍ ପ୍ରଦେଶରେ ଥିଲା । ଅଧୁନା ଆନ୍ଧ୍ରପ୍ରଦେଶ ଗଠିତ ହୋଇନଥିଲା) ଉପାଧିରେ ବିଭୂଷିତ ହୋଇଥିଲେ । ପରିଣତ ବୟସରେ କୁଷ୍ଠରୋଗଗ୍ରସ୍ତ ହେବାଯୋଗୁଁ ସେ ନିଜ ମୂଳଘରଠାରୁ ଅନତିଦୂରରେ କୁଟୀରଟିଏ କରି ସେଇଠି ଶେଷ ପର୍ଯ୍ୟନ୍ତ ସାରସ୍ୱତ ସାଧନାରେ ରତ ଥିଲେ ।

ଲକ୍ଷ୍ମୀନାରାୟଣ ହାଇସ୍କୁଲ ଛାତ୍ର ଥିଲାବେଳେ ସହପାଠୀ ଗୌରଚନ୍ଦ୍ର ମହାପାତ୍ରଙ୍କ ସହିତ ମିଶି 'ରଶ୍ମିରେଖା' ନାମକ ଯେଉଁ ହାତଲେଖା ପତ୍ରିକାଟିଏ ବାହାର କରୁଥିଲେ; ସେଥିରେ କବି ଶେଖରଙ୍କ ସମ୍ପର୍କରେ ଲେଖାମାନ ପ୍ରକାଶ କରୁଥିଲେ । ଏହି ସମୟରେ ସେ ଗୌରଚନ୍ଦ୍ର ଏବଂ ଅନ୍ୟତମ ସହପାଠୀ ଅନନ୍ତ ମହାପାତ୍ରଙ୍କୁ ସାଙ୍ଗରେ ଧରି କବି ଶେଖରଙ୍କ ପାଖକୁ ଯାଇ ଦର୍ଶନ କରିବା ସହିତ ସାହିତ୍ୟ ଆଲୋଚନା କରିଛନ୍ତି ଓ ଆଶୀର୍ବାଦ ନେଇଛନ୍ତି ।

ନିଜର ଅସମ୍ପୂର୍ଣ୍ଣ ଆତ୍ମଜୀବନୀ (ଥକାମନ-ନବପତ୍ର ପତ୍ରିକାରେ ୨୮ଟି ଅନୁଚ୍ଛେଦ ପ୍ରକାଶିତ)ରେ ଲକ୍ଷ୍ମୀନାରାୟଣ କବି ଶେଖରଙ୍କ ସମ୍ପର୍କରେ ସମ୍ପୂର୍ଣ୍ଣ ମୂଲ୍ୟାଙ୍କନ ହୋଇ ପାରିନାହିଁ ବୋଲି ଖେଦ ପ୍ରକାଶ କରିଛନ୍ତି ।

## ଜନକବି ବାଞ୍ଛାନିଧି ମହାନ୍ତି

ମୁଖ୍ୟତଃ ସ୍ୱାଧୀନତା ସଂଗ୍ରାମୀ । ୧୮୯୭ରେ ଭଦ୍ରକରେ ଜନ୍ମ । ବି.ଏ. ପଢ଼ିଲାବେଳେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସଂସ୍ପର୍ଶରେ ଆସି ସାହିତ୍ୟ ଓ ସଙ୍ଗୀତ ପ୍ରତି ଆସକ୍ତ ହୋଇଥିଲେ । ସହପାଠୀ ବୈଷ୍ଣବ ଚରଣ ଦାସ (ମନେ ମନେ ଉପନ୍ୟାସର ଲେଖକ) ଓ କବି ମଞ୍ଜୁଳ କୃଷ୍ଣପ୍ରସାଦ ବସୁଙ୍କ ପ୍ରଭାବ ମଧ୍ୟ ଅନସ୍ୱୀକାର୍ଯ୍ୟ । ମଧୁର କଣ୍ଠରେ ଦେଶାତ୍ମବୋଧ ଗୀତ ଗାନ କରି ସେ ଓଡ଼ିଶାର ଗାଁ ଗଣ୍ଡାରେ ସ୍ୱାଧୀନତା ଆନ୍ଦୋଳନର ମନ୍ତ୍ର ପ୍ରଚାର କରୁଥିଲେ । ପୁଣି ସେ ସବୁ ସଙ୍ଗୀତ ନିଜେ ରଚନା କରୁଥିଲେ । ଜନମାନସରେ ଜନକବି ଭାବରେ ସେ ପରିଚିତ ଥିଲେ । ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ସେ କାରାବରଣ କରିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କର ଅନ୍ତରଙ୍ଗ ସହଯୋଗୀ ଥିଲେ; ମହାତ୍ମାଗାନ୍ଧିଙ୍କ ସଂସ୍ପର୍ଶରେ ଆସିଥିଲେ । ବାଲେଶ୍ୱର ଜିଲ୍ଲାରେ ତତ୍କାଳୀନ କଂଗ୍ରେସର ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର ପାଇଁ ଯାତ୍ରାଦଳମାନଙ୍କ ସହିତ ଗାଁ ଗାଁ ବୁଲି ଗୀତ ଗାଉଥିଲେ ଓ ଓଜସ୍ୱିନୀ ଭାଷଣ ଦେଉଥିଲେ । ତହିଁ ପୂର୍ବରୁ ଭଦ୍ରକ ହାଇସ୍କୁଲରେ କିଛିଦିନ ଶିକ୍ଷକତା କରିଥିଲେ (ଅଳ୍ପଦିନ ପାଇଁ ହେଲେ ବି ଡ. ମହତାବ ତାଙ୍କର ଛାତ୍ର ଥିଲେ) । ଓକିଲାତି ପାଶ୍ କରିଥିଲେ, କିନ୍ତୁ ଓକିଲାତି କରି ପାରି ନଥିଲେ । ବସନ୍ତ ରୋଗରେ ମାତ୍ର ୪୧ବର୍ଷ ବୟସରେ ଅକାଳ ମୃତ୍ୟୁବରଣ କରିଥିଲେ । (୧୯୩୮)

ଏହି ମହାନ ବିପ୍ଳବୀ କବି ଭଦ୍ରକ ହାଇସ୍କୁଲ ସଂଲଗ୍ନ ତାଙ୍କର ଦୋହରା ଘରେ ରହୁଥିବା ସମୟରେ ସହପାଠୀମାନଙ୍କୁ ଧରି ଲକ୍ଷ୍ମୀ ନାରାୟଣ ତାଙ୍କୁ ଦର୍ଶନ କରି ତାଙ୍କ ଆଶୀର୍ବାଦ ଗ୍ରହଣ କରିଛନ୍ତି ।

## ସାହିତ୍ୟ ସାଧକ ଭାଗୀରଥି ମହାପାତ୍ର

୧୮୯୧ ମସିହାରେ ଭଦ୍ରକର ଗରଦପୁର ଗ୍ରାମରେ ଏହି ମହୋଦୟଙ୍କ ଜନ୍ମ । ତାଙ୍କର ଗୋଟିଏ କବିତା ପଢ଼ି ଉତ୍କଳମଣି ଗୋପବନ୍ଧୁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଗୋପବନ୍ଧୁଙ୍କ ଆର୍ଥିକ ସହାୟତାରେ ଭାଗୀରଥି ରେଭେନ୍‌ସା କଲେଜରେ ଦ୍ୱିତୀୟ ବାର୍ଷିକ କଳା ପର୍ଯ୍ୟନ୍ତ ପଢ଼ିଥିଲେ । ଏହି ସମୟରେ ପିତାମାତାଙ୍କ ଦେହାନ୍ତ କାରଣରୁ ପାଠପଢ଼ା ଛାଡ଼ି ପ୍ରାୟ ଅଠର ବର୍ଷକାଳ ଶିକ୍ଷକତା କଲେ ଏବଂ ପରେ କୁଷ୍ଠରୋଗାକ୍ରାନ୍ତ ହେବାରୁ ସ୍ୱଇଚ୍ଛାରେ କାର୍ଯ୍ୟରୁ ଅବ୍ୟାହତି ନେଲେ । ସେତେବେଳକୁ ସେ ଜଣେ ଯଶସ୍ୱୀ କବି, କଥାକାର, ପ୍ରାବନ୍ଧିକ, ନାଟ୍ୟକାର, ସମାଲୋଚକ ଓ ସାମ୍ବାଦିକ । ସାପ୍ତାହିକ "ଉତ୍କଳବାର୍ତ୍ତା" ଓ "ମୁକୁର"ର ସମ୍ପାଦନା କାର୍ଯ୍ୟଭାର କିଛିଦିନ ତାଙ୍କରି ଦ୍ୱାରା ସମ୍ପାଦିତ ହୋଇଥିଲା । ଦଶଖଣ୍ଡ କାବ୍ୟ, ଚାରିଖଣ୍ଡ ଗୀତାଭିନୟ, ଚାରିଖଣ୍ଡ ନାଟକ ଏବଂ ଛଅଖଣ୍ଡ କାହାଣୀ ଗୁଚ୍ଛ ସେ ରଚନା କରିଥିଲେ । ତାଙ୍କର ଅଧିକାଂଶ କୃତି ପୌରାଣିକ ଆଖ୍ୟାୟନ ଉପରେ ଆଧାରିତ ।

ଲକ୍ଷ୍ମୀନାରାୟଣ ଏହି ମହୋଦୟଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆଦୌ ଆସି ପାରି ନଥିଲେ । ଏକାଦଶ ଶ୍ରେଣୀର ଛାତ୍ର ଥିବାବେଳେ ତାଙ୍କର ଏକ ଅମୂଲ୍ୟ କୃତି 'ରତ୍ନକୋଷ ବା ବୃହତ୍ ବିବିଧ ସଂଗ୍ରହ' (ପ୍ରକାଶ-୧୯୩୫) ଗ୍ରନ୍ଥ ପଢ଼ିବାର ସୁଯୋଗ ପାଇଥିଲେ । ଏହି ଗ୍ରନ୍ଥକୁ ଓଡ଼ିଆର ଦ୍ୱିତୀୟ ଏନ୍‌ସାଇକ୍ଲୋପଡ଼ିଆ କୁହାଯାଏ । ଏହି ଗ୍ରନ୍ଥରୁ ସେ ଜାଣି ପାରିଲେ ଯେ ଗ୍ରନ୍ଥକାର ନିଜେ ତାଙ୍କ ଗାଁ ଠାରୁ ମାତ୍ର ଦୁଇ/ତିନି କିଲୋମିଟର ଦୂର ଗରଦପୁର ଗ୍ରାମ ନିବାସୀ । ମାଟ୍ରିକ ପରୀକ୍ଷାର ବ୍ୟସ୍ତତା ଏବଂ ତା ପରେ ଅନ୍ନସଂସ୍ଥାନ ପାଇଁ ଅନ୍ୟତ୍ର ଯିବା କାରଣରୁ ତାଙ୍କୁ ସାକ୍ଷାତ କରି ପାରିନଥିବା ସତ୍ତ୍ୱେ ସେ ଏହି ସ୍ରଷ୍ଟାଙ୍କର ଟିକିନିଖି ଖବର ରଖୁଥିଲେ ଓ ତାଙ୍କ ପ୍ରଣୀତ ପୁସ୍ତକଗୁଡ଼ିକ ସଂଗ୍ରହ କରି ପାଠ କରୁଥିଲେ । ୧୯୪୪ ମସିହା ଅଗଷ୍ଟ ମାସ ଚିତାଲାଗି ଅମାବାସ୍ୟା ଦିନ ଭାଗୀରଥି ମହାପାତ୍ର ପରଲୋକ ଗମନ କଲେ । ସେତେବେଳେ ସମ୍ବଲପୁରରେ ଅବସ୍ଥାନ କରୁଥିବା ଲକ୍ଷ୍ମୀନାରାୟଣ ମହାନ୍ତିଙ୍କୁ ଏ ଖବରଟି ଦାରୁଣ ଆଘାତ ଦେଲା । ଏହି ପ୍ରସଙ୍ଗରେ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀ ଥକାମନରେ ସେ ଲେଖିଛନ୍ତି-

"ଏହି ଦୁଃଖଦ ଖବରଟି ମୋତେ ଦାରୁଣ ଆଘାତ ଦେଲା, ମୋ ଆତ୍ମା ବିଳାପ କଲା, ଯେହେତୁ ଥରେ ହେଲେ ଅମୃତ ପୁରୁଷଙ୍କ ଦର୍ଶନ କରିପାରିଲି ନାହିଁ ।" (ନବପତ୍ର- ୧୯୯୨- ୨ୟ ସଂଖ୍ୟା - ପୃ. ୧୦୩)

## ଶ୍ରୀ ସୋମନାଥ ମହାନ୍ତି

ସେ ଥିଲେ କବି ଶେଖର ଚିନ୍ତାମଣି ମହାନ୍ତିଙ୍କର ଶଳା । ଭିଣୋଇଙ୍କ ସାହିତ୍ୟ ପ୍ରତିଭାର ବିକାଶ ନିମନ୍ତେ ସେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଚିନ୍ତାମଣି ଶିକ୍ଷକତା ପରିତ୍ୟାଗ କରି ବିଭିନ୍ନ ରାଜ ଦରବାରରେ ସାହିତ୍ୟ ଚର୍ଚ୍ଚାରେ ବ୍ୟସ୍ତ ରହୁଥିବା ବେଳେ ସୋମନାଥ ନିଜେ ଘରଦ୍ୱାର ଛାଡ଼ି ଚିନ୍ତାମଣିଙ୍କ ଘର ସମ୍ଭାଳି ଥିଲେ । କବିଶେଖର କୁଷ୍ଠ ରୋଗାକ୍ରାନ୍ତ ହେବା ପରେ ତାଙ୍କର ଯାବତୀୟ ସେବା ଶୁଶ୍ରୁଷା ସାଙ୍ଗକୁ ତାଙ୍କର ଲେଖା ଗୁଡ଼ିକ କିପରି ପ୍ରକାଶିତ, ପ୍ରସାରିତ ହେବ ତାର ବ୍ୟବସ୍ଥା ମଧ୍ୟ କରୁଥିଲେ । ତାଙ୍କରି ପ୍ରଚେଷ୍ଟାରେ କବି ଶେଖରଙ୍କ ଏକମାତ୍ର ପୁତ୍ର ଉପେନ୍ଦ୍ର ପ୍ରସାଦ ପାଠପଢ଼ି ଜଣେ କୃତୀ ଶିକ୍ଷକ ଓ ପ୍ରତିଷ୍ଠିତ ସାହିତ୍ୟିକ ହୋଇ ପାରିଥିଲେ । ସୋମନାଥଙ୍କର ନିଜର ପୁଅ ନଥିଲେ । ଶ୍ରୀନାଥ ନାମରେ ସେ ଜଣକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ଏବଂ ତାଙ୍କୁ ମଧ୍ୟ ସେ କବି ଶେଖର ଚିନ୍ତାମଣି ଓ ତାଙ୍କ ପରିବାରର ଯାବତୀୟ କାର୍ଯ୍ୟରେ ନିୟୋଜିତ କରିଥିଲେ । ସେ ନିଜେ ବହୁପ୍ରସୁ ଲେଖକ ନ ହେଲେ ମଧ୍ୟ ଦୁଇ ତିନି ଖଣ୍ଡ କବିତା ଗ୍ରନ୍ଥ ରଚନା କରିଛନ୍ତି । ତେବେ କବିଶେଖରଙ୍କ ସେବାଶୁଶ୍ରୁଷାରେ ବ୍ୟସ୍ତ ରହିବାରୁ ତାଙ୍କ ନିଜର ସୃଜନଶୀଳତା ମଳିନ ପଡିଯାଇଥିଲା । ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ଭାଷାରେ - "ସୋମନାଥ ଥିଲେ କବିଶେଖର ଚିନ୍ତାମଣିଙ୍କ କାୟା ପଛରେ ଛାୟା । କବିଙ୍କ ଭ୍ରମଣଠାରୁ ଆରମ୍ଭ କରି ପୁସ୍ତକ ପ୍ରକାଶ ପର୍ଯ୍ୟନ୍ତ ସବୁଠି ସୋମନାଥଙ୍କର ପ୍ରଚ୍ଛନ୍ନ ହାତ । ତାଙ୍କ

ବିହୁନେ କବିଙ୍କ ସମୁଜ୍ଜ୍ୱଳ ପ୍ରତିଭାର ବିକାଶ ତଥା ପ୍ରଚାର ଅତି ଦୁର୍ଲ୍ଲଭ ହୋଇ ପଡ଼ିଥାଆନ୍ତା ।" (ନବପତ୍ର - ୧୯୯୦-୩ୟ ସଂଖ୍ୟା, ପୃ-୪୪)

ଲକ୍ଷ୍ମୀ ନାରାୟଣ ଅତି ନିକଟରୁ ସୋମନାଥ ମହାନ୍ତିଙ୍କ ଜୀବନାଦର୍ଶକୁ ଲକ୍ଷ୍ୟ କରି ବିହ୍ୱଳିତ ହୋଇଥିଲେ । ସାହିତ୍ୟ ରଚନା କରିବା ଯେତିକି ମହନୀୟ କାର୍ଯ୍ୟ, ସାହିତ୍ୟକୁ ଭଲ ପାଇବା, କାୟ ମନୋବାକ୍ୟରେ ତାହାର ପୃଷ୍ଟପୋଷକତା କରିବା (ନିଃସ୍ୱାର୍ଥପର ଭାବରେ) ମଧ ସେତିକି ମହନୀୟ କାର୍ଯ୍ୟ । ଏହି ଆଦର୍ଶ ଲକ୍ଷ୍ମୀନାରାୟଣ ସୋମନାଥଙ୍କ ଜୀବନରୁ ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ 'ଜଗନ୍ନାଥ ସାହିତ୍ୟ ସମିତି' ଏବଂ ଲେଖକ ସହଯୋଗ ସମିତି ପରି ଅନୁଷ୍ଠାନମାନ ଗଢ଼ିବାରେ ଏହି ଆଦର୍ଶ ତାଙ୍କୁ ପ୍ରେରଣା ଯୋଗାଇଥିଲା ।

## ଶ୍ରୀ ଛକଡ଼ି ମହାନ୍ତି

ଏହି ମହାଶୟ ଲକ୍ଷ୍ମୀନାରାୟଣଙ୍କ ନିଜ ଗାଁ ଜଗନ୍ନାଥପୁର ନିବାସୀ ଥିଲେ । ଅମିନ ଟ୍ରେନିଂ ନେଇ ମୟୂରଭଂଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ପାଖରେ ବାରିପଦାରେ ଚାକିରି କରିଥିଲେ । ଶୁଣିବାକୁ ମିଳେ ଏକଦା ବାରିପଦା ସହରକୁ ନଦୀ ଦାଉରୁ ରକ୍ଷା କରିବା ପାଇଁ ନଦୀ କୂଳରେ କ୍ରମାଗତ କାଶତଣ୍ଡି ଗଛ ଲଗାଇ ସେ ନଦୀ କୂଳକୁ ବେଶ୍ କିଛି ଦୂର ଘୁଞ୍ଚାଇ ଦେଇଥିଲେ । କାଳକ୍ରମେ ସେ ଓଭରସିଅର୍ ପଦବୀକୁ ଉନ୍ନୀତ ହୋଇଥିଲେ ଓ ମହାରାଜାଙ୍କଠାରୁ ଜଣେ ଇଞ୍ଜିନିୟର୍‌ର ମାନ୍ୟତା ପାଇଥିଲେ ।

ତେବେ ଲକ୍ଷ୍ମୀନାରାୟଣଙ୍କ ପାଠପଢ଼ା ଆରମ୍ଭ ବେଳକୁ ସେ ଚାକିରି ଛାଡ଼ି ଗାଁରେ ବସବାସ କରୁଥିଲେ । ଚାଲିଚଳଣିରେ ସେ ଅତ୍ୟନ୍ତ ସାଦାସିଧା ହେଲେ ବି ମିଜାଜ୍‌ରେ ଭାରି କଡ଼ା ଥିଲେ । ସେ ବାଗୁରାଇ ମଧ ଇଂରାଜୀ ବିଦ୍ୟାଳୟର ସମ୍ପାଦକ ଥିଲେ । ଶିକ୍ଷାର ପ୍ରସାର ପାଇଁ ସେ ଅତ୍ୟନ୍ତ ଆଗ୍ରହୀ ଥିଲେ ।

ଆପଣା ଜୀବନୀରେ ଲକ୍ଷ୍ମୀନାରାୟଣ ତାଙ୍କ ସମ୍ପର୍କରେ ଲେଖିଛନ୍ତି -

-"ଦାଣ୍ଡପିଣ୍ଡାରେ ବସିଥାଆନ୍ତି । ସ୍କୁଲ ଗଲାବେଳେ ଆମକୁ ଡ଼ାକି ପାଠ ପଚାରନ୍ତି । ନ କହିପାରିଲେ ସ୍କୁଲକୁ ଯାଇ ହେଡ୍‌ମାଷ୍ଟର ମଦନ ବାବୁ (ଉଚ୍ଚ ପ୍ରାଥମିକ ସ୍କୁଲ) ଓ ସୁରେନ୍ଦ୍ର ବାବୁ (ମାଇନର ସ୍କୁଲ)ଙ୍କୁ କହି ଆମକୁ ଦଣ୍ଡ ଦିଆନ୍ତି । ତେଣୁ ଆମେ ଗଲାବେଳେ, ଆଗେ ଟିକିଏ ଉଣ୍ଡି କରି ଦେଖିନେଉ, ଦାଣ୍ଡ ପିଣ୍ଡାରେ ବୁଢ଼ା ବସିଛିକି ? ବସିଥିଲେ ଜାନିଆଁରେ ସଡ଼କରେ ନଯାଇ, ଆମେ ବିଲ ଭିତରେ ପଶି ଚାଲିଯାଉଁ । ତଥାପି ସେ ସ୍କୁଲକୁ ଯାଇ ଶ୍ରେଣୀରେ ପିଲାମାନଙ୍କୁ ପାଠ ପଚାରନ୍ତି ଆଉ ସେମାନଙ୍କ ଉପରେ ନଜର ଦେବାକୁ ଶିକ୍ଷକ ମାନଙ୍କୁ କଡ଼ା ନିର୍ଦ୍ଦେଶ ଦିଅନ୍ତି ।" (ଥକାମନ - ନବପତ୍ର ପତ୍ରିକା- ୧୯୯୦, ପ୍ରଥମ ସଂଖ୍ୟା,ପୃ.୩୮)

ଶିକ୍ଷାପାଇଁ ପାଗଳ ଏହି ମଣିଷଟି ସେ କାଳରେ ଉଚ୍ଚ ଶିକ୍ଷା ପାଇଁ ତାଙ୍କ ସାନଭାଇ ମାର୍କଣ୍ଡେୟ ମହାନ୍ତିଙ୍କୁ ବିଲାତ ପଠାଇଥିଲେ । ଓଡ଼ିଶାର ସର୍ବପ୍ରଥମ ଇଞ୍ଜିନିୟର୍ ହୋଇ ସେ

ବିଲାତରୁ ଫେରିଥିଲେ । ତେବେ ସେ ସମୟରେ ଦରିଆ ପାରି ବିଲାତ ଯାତ୍ରାକୁ ନାପସନ୍ଦ କରି ଗାଁ ଲୋକେ ଛକଡ଼ି ମହାନ୍ତିଙ୍କୁ ବାସନ୍ଦ କରିଥିଲେ । ମାର୍କଣ୍ଡେୟ ମଧ୍ୟ ଚାକିରୀ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ସାମିଲ୍ କରିଥିଲେ ଓ ଅଳ୍ପ ଦିନ ମଧ୍ୟରେ ତାଙ୍କର ଦେହାନ୍ତ ହୋଇଥିଲା । ଛକଡ଼ିଙ୍କର ଏକମାତ୍ର ପୁତ୍ର ହରିହର ମହାନ୍ତି ମଧ୍ୟ ଉଚ୍ଚଶିକ୍ଷା ପାଇ ମାଜିଷ୍ଟ୍ରେଟ୍ ହୋଇଥିଲେ । କିନ୍ତୁ ତାଙ୍କର ମଧ୍ୟ ଅଳ୍ପ ବୟସରେ ଦେହାନ୍ତ ହୋଇଯାଇଥିଲା ।

ଭାଇ ଓ ପୁଅର ବିଚ୍ଛେଦରେ ଭାଙ୍ଗି ପଡ଼ିଥିବା ଛକଡ଼ି ଶେଷରେ ଶିକ୍ଷାୟତନ ଗଢ଼ିବାରେ ନିଜକୁ ନିୟୋଜିତ କଲେ । ତାଙ୍କ ଏକନିଷ୍ଠ ଉଦ୍ୟମ ଓ ବାଉଦପୁରର ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସଙ୍କ ପରି କେତେ ଉତ୍ସାହୀ ବ୍ୟକ୍ତିଙ୍କ ସହଯୋଗ ବଳରେ ଭଦ୍ରକ କଲେଜ ପ୍ରତିଷ୍ଠିତ ହେଲା ।

ଏହି ସମୟରେ ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ, (ସଂବିଧାନ ପ୍ରଣୟନ ପୂର୍ବରୁ ମୁଖ୍ୟମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀ ବୋଲାଉଥିଲେ) ଡ଼କ୍ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ଏକ ଗ୍ରାମ୍ୟ ବିଦ୍ୟାଳୟର ସ୍ୱପ୍ନ ଦେଖୁଥିଲେ । ଏଥି ନିମନ୍ତେ ଛକଡ଼ି ମହାନ୍ତି ଜଗନ୍ନାଥପୁର ଗ୍ରାମର ସାଲନ୍ଦୀ କୂଳ ବିରାଟ ଆମ୍ବତୋଟାରେ ଥିବା ନିଜର ସମସ୍ତ ଅଂଶ ଦାନ କରିଲେ । ଧୀରେ ଧୀରେ ଗ୍ରାମବାସୀ ସମସ୍ତଙ୍କ ଜମି ଅଧିକୃତ ହେଲା ଫଳରେ ଆଜି ଗର୍ବର ସହିତ ଭଦ୍ରକ ମହାବିଦ୍ୟାଳୟ ଓଡ଼ିଶାର ଏକ ବିଶିଷ୍ଟ ଶିକ୍ଷାୟତନର ମର୍ଯ୍ୟାଦା ପାଇଛି । କହିବା ବାହୁଲ୍ୟ, ଛକଡ଼ି ମହାନ୍ତି ନିଜର ସମସ୍ତ ସ୍ଥାବର ସମ୍ପତ୍ତି ଏପରିକି ମୃତ୍ୟୁ ପୂର୍ବରୁ ନିଜର ବାସଗୃହ ଏହି ମହାବିଦ୍ୟାଳୟକୁ ଦାନ କରିଥିଲେ । ଏବେ ମହାବିଦ୍ୟାଳୟର ପ୍ରବେଶ ଦ୍ୱାରରେ ଛକଡ଼ି ମହାନ୍ତିଙ୍କର ପ୍ରତିମୂର୍ତ୍ତିଟିଏ ସ୍ଥାପନ କରି ମହାବିଦ୍ୟାଳୟ ତରଫରୁ ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯାଇଛି ।

ଜୀବନକାଳ ଭିତରେ ଛକଡ଼ି ମହାନ୍ତି ଦୁଇଖଣ୍ଡ ବହି ଲେଖିଛନ୍ତି । ଗୋଟିଏ 'ଭାରତୀୟ କଳା' (ମନ୍ଦିର ସ୍ଥାପତ୍ୟ ସମ୍ପର୍କିତ ଜ୍ଞାନକୌଶଳ) ଓ ଅନ୍ୟଟି 'ହତୋପଦେଶ' ।

ଶିକ୍ଷାର ପ୍ରସାର ପାଇଁ ଛକଡ଼ି ମହାନ୍ତିଙ୍କ ଆଗ୍ରହ ଓ ନିଷ୍ଠା ଲକ୍ଷ୍ମୀନାରାୟଣଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଅବସର ପରେ ଲକ୍ଷ୍ମୀନାରାୟଣ ଭଦ୍ରକର ଆଖପାଖ ବିଦ୍ୟାଳୟ ମାନଙ୍କରେ କିଛି ସ୍ଥାୟୀ ଜମା ପ୍ରଦାନ କରି ମେଧାବୃତ୍ତିକୁ ପ୍ରୋତ୍ସାହିତ କରିଥିଲେ ।

## ଡ. ହରେକୃଷ୍ଣ ମହତାବ

ସ୍ୱାଧୀନୋତ୍ତର ଓଡ଼ିଶାର ବିନ୍ଧାଣୀ, ପ୍ରବୀଣ ରାଜନୀତିଜ୍ଞ ଏବଂ ସାହିତ୍ୟିକ ତଥା ଓଡ଼ିଆ ସାହିତ୍ୟର ଅନ୍ୟତମ ପୃଷ୍ଠପୋଷକ ଡ଼କ୍ଟର ହରେକୃଷ୍ଣ ମହତାବଙ୍କର ପରିଚୟ ପ୍ରଦାନ କରିବାର ଆବଶ୍ୟକତା ନାହିଁ । ଶୈଶବରୁ ଲକ୍ଷ୍ମୀନାରାୟଣ ମହତାବଙ୍କ ବ୍ୟକ୍ତିତ୍ୱ ଓ ଆଦର୍ଶରେ ପ୍ରଭାବିତ ହୋଇଥିଲେ । ଶୈଶବର ସ୍ମୃତିଚାରଣ ଅବସରରେ ଲକ୍ଷ୍ମୀନାରାୟଣ, ମହତାବଙ୍କ ପ୍ରଥମ ଦର୍ଶନ ସମ୍ପର୍କରେ ଯାହା ଲେଖିଛନ୍ତି ତାହା ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ।

'ଦିନେ ପାଣିସାରି ବଗିଚା ଉପରକୁ ଉଠୁଛି, ଦେଖିଲି ଜଣେ ଦୀର୍ଘକାୟ ପୁରୁଷ, କଦମ ଚାଲିରେ ବନ୍ତ ଆଡୁ ଧପଡ଼ିଛନ୍ତି । ଷଣ୍ଢମାର୍କା ମରଦ, ଗୋରା ତକତକ, ବଳିଷ୍ଠ ତନୁ । ପରିଧାନ ଖଦଡ଼ ଧୋତି ଓ କାନ୍ଧ ଉପରେ ଚାଦର ଖଣ୍ଡିଏ । ତାଙ୍କର ମୁନିଆ ନଜର ସାମ୍ନାକୁ । ସଡ଼କରେ ଯେ ଦେଖୁଛି ତାହାଙ୍କୁ ଜୁହାରଟାଏ ପକାଉଛି । ସେ ହସିଦେଇ ଚୁମ୍ବକରେ କୁଶଳ ମନାସି ବାଟ କାଟୁଛନ୍ତି ।

ଲାଗେ ଲାଗେ କେତେଥର ତାହାଙ୍କୁ ଏଡ଼େ ସକାଳୁ ଏମିତିକା ପ୍ରାୟ ଧାଇଁବାର ଦେଖି ମୋ ମନରେ କୁତୁହଳ ଉପୁଜିଲା । ଗାଁରେ ଜଣେ ଗୁରୁଜନଙ୍କୁ ତାଙ୍କର ପରିଚୟ ପଚାରିଲି । ସେ ଅବାକ୍ ହୋଇ ପରିହାସ ଛଳରେ ମୋତେ ପଚାରିଲେ- ଏଁ, ତୁ ଏ ଯାଏଁ ମହତାବଙ୍କୁ ଚିହ୍ନି ନାହୁଁ ?

ପଚାରିଲି - ସେ କ'ଣ ରାଜା ନ ମନ୍ତ୍ରୀ ଯେ ମୁଁ ତାହାଙ୍କୁ ଜାଣିବି ?

ହଁ ସେ ପରା ଜଣେ ରାଜା ।

କେଉଁ ରାଇଜର ?

ଆଗରପଡ଼ାର ରାଜା ସେ ।

××× ସବୁଲୋକଙ୍କ ସାଙ୍ଗରେ ସେ ମିଶନ୍ତି, ରାଜା ପ୍ରଜା ଭେଦ କିଛି ମାନନ୍ତି ନାହିଁ । ଯାହାକୁ ଚାହାନ୍ତି ତାହାକୁ ସେ ହାତଟେକି ମନଇଛା ଦେଇଦିଅନ୍ତି । ×××

ଭାରତମାତାକୁ ପରାଧିନତାର ନାଗଫାଶରୁ ମୁକୁଳାଇବା ଲାଗି ସେ ମହାତ୍ମାଗାନ୍ଧୀଙ୍କ ସାଙ୍ଗରେ ମିଶି ଇଂରେଜ ସରକାର ସହିତ, ବୀର ପରି ଲଢୁଛନ୍ତି ଆଉ ଥରକୁ ଥର ଜେଲ୍ ମଧ ଯାଉଛନ୍ତି ।

ସେତିକିବେଳେ ଜନପଦ କବି ବାଞ୍ଛାନିଧି ମହାନ୍ତିଙ୍କ ବନ୍ଧା ଗୀତ "ଧନ୍ୟ ହେ ହରି ମହତା - ଯା ଉଡ଼ାଇ ଦେଲ ଦେଶେ ଗାନ୍ଧି ଛତା" ଚଉଦିଗରେ ବୋଲା ହେଉଥାଏ । ×××

ବାସ୍ତବିକ କର୍ମବୀର ଦେଶ ସେବକ ମହତାବଙ୍କୁ ଖାଲି ଟିକିଏ ଆଖିରେ ଦେଖିବା ପାଇଁ ଗାଁ ଗଣ୍ଡାର ଲୋକେ ପାଗଳ ହୋଇ ଉଦ୍ରକ ଦୌଡୁଥାଆନ୍ତି ।' (ଥକାମନ-ନବପତ୍ର - ୧୯୯୦, ଦ୍ୱିତୀୟ ସଂଖ୍ୟା, ପୃଷ୍ଠା ୬୨-୬୩)

ଲକ୍ଷ୍ମୀନାରାୟଣଙ୍କ ସ୍ୱଲିଖିତ ଉପରୋକ୍ତ ଉଦ୍ଧୃତିରୁ ସ୍ପଷ୍ଟ ଜାଣିହୁଏ ଯେ ସେ ପିଲାଦିନରୁ ଡ. ମହତାବଙ୍କ ପ୍ରତି ଆକୃଷ୍ଟ ଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ୧୯୫୦ ରୁ ୧୯୬୦ ମସିହା ମଧ୍ୟରେ ସେ ଆପଣା ଅନୁବାଦ ସାହିତ୍ୟ ଜରିଆରେ 'ଝଙ୍କାର' ପତ୍ରିକା ଓ ସାହିତ୍ୟିକ ହରେକୃଷ୍ଣ ମହତାବଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଛନ୍ତି । ସେତିକିବେଳକୁ ଜଣେ କଥାଶିଳ୍ପୀ (ଗଳ୍ପ ଓ ଉପନ୍ୟାସ ଲେଖକ) ଭାବେ ଲକ୍ଷ୍ମୀନାରାୟଣ ପ୍ରତିଷ୍ଠା ଅର୍ଜନ କରିସାରିଥିଲେ । ତଥାପି ମହତାବ ବାବୁ ନିଜେ ଲକ୍ଷ୍ମୀନାରାୟଣଙ୍କୁ ଦେଶ ବିଦେଶର ସାହିତ୍ୟର ଟ ନୁସୃଜନ ପାଇଁ ବାରମ୍ବାର ପ୍ରେରଣା ଓ ପରାମର୍ଶ ଦେଇ ଆସୁଥିଲେ । ଏକଥା ଲକ୍ଷ୍ମୀନାରାୟଣ ନିଜେ ସ୍ୱୀକାର କରିଛନ୍ତି ।

ପରିଣାମ ସ୍ୱରୂପ ଲକ୍ଷ୍ମୀ ନାରାୟଣଙ୍କ କଲମରୁ ରାଶି ରାଶି ବିଭିନ୍ନ ବିଦେଶୀ ଭାଷାର ରଚନା ସାହିତ୍ୟ ଅନୁସୃଜିତ ହୋଇ ଆମ ସାହିତ୍ୟକୁ ଋଦ୍ଧିମନ୍ତ କରିଛି ।

## ଗୋକୁଳାନନ୍ଦ ନାୟକ

ଲକ୍ଷ୍ମୀନାରାୟଣ ଭଦ୍ରକ ହାଇସ୍କୁଲରେ ପଢ଼ିବାବେଳେ (୧୯୩୪-୩୭) ଗୋକୁଳାନନ୍ଦ ନାୟକ ଏହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ସେ ପାଟନା ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହ ଇଂରାଜୀ ସାହିତ୍ୟରେ ଏମ୍.ଏ. ପାଶ୍ କରି ବି.ଏଡ୍. କରିଥିଲେ । ସେ ଚାହିଁଥିଲେ, କୌଣସି ପ୍ରତିଷ୍ଠିତ ମହାବିଦ୍ୟାଳୟର ଅଧ୍ୟାପକ ବା ଅଧ୍ୟକ୍ଷ ହୋଇପାରି ଥାଆନ୍ତେ । କିନ୍ତୁ ନିଜ ସହରରେ ଶିକ୍ଷାର ପ୍ରସାର ପାଇଁ ସେ ଶିକ୍ଷକତାକୁ ଗୁରୁତ୍ୱ ଦେଲେ ।

ସ୍ୱଭାବରେ ଅତ୍ୟନ୍ତ ଉଦାର, ସହନଶୀଳ ଏବଂ ସଂସ୍କାରପ୍ରିୟ ଗୋକୁଳାନନ୍ଦ ପ୍ରଶାସନ କ୍ଷେତ୍ରରେ ଅତ୍ୟନ୍ତ ଦକ୍ଷ ଏବଂ କଡ଼ା ଥିଲେ । ବିଦ୍ୟାଳୟରେ ଶୃଙ୍ଖଳା ତାଙ୍କର ପ୍ରଧାନ ଧ୍ୟେୟ ଥିଲା । ତାଙ୍କ ସମୟରେ କେବଳ ଛାତ୍ର ନୁହେଁ, ଶିକ୍ଷକ ମଣ୍ଡଳୀ ମଧ୍ୟ ଅତ୍ୟନ୍ତ ଶୃଙ୍ଖଳିତ ଓ ସମୟାନୁବର୍ତ୍ତୀ ଥିଲେ ।

ଏହିପରି ଜଣେ ଗୁରୁ ଗମ୍ଭୀର, ଶୃଙ୍ଖଳିତ ଜ୍ଞାନୀଗୁରୁଙ୍କ ଠାରୁ ଶିକ୍ଷାଲାଭ କରିଥିବାରୁ ଲକ୍ଷ୍ମୀନାରାୟଣ ନିଜକୁ ଗର୍ବିତ ମନେକରୁଥିଲେ ।

## ଉପେନ୍ଦ୍ର ପ୍ରସାଦ ମହାନ୍ତି

ଉପେନ୍ଦ୍ର ବାବୁ ଥିଲେ ଲକ୍ଷ୍ମୀନାରାୟଣଙ୍କର ସବୁଠାରୁ ପ୍ରିୟ ଶିକ୍ଷକ । ସେତେବେଳେ ଭଦ୍ରକ ହାଇସ୍କୁଲରେ ସେ ଥିଲେ ସହ ପ୍ରଧାନଶିକ୍ଷକ । ଗୋକୁଳାନନ୍ଦ ନାୟକ ଅବସର ନେବା ପରେ ଉପେନ୍ଦ୍ର ପ୍ରସାଦ ପ୍ରଧାନଶିକ୍ଷକ ପଦବୀରେ ଅଧିଷ୍ଠିତ ହୋଇଥିଲେ । ଅବଶ୍ୟ ସେତେବେଳେ ଲକ୍ଷ୍ମୀନାରାୟଣ ଆଉ ଛାତ୍ର ନଥିଲେ ।

ଉପେନ୍ଦ୍ର ପ୍ରସାଦଙ୍କର ଅନ୍ୟତମ ପରିଚୟ ହେଲା - ସେ କବିଶେଖର ଚିନ୍ତାମଣି ମହାନ୍ତିଙ୍କର ଏକମାତ୍ର ପୁତ୍ର । ଏକାନ୍ତ ପିତୃବତ୍ସଳ । ସେ ନିଜେ ମଧ୍ୟ ଜଣେ କବି ଓ ଲେଖକ ଥିଲେ । ତାଙ୍କର ୧୫ଖଣ୍ଡ ପୁସ୍ତକ (ଗଳ୍ପ ସଂକଳନ ଓ କାବ୍ୟ କବିତା) ପ୍ରକାଶିତ । 'ଦିଲ୍ଲୀପ' କାବ୍ୟ ପାଇଁ ୧୯୬୦ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ । ସଂଯୋଗ କ୍ରମେ ସେହି ବର୍ଷ ସେ ଶ୍ରେଷ୍ଠ ପ୍ରଧାନଶିକ୍ଷକ ଭାବେ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କଠାରୁ ପୁରସ୍କାର ଗ୍ରହଣ କରିଥିଲେ ।

ସ୍ୱାଭାବିକ ଭାବେ ପିଲାଟି ଦିନରୁ ସାହିତ୍ୟ ପ୍ରତି ଆଗ୍ରହୀ ଲକ୍ଷ୍ମୀନାରାୟଣ (ଜଣେ ପ୍ରଥିତ ଯଶା କବିଙ୍କର ପୁଅ ହିସାବରେ ହେଉ ବା ଉପେନ୍ଦ୍ର ପ୍ରସାଦ ନିଜେ ଜଣେ କବି ହୋଇଥିବା କାରଣରୁ ହେଉ) ଉପେନ୍ଦ୍ର ପ୍ରସାଦଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ଇଂରାଜୀ, ଓଡ଼ିଆ ସାହିତ୍ୟ

ଏବଂ ଇତିହାସ ପଢ଼ାଇବାରେ ତାଙ୍କର ଅସମ୍ଭବ ଦକ୍ଷତା ଥିଲା । ତାଙ୍କ ଦ୍ୱାରା ପ୍ରଣୀତ ଇତିହାସ ଓ ସମାଜବିଜ୍ଞାନ ପୁସ୍ତକ ମଧ୍ୟ ଏକ ସମୟରେ ମାଟ୍ରିକ ଶ୍ରେଣୀର ପାଠ୍ୟ ପୁସ୍ତକ ଥିଲା ।

ଲକ୍ଷ୍ମୀନାରାୟଣଙ୍କୁ ଉପେନ୍ଦ୍ର ପ୍ରସାଦଙ୍କର ଯେଉଁ ଗୁଣଟି ସବୁଠାରୁ ବେଶି ପ୍ରଭାବିତ କରିଥିଲା, ତାହା ହେଲା ତାଙ୍କର ପିତୃଭକ୍ତି । ଲକ୍ଷ୍ମୀନାରାୟଣ ଛାତ୍ରାବସ୍ଥାରେ ଥରେ ସହପାଠୀ ଗୌର ମହାପାତ୍ର ଓ ଅନନ୍ତ ମହାପାତ୍ରଙ୍କୁ ସାଙ୍ଗରେ ଧରି କବି ଶେଖର ଚିନ୍ତାମଣିଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ଦର୍ଶନାନ୍ତେ ଫାଟକ ପାଖରେ ଭେଟ ହୁଏ ଉପେନ୍ଦ୍ର ପ୍ରସାଦଙ୍କ ସହିତ । ଏହି ପ୍ରସଙ୍ଗରେ ଲକ୍ଷ୍ମୀନାରାୟଣ ନିଜେ ଯାହା ଲେଖିଛନ୍ତି ତାହା ଏଠାରେ ଉପସ୍ଥାପନ କରାଗଲା ।

-"ଚୋର ଯେଉଁଠି, ପୋଲିସ୍ ସେଇଠି । ଫାଟକ ପାଖରେ ଗୁରୁଦେବ ଉପେନ୍ଦ୍ର ପ୍ରସାଦଙ୍କୁ ଭେଟିଲୁ । ସେ ଧପାଳି ଆସୁଥିଲେ ସ୍କୁଲରୁ । ଆମ ଉପରେ ନଜର ପଡ଼ିଲାକ୍ଷଣି ପଚାରିଲେ - କୁଆଡ଼େ ଆସିଥିଲ ଏଣେ, ଅବେଳରେ ?"

ସଭିଏଁ ତାଙ୍କର ରୁଦ୍ର ମୂର୍ତ୍ତି ଦେଖି ଡ଼ରିଗଲୁଣି । ଆମ ଭିତରୁ ଗୌରଭାଇ ହେମତ କରି କହିଲା - "କବିଶେଖରଙ୍କୁ ଦର୍ଶନ କରିବାକୁ ଆସିଥିଲୁ ।"

ତହୁଁ ଗୁରୁଦେବ ଆମକୁ ସତର୍କ କରିଦେଲେ - "ଏମିତି ଯେତେବେଳେ ପାରେ ସେତେବେଳେ ଆସିବ ନାହିଁ । ତାଙ୍କର ଭାବନା, ଚିନ୍ତା, ଲେଖାଲେଖିରେ ବାଧା ଘଟିବ, ସାକ୍ଷାତ ସମୟ ଅଛି, ହେଉ; ଯାଅ ।" (ଥକାମନ-ନବପତ୍ର, ୧୯୯୦, ଦ୍ୱିତୀୟ ସଂଖ୍ୟା, ପୃ.୪୨)

ଏହି ଉକ୍ତିରୁ ସ୍ପଷ୍ଟ ଜାଣିହୁଏ, ରୋଗକ୍ଲିଷ୍ଟ ପିତା କବି ଶେଖରଙ୍କ ସେବାଶୁଶ୍ରୁଷା ସହିତ ତାଙ୍କ ସାରସ୍ୱତ ସାଧନା ଦିଗ ପ୍ରତି ମଧ୍ୟ ଉପେନ୍ଦ୍ର ପ୍ରସାଦ କେତେ ସଚେତନ ଥିଲେ । ୧୯୬୫ ମସିହାରେ ସେ ପିତାଙ୍କ ଉଦ୍ଦେଶ୍ୟରେ 'କବିଶେଖର ଚିନ୍ତାମଣି ସ୍ମୃତି ମନ୍ଦିର' ଘର ସମ୍ମୁଖସ୍ଥ ପରିସରରେ ତୋଳାଇ ଥିଲେ ।

ଉପେନ୍ଦ୍ର ପ୍ରସାଦ ନିଜ ବାସଭବନର ନାମ ରଖିଥିଲେ 'ବାଣୀ ସାହିତ୍ୟ ମନ୍ଦିର' ।

ଗୁରୁ - ଶିଷ୍ୟର ସମ୍ପର୍କ ସତ୍ତ୍ୱେ, ଜଣେ ବିଶିଷ୍ଟ ସାହିତ୍ୟିକ ହିସାବରେ ଲକ୍ଷ୍ମୀନାରାୟଣ ଉପେନ୍ଦ୍ର ପ୍ରସାଦଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ ।

ନିଜେ ଲକ୍ଷ୍ମୀନାରାୟଣ ୧୯୭୮ ମସିହାରେ ଅବସର ନେଲାବେଳକୁ ଉପେନ୍ଦ୍ର ପ୍ରସାଦଙ୍କୁ ୭୯ବର୍ଷ ବୟସ । ଲକ୍ଷ୍ମୀନାରାୟଣଙ୍କ ପ୍ରଚେଷ୍ଟାରେ ଡ. ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଗଠିତ ହୋଇଥିଲା 'ଉପେନ୍ଦ୍ର ପ୍ରସାଦ ଅଶିତିତମ ଜୟନ୍ତୀ କମିଟି ।' ସ୍ମରଣିକା ସମ୍ପାଦନାଠାରୁ ସମ୍ବର୍ଦ୍ଧନା ଓ ସଭାକାର୍ଯ୍ୟ ପର୍ଯ୍ୟନ୍ତ ପ୍ରତିଟି କାର୍ଯ୍ୟଭାର ଗ୍ରହଣ କରି ଅତି ନିଷ୍ଠାର ସହିତ ଲକ୍ଷ୍ମୀନାରାୟଣ ସେ ସବୁ ସମ୍ପାଦନ କରିଥିଲେ ।

ଲକ୍ଷ୍ମୀନାରାୟଣଙ୍କର ଏତାଦୃଶ ଗୁରୁଭକ୍ତି ଏବଂ ସାହିତ୍ୟାନୁରକ୍ତି କ୍ୱଚିତ୍ ବ୍ୟକ୍ତିବିଶେଷଙ୍କଠାରେ ଦେଖିବାକୁ ମିଳେ । କେବଳ ଗୁରୁ ଓ ଗୁରୁଜନ ମାନଙ୍କ ବ୍ୟତୀତ କେତେକ ସହପାଠୀ ବନ୍ଧୁଙ୍କର ସାନ୍ନିଧ୍ୟ ମଧ୍ୟ ତାଙ୍କ ଜୀବନକୁ ପ୍ରଭାବିତ କରିଥିଲା ।

## ନିତ୍ୟାନନ୍ଦ ମହାପାତ୍ର

ଭଦ୍ରକର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଏବଂ ଆଧୁନିକ କଥାସାହିତ୍ୟର ଅନ୍ୟତମ ଯଶସ୍ୱୀ ସ୍ରଷ୍ଟା ନିତ୍ୟାନନ୍ଦ ମହାପାତ୍ରଙ୍କର ପରିଚୟ ଅନାବଶ୍ୟକ ।

ନିତ୍ୟାନନ୍ଦ କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଯୋଗ୍ୟତମ ଜ୍ୟେଷ୍ଠପୁତ୍ର । ଲକ୍ଷ୍ମୀନାରାୟଣଙ୍କଠୁ ବୟସରେ ବଡ଼ । ତାଙ୍କର ସାନଭାଇ ଗୌରଚନ୍ଦ୍ର ଲକ୍ଷ୍ମୀନାରାୟଣଙ୍କ ସହପାଠୀ । ସେହି ସୂତ୍ରରେ ସମ୍ପର୍କ । ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟ ପ୍ରୀତି ନିତ୍ୟାନନ୍ଦଙ୍କୁ ମୁଗ୍ଧ କରିଥିଲା । ଲକ୍ଷ୍ମୀନାରାୟଣ ମଧ୍ୟ ଏକ ସାରସ୍ୱତ ପରିବାର ସହିତ ସମ୍ପର୍କ ବାନ୍ଧି ନିଜକୁ ଧନ୍ୟ ମଣୁଥିଲେ ଓ କାନ୍ତକବିଙ୍କୁ ଯେତିକି ଭକ୍ତି କରୁଥିଲେ ନିତୁଭାଇ (ନିତ୍ୟାନନ୍ଦ)ଙ୍କୁ ସେତିକି ସମ୍ମାନ କରୁଥିଲେ ।

୧୯୩୭ମସିହାରେ ଲକ୍ଷ୍ମୀନାରାୟଣ ମାଟ୍ରିକ୍ ପାଶ୍ କଲାବେଳକୁ, ଲକ୍ଷ୍ମୀକାନ୍ତ ନିଜେ ପ୍ରତିଷ୍ଠା କରିଥିବା 'ଡ଼ଗର ପ୍ରେସ୍'ର ତଦାରଖ କାମ ନିତ୍ୟାନନ୍ଦ ଆରମ୍ଭ କରିଥିଲେ । ଯେହେତୁ ଲକ୍ଷ୍ମୀନାରାୟଣ ଆର୍ଥିକ ଦୃଷ୍ଟିରୁ ଆଗକୁ ପଢ଼ିବା ସମ୍ଭବ ନଥିଲା ଏବଂ ଚାକିରି ଖଣ୍ଡିଏ ଦରକାର କରୁଥିଲେ, ତେଣୁ ନିତ୍ୟାନନ୍ଦଙ୍କ ପରାମର୍ଶ କ୍ରମେ ସେ କିଛିଦିନ ଭଦ୍ରକସ୍ଥ 'ଡ଼ଗର ପ୍ରେସ'ରେ କାମ କରିଛନ୍ତି । ଅବଶ୍ୟ ଏକ ସ୍ଥାୟୀ ଚାକିରି ପାଇବା ଆଶାରେ ଅଳ୍ପଦିନ ପରେ ସେ ଟାଇପ୍ ଓ ସର୍ଟ ହାଣ୍ଡ୍ ଶିଖିବା ପାଇଁ କଲିକତା ଚାଲିଗଲେ ।

କଟକରେ ଲେଖକ ସହଯୋଗ ସମିତି ଗଢ଼ି ଉଦୟ ପତ୍ରିକା ସମ୍ପାଦନା କରୁଥିବା ବେଳେ ନିତ୍ୟାନନ୍ଦ ମହାପାତ୍ର ତାଙ୍କୁ ବହୁମତେ ସହଯୋଗ କରିଥିଲେ ।

## ଗୌରଚନ୍ଦ୍ର ମହାପାତ୍ର

ଏ ମହାଶୟ କାନ୍ତକବିଙ୍କର ସୁଯୋଗ୍ୟ କନିଷ୍ଠ ପୁତ୍ର, ନିତ୍ୟାନନ୍ଦ ମହାପାତ୍ରଙ୍କ ସାନଭାଇ ଓ ଲକ୍ଷ୍ମୀ ନାରାୟଣଙ୍କ ସହପାଠୀ । ପିଲାଟି ଦିନରୁ ସାହିତ୍ୟ ସଂସ୍କୃତି ଅନୁରାଗୀ । କାନ୍ତକବି ଓ ନିତ୍ୟାନନ୍ଦଙ୍କ ସହ ପରିଚିତ ହେବା ଓ ସମ୍ପର୍କ ସ୍ଥାପନରେ ଗୌରଚନ୍ଦ୍ର ହିଁ ମାଧ୍ୟମ ଥିଲେ । ପୁନଶ୍ଚ ଲକ୍ଷ୍ମୀନାରାୟଣ ଓ ଗୌରଚନ୍ଦ୍ର ଏ ଦୁହିଁଙ୍କ ମଧ୍ୟରେ ବନ୍ଧୁତା ହେବାର ମାଧ୍ୟମ ହେଲା -ସାହିତ୍ୟ ।

---

* ତାଙ୍କ ଦ୍ୱାରା ସମ୍ପାଦିତ 'ଉପେନ୍ଦ୍ର ପ୍ରସାଦ ଜୀବନ ଓ ସାହିତ୍ୟ ସ୍ମରଣିକା'ରେ ଡ. ହରେକୃଷ୍ଣ ମହତାବ (ଉପେନ୍ଦ୍ରଙ୍କ ସହପାଠୀ), ନିତ୍ୟାନନ୍ଦ ମହାପାତ୍ର, ଶତ୍ରୁଘ୍ନ ନାଥ (ଉଭୟେ ଉପେନ୍ଦ୍ରଙ୍କ ଛାତ୍ର), ଗାଳ୍ପିକ ବିଭୂତି ତ୍ରିପାଠୀ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଡ଼ଃ. ମନୀନ୍ଦ୍ର ମହାନ୍ତି (ଛାତ୍ର), ସ୍ୱର୍ଗତ କ୍ଷେତ୍ରବାସୀ ନାୟକ (ଛାତ୍ର), ଗୌରଚନ୍ଦ୍ର ମହାପାତ୍ର (ଛାତ୍ର), ଡ଼ଃ. କୃଷ୍ଣ ବେହେରା, ଗୌର ଗୋପାଳ ଜେନା (ସହକର୍ମୀ), ଅଧ୍ୟାପକ ସୁଧାଂଶୁ ଶେଖର ରାୟ, ପ୍ରମୁଖ ବିଶିଷ୍ଟ ସାହିତ୍ୟିକ ମାନେ ଅଂଶ ଗ୍ରହଣ କରିଥିଲେ । କେବଳ ଲକ୍ଷ୍ମୀନାରାୟଣଙ୍କ ପ୍ରଚେଷ୍ଟା ଦ୍ୱାରା ହିଁ ଏପରି ଏକ ସର୍ବାଙ୍ଗସୁନ୍ଦର ସ୍ମରଣିକା ସାଙ୍ଗକୁ ଏକ ଭବ୍ୟ ସମ୍ବର୍ଦ୍ଧନା ଉତ୍ସବ ସମ୍ଭବ ହୋଇପାରିଥିଲା ।

ଦୁହେଁ ମିଶି ଛାତ୍ର ଅବସ୍ଥାରେ ଆରମ୍ଭ କରିଥିଲେ 'ରଶ୍ମିରେଖା' ନାମକ ହାତଲେଖା ପତ୍ରିକା । ଦୁହେଁ ସାଙ୍ଗ ହୋଇ କବିଶେଖର ଚିନ୍ତାମଣି ଓ ଜନକବି 'ବାଞ୍ଛାନିଧି'ଙ୍କ ପରି ମହାନ୍ ସ୍ରଷ୍ଟାମାନଙ୍କୁ ସାକ୍ଷାତ ଦର୍ଶନ କରୁଥିଲେ, ସାହିତ୍ୟ ଆଲୋଚନା କରୁଥିଲେ । ମାଟ୍ରିକ୍ ପାଶ୍ ପରେ ଲକ୍ଷ୍ମୀନାରାୟଣ ଚାକିରି କଲେ ଓ ଗୌରଚନ୍ଦ୍ର ଆଗକୁ ପଢ଼ିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଗୌରଚନ୍ଦ୍ର ସ୍ୱାଧୀନତା ସଂଗ୍ରାମରେ ସାମିଲ୍ ହେଲେ, ଜେଲ୍ ଗଲେ ଏବଂ ଜେଲ୍‌ରୁ ମୁକୁଳି ସମାଜ ସଂସ୍କାର କାମରେ ଲାଗିଗଲେ ।

ଆଜି ମଧ୍ୟ ଗୌରଚନ୍ଦ୍ର ବାର୍ଦ୍ଧକ୍ୟକ୍ଲିଷ୍ଟ ରୁଗ୍‌ଣ ଶରୀରରେ ଲେଖାଲେଖି ଛାଡ଼ି ନାହାନ୍ତି କି ସମାଜ ସେବା ଛାଡ଼ି ନାହାନ୍ତି । ତାଙ୍କ ରଚିତ 'ଶାସନର ଚକତଳେ', 'ଆମ ଗାଁ' ଏବଂ ଆତ୍ମଜୀବନୀ ଗ୍ରନ୍ଥ - 'ଯେତିକି ମନେପଡ଼େ' କେତୋଟି ସାହିତ୍ୟ କୃତି ।

## ରଘୁନାଥ ପଣ୍ଡା

ଓଡ଼ିଶାର ପୁରପଲ୍ଲୀରେ ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ବା ରଘୁ ପଣ୍ଡା ଏକ ସୁପରିଚିତ ନାମ । ଓଡ଼ିଆ ଯାତ୍ରାର କ୍ରମବିକାଶରେ ରଘୁ ପଣ୍ଡାଙ୍କ ଅବଦାନ ଅତୁଳନୀୟ ।

ଏହି ରଘୁ ପଣ୍ଡା ଥିଲେ ଭଦ୍ରକ ହାଇସ୍କୁଲରେ ଲକ୍ଷ୍ମୀନାରାୟଣଙ୍କ ସହପାଠୀ । ମାତ୍ର ଛଅ ବର୍ଷ ବୟସରେ ବାପାଙ୍କୁ ହରାଇଥିବା ରଘୁନାଥ ପଣ୍ଡା ଭଦ୍ରକ ହାଇସ୍କୁଲ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥିଲେ । ଭଦ୍ରକ ଆରଡ଼ି (ଆଖଣ୍ଡଳମଣି) ରାସ୍ତା କଡ଼ ଅର୍ଣ୍ଣପାଳ ବଜାର, ସେଇଠି ପାଖ ଗଞ୍ଜାମାଳ ଗାଁରେ ରଘୁ ପଣ୍ଡାଙ୍କ ଘର । ପିଲାବେଳେ ସେ ଭାରି ଲାଜକୁଳା ଥିଲେ। କାହାରି ସହିତ ସହଜରେ ମିଶୁ ନଥିଲେ । ଲକ୍ଷ୍ମୀନାରାୟଣ ଉପରେ ପଡ଼ି ତା ସହିତ ମିଶୁଥିଲେ । ନବମ ଶ୍ରେଣୀରୁ ରଘୁନାଥ ହଠାତ୍ ଆଉ ସ୍କୁଲ ଆସିଲେ ନାହିଁ । ଅନ୍ୟତମ ସାଥୀ ହରମୋହନ ଠାରୁ ଖବର ପାଇଲେ "ଅର୍ଥାଭାବ ଯୋଗୁ ରଘୁନାଥ ପାଠପଢ଼ାରେ ଡ଼ୋର ବାନ୍ଧିଦେଇ ଯାତ୍ରାଦଳରେ ଯୋଗଦେଇଛି । ସେଥିକୁ ତାହାର ବଡ଼ ଆଗ୍ରହ ।" ସେତେବେଳେ ଲକ୍ଷ୍ମୀନାରାୟଣ ମନେପକାଇଲେ ଏହି ଲାଜକୁଳା ପିଲାଟି ଅନ୍ୟମନସ୍କ ଭାବରେ ଶ୍ରେଣୀର ପଛ ବେଞ୍ଚରେ ବସି ଅନବରତ କ'ଣ ସବୁ ଭାବୁଥାଏ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ରଘୁ ନିଶ୍ଚୟ ଦିନେ ବଡ଼ କଳାକାର ହୋଇ ଯଶ ଅର୍ଜିବେ ।

୧୯୩୪ ମସିହାରେ ରଘୁ ପଣ୍ଡା ନିଜସ୍ୱ ଯାତ୍ରା ଦଳ ଗଢ଼ିଲେ ଅସୁରାଳିରେ । ଜୀବନକାଳ ଭିତରେ ସେ ଢ଼େର୍ କଳାକାର ଉତାରିଛନ୍ତି । ନିଜେ କବିଚନ୍ଦ୍ର କାଳିଚରଣ ଓ କବି ମଞ୍ଜୁଳ କୃଷ୍ଣ ପ୍ରସାଦଙ୍କ ପାଖରୁ ତାଲିମ୍ ନେଇଛନ୍ତି । "ନିମାଇଁ ସନ୍ନ୍ୟାସ" ନାମରେ ତାଙ୍କର ପ୍ରଥମ ଛୋଟ ନାଟକ, ପରେ 'ଶକୁନ୍ତଳା' ପୂର୍ଣ୍ଣାଙ୍ଗ ନାଟକ ରଚନା କରି ପ୍ରଶଂସିତ ହେବା ପରେ ପଚାଶରୁ ଉର୍ଦ୍ଧ୍ୱ ପୌରାଣିକ, ଐତିହାସିକ, କାଳ୍ପନିକ ଓ ସାମାଜିକ ନାଟକ ରଚନା କରି ସେ ଅଜସ୍ର ନାମ କମାଇଛନ୍ତି । "ଦୁଃଖ ନଦୀର ତୀରେ" ତାଙ୍କର ପ୍ରଥମ ସାମାଜିକ ନାଟକ । ଏହି ନାଟକରେ

ରାଜା ରାଜୁଡ଼ାଙ୍କୁ ବାଦ୍ ଦେଇ ପ୍ରଚଳିତ ସାମାଜିକ ଚରିତ୍ର ମାନଙ୍କୁ ନେଇ ସେ ମୁକ୍ତ ମଞ୍ଚରେ ପରୀକ୍ଷା କରିଥିଲେ ଯାହା ଅଭୂତପୂର୍ବ ସଫଳତା ହାସଲ କରିଥିଲା । ତା' ପରଠାରୁ ଆଜିଯାଏ ଯାତ୍ରାମଞ୍ଚରେ ଆଉ ରାଜାରାଣୀଙ୍କ ନାଟକ ମଞ୍ଚସ୍ଥ ହେଉନାହିଁ । ଓଡ଼ିଆ ଯାତ୍ରାରେ ନାରୀ ଭୂମିକାରେ ନାରୀ ମାନଙ୍କୁ ଅଭିନୟ କରାଇବାର ପ୍ରଥମ ଉଦ୍ୟମ ତାଙ୍କରି ଠାରୁ ଆରମ୍ଭ ହୋଇଥିଲା ।

ଲକ୍ଷ୍ମୀନାରାୟଣଙ୍କର ରଘୁ ପଣ୍ଡାଙ୍କ ସହ ଭାବଗତ ସମ୍ପର୍କ ଥିଲା । ଛାତ୍ର ଅବସ୍ଥାରେ ଲକ୍ଷ୍ମୀନାରାୟଣ ଅସ୍ତର ଗ୍ରାମରେ ରଘୁପଣ୍ଡାଙ୍କ ନାଟକ 'ବିଲ୍ୱମଙ୍ଗଳ' ପ୍ରଥମ କରି ଦେଖନ୍ତି । ନାଟକ ପରେ ସାକ୍ଷାତ କରିବାବେଳେ ରଘୁପଣ୍ଡା ତାଙ୍କୁ କୁଣ୍ଢାଇ ପକାଇ ଅନ୍ୟମାନଙ୍କ ସହ ପରିଚୟ କରାଇ ଦିଅନ୍ତି - "ଏ ଜଣେ ବଡ଼ ଲେଖକ ହେବ ଆମ ରାଇଜରେ ।"

ରଘୁ ପଣ୍ଡା ଜଗନ୍ନାଥପୁରକୁ ବହୁବାର ଝୁଲଣ ପୂର୍ଣ୍ଣିମାରେ ଯାତ୍ରା କରିବାପାଇଁ ଆସୁଥିଲେ ।*

୧୯୭୮ ମସିହାରେ ଅବସର ନେଇ ଲକ୍ଷ୍ମୀନାରାୟଣ ଗାଁରେ ଅବସ୍ଥାନ କରିବା ପରେ ରଘୁ ପଣ୍ଡା ତାଙ୍କୁ ଭେଟିବାକୁ ଆସିଥିଲେ । ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟିକ ଜୀବନର ଆକୁଣ୍ଠ ପ୍ରଶଂସା କରିଥିଲେ । ସେତେବେଳେ (୧୯୮୦-୯୦ ଦଶକର ପ୍ରଥମାର୍ଦ୍ଧ), ଯାତ୍ରା କିପରି ପରିବର୍ତ୍ତନର ଘଡ଼ିସନ୍ଧି ଅବସ୍ଥାରେ ପହଞ୍ଚିଛି ସେ ସମ୍ପର୍କରେ ଆଲୋଚନା କରିଥିଲେ ।

ଲକ୍ଷ୍ମୀନାରାୟଣ ଏ ପ୍ରସଙ୍ଗରେ ଲେଖିଛନ୍ତି - "ଏଥିରେ ମୁଁ ତା' ସହିତ ଏକମତ ହେଲି - ଖାଲି ନାଟକ ନୁହେଁ, ଏବେ ଦୁନିଆଁରେ ସାହିତ୍ୟ, ସଂଗୀତ, ନୃତ୍ୟ, ଗୀତ ସକଳ କ୍ଷେତ୍ରରେ ପରିବର୍ତ୍ତନ ଯୁଗ ଗୁଡିକୁ ନେଇ ଆଗେଇ ଚାଲିଛି । ଅନ୍ୟଗତି ନାହିଁ ।" (ନବପତ୍ର-୧୯୯୨ ପ୍ରଥମ ସଂଖ୍ୟା, ପୃ. ୪୫) ।

୧୯୯୦ ମସିହା ମାର୍ଚ୍ଚ ୨୦ତାରିଖ ଦିନ ରଘୁ ପଣ୍ଡାଙ୍କର ମାତ୍ର ୭୫ବର୍ଷ ବୟସରେ ଦେହାନ୍ତ ହୋଇଗଲା । ଏ ଖବର ଲକ୍ଷ୍ମୀନାରାୟଣଙ୍କୁ ଦାରୁଣ ଦୁଃଖ ଦେଇଥିଲା । ନିଜ ଅନ୍ତର୍ବେଦନାକୁ ପ୍ରକାଶ କରି ଲକ୍ଷ୍ମୀନାରାୟଣ ଲେଖିଛନ୍ତି - "ସକାଳେ ସଡ଼କରେ ବଜାରକୁ ବାହାରିଛି, ଗୋଟିଏ ମର୍ମନ୍ତୁଦ ଶୋକାବହ ଖବର ମିଳିଲା, କାଲି ରାତିରେ ଘଣ୍ଟେଶ୍ୱରରେ ରଙ୍ଗମଞ୍ଚ ଉପରୁ ଆସୁ ଆସୁ ରଘୁ ଟଳି ପଡ଼ିଲା ।

ବୟସ ମୋଟେ ପଞ୍ଚସ୍ତରୀ ।

ସତରେ ମୋ କାନ ଏଥିକି ପରତେ ଗଲା ନାହିଁ ।

ବାସ୍ତବିକ୍ ଏହା ଏକ ଅକଳ୍ପିତ, ଅବିଶ୍ୱାସନୀୟ, ଅସମ୍ଭବ, ଅପ୍ରାକୃତିକ କ୍ରୁର ସତ୍ୟ ।' (ନବପତ୍ର - ୧୯୯୨, ପ୍ରଥମ ସଂଖ୍ୟା, ପୃ. ୪୬)

---

*ଯୋଡ଼ାରେ ଚାକିରୀ କରୁଥିବା ସମୟରେ ମଧ ରଘୁପଣ୍ଡା କେତେବାର ଯାଇଛନ୍ତି ଏହି ଲେଖକ ପାଖକୁ । ପାଖ ଆଖରେ ଯାତ୍ରା କରୁଥିବା ଅବସରରେ, କଥାବାର୍ତ୍ତା ସମୟରେ ଲକ୍ଷ୍ମୀନାରାୟଣଙ୍କ କଥା କହି ସେ ବିହ୍ୱଳିତ ହୋଇପଡ଼ନ୍ତି ।

## ଫନୀବାବୁ

ଲକ୍ଷ୍ମୀନାରାୟଣ ଛାତ୍ର ଅବସ୍ଥାରେ ପ୍ରସିଦ୍ଧ ବଙ୍ଗଳା ଥିଏଟରର ବିଶିଷ୍ଟ ଅଭିନେତା, ଯତୀନ୍ଦ୍ର ମୋହନ ମୁଖାର୍ଜୀ (ମନି ବାବୁ)ଙ୍କ ସାନ ଭାଇ ଫନୀ ବାବୁଙ୍କ ସଂସ୍ପର୍ଶରେ ଆସିଥିଲେ । ଫନୀବାବୁ ସେତେବେଳେ ମୁନସଫ୍ କୋର୍ଟ, ଭଦ୍ରକରେ କିରାଣି ଥିଲେ । ତାଙ୍କରି ଉଦ୍ୟମରେ ଜଗନ୍ନାଥପୁରରେ ଏକ ସୌଖିନ ନାଟ୍ୟ ଦଳ ଗଠନ କରାଯାଇଥିଲା । ଗାଁ ପିଲାଏ ତାଙ୍କୁ ଅଜା ବୋଲି ଡ଼ାକୁଥିଲେ । ଆଖପାଖ ଅସ୍ତଳ, ସାହାପୁର, ଜାନୁଗଞ୍ଜ ଓ ବଙ୍କସାହି ଆଦି ଗାଁରୁ ଆଗ୍ରହୀ ଯୁବକମାନେ ଏହି ନାଟ୍ୟ ଦଳରେ ଯୋଗଦାନ ଦେଉଥିଲେ । ଏହି ପ୍ରସଙ୍ଗରେ ଲକ୍ଷ୍ମୀନାରାୟଣ ତାଙ୍କ 'ଥଳାମନ' (ଅସଂପୂର୍ଣ୍ଣ ଆତ୍ମଜୀବନୀ)ରେ ଲେଖିଛନ୍ତି - ××× "ଉପର ସାହିର ଝୁଲଣ ବଙ୍ଗଳାରେ ନିତି ରାତିରେ ରିହଲ୍‌ସେଲ୍ ହେଉଥିଲା । ଅଜା ଅଭିନୟର ନିର୍ଦ୍ଦେଶକ ଥିଲେ । ××× ପ୍ରଥମେ ଚନ୍ଦ୍ରଗୁପ୍ତ ନାଟକ ମଞ୍ଚସ୍ଥ ହୋଇଥିଲା । ××× କିଛି ଦିନ ପରେ ଆମେ ପିଲାମାନେ ମିଶି ଠାକୁର ଦାଣ୍ଡରେ ଲକ୍ଷ୍ମଣ ବର୍ଜନ ନାଟକ ମଞ୍ଚସ୍ଥ କରିଥିଲୁ । ଲବ ଓ କୁଶ ଭୂମିକାରେ ଉପା ଓ ମୁଁ ବାହାରିଥିଲୁ । ସେତିକିରେ ଗାଁର ନାଟ୍ୟ ଅଧ୍ୟାୟ ସରିଲା ।" (ନବପତ୍ର/ ୧୯୯୦/୩ୟ ଖଣ୍ଡ/ପୃ. ୩୪)

ମୋଟାମୋଟି ଛାତ୍ର ଜୀବନରୁ ଲକ୍ଷ୍ମୀନାରାୟଣ ଯେଉଁମାନଙ୍କ ସହିତ ମିଶୁଥିଲେ, ଯେଉଁ ଗୁରୁଜନମାନଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ, ସେମାନଙ୍କୁ ଲକ୍ଷ କଲେ, ଲକ୍ଷ୍ମୀନାରାୟଣଙ୍କ ତୀବ୍ର ସାରସ୍ୱତ ଅଭୀପ୍ସା ସ୍ପଷ୍ଟ ବାରି ହୋଇପଡୁଥିଲା ।

ଉପରୋକ୍ତ ବିଶିଷ୍ଟ ବ୍ୟକ୍ତିବିଶେଷଙ୍କୁ ଛାଡ଼ିଦେଲେ ଲକ୍ଷ୍ମୀନାରାୟଣ ଅନ୍ୟ ଯେଉଁ ମହାନ୍ ସାରସ୍ୱତ ସାଧକଙ୍କ ସମ୍ପର୍କରେ ଆସି ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ, ସେ ହେଉଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ।

କାନ୍ତକବିଙ୍କ କନିଷ୍ଠପୁତ୍ର ଗୌରଚନ୍ଦ୍ର (ଗୌରଭାଇ) ତାଙ୍କର ଘନିଷ୍ଠ ବନ୍ଧୁଥିଲେ ମଧ ଜ୍ୟେଷ୍ଠ ପୁତ୍ର ନିତ୍ୟାନନ୍ଦ (ନିତୁଭାଇ)ଙ୍କ ସହିତ ତାଙ୍କର ଆନ୍ତରିକ ସମ୍ପର୍କ ଥିଲା, ତଥାପି ଛାତ୍ର ଅବସ୍ଥାରେ କାନ୍ତକବିଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲକ୍ଷ୍ମୀନାରାୟଣଙ୍କୁ ଜୁଟି ନଥିଲା । ଛାତ୍ର ଜୀବନ ଓ ଚାକିରି ଜୀବନର ସନ୍ଧିକ୍ଷଣରେ ସେ ଏହି ଅପୂର୍ବ ସୁଯୋଗ ପାଇଥିଲେ ।

ମାଟ୍ରିକ ପାଶ୍ ପରେ ପରିବାରର ଆର୍ଥିକ ସଂକଟ ଦୃଷ୍ଟିରୁ ତାଙ୍କର ଖଣ୍ଡେ ଚାକିରି ଦରକାର ହେଉଥିଲା । ସେହି ସମୟରେ ଭଦ୍ରକରେ ଗୋପୀନାଥ ପ୍ରେସ୍‌ରୁ 'ଡ଼ଗର' ପତ୍ରିକା ପ୍ରଥମ କରି ବାହାରୁଥିଲା । ଗୋପୀନାଥ ପ୍ରେସ କାନ୍ତକବିଙ୍କର; 'ଡ଼ଗର' ପତ୍ରିକା ବି ତାଙ୍କର । କୁଷ୍ଠ ରୋଗାକ୍ରାନ୍ତ କାନ୍ତକବି ସେତେବେଳକୁ ବଡ଼ପୁଅ ନିତ୍ୟାନନ୍ଦଙ୍କୁ ଏ ସବୁର ତଦାରଖ କରିବାକୁ ବରାଦ୍ କରି ସାରିଥାନ୍ତି ।

ସ୍ୱାଧୀନତାର ପୂର୍ବବର୍ତ୍ତୀ କଥା । ନିତ୍ୟାନନ୍ଦ ଅସହଯୋଗ ଆନ୍ଦୋଳନରେ ମାତି ଥାଆନ୍ତି ପୁରା ଦମ୍‌ରେ । ତାହା ସତ୍ତ୍ୱେ ଏ କାର୍ଯ୍ୟ ତ ଦେଖିବାକୁ ହେବ । ତାଙ୍କରି ପରାମର୍ଶ (ପରୋକ୍ଷରେ

ଅନୁରୋଧ) ରେ ଲକ୍ଷ୍ମୀନାରାୟଣ 'ଡ଼ଗର'ର ପରିଚାଳନା କଲେ ଓ କାନ୍ତକବିଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ ।

'ନବପତ୍ର' ପତ୍ରିକାରେ ୧୯୯୩ ମସିହା ଜାନୁଆରୀ ସଂଖ୍ୟାରେ ଲକ୍ଷ୍ମୀନାରାୟଣ ଜୀବନଚରିତ "ଥକାମନ"ର ଶେଷ ଅନୁଚ୍ଛେଦଟି ପ୍ରକାଶିତ - ଯାହା ବିଦୁଷୀ ଲବଙ୍ଗଲତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଭାବେ ଲିଖିତ । ବିଦୁଷୀ ଲବଙ୍ଗଲତା କାନ୍ତକବିଙ୍କର ଧର୍ମପତ୍ନୀ । ଏହି ସଂକ୍ଷିପ୍ତ ଅନୁଚ୍ଛେଦଟି ବସ୍ତୁତଃ କାନ୍ତକବି ଓ ଲବଙ୍ଗଲତାଙ୍କ ସହ ଲକ୍ଷ୍ମୀନାରାୟଣଙ୍କ ପ୍ରଥମ ସାକ୍ଷାତକାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ଏହି ଅପୂର୍ବ ସାକ୍ଷାତକାର ପ୍ରସଙ୍ଗଟି ଅବିକଳ ବାଢିଦେଲେ ତାହା ଅପ୍ରାସଙ୍ଗିକ ହେବ ନାହିଁ ।

କାୟାକାନ୍ତ (ବିଦୂଷୀ ଲବଙ୍ଗଲତା ଦେବୀଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି) (ନବପତ୍ର ୧୯୯୩ ଜାନୁଆରୀ ସଂଖ୍ୟା, ପୃ ୯୦-୯୨ରେ ପ୍ରକାଶିତ) ।

"ଭଦ୍ରକ ଗୋପୀନାଥ ପ୍ରେସ୍‌ରେ 'ଡ଼ଗର'ର ଅଫିସ୍ ହେଉଥାଏ । ହାସ୍ୟରସ ପତ୍ରିକାଟିର ଆଦ୍ୟକାଳ, ପ୍ରଥମ ବର୍ଷ । ନିତୁଭାଇଙ୍କ ଅନୁରୋଧରେ ମୁଁ 'ଡ଼ଗର'ର ପରିଚାଳନା ଦେଖାଶୁଣା କଲି । ଅଫିସ୍‌ରେ ଯୋଗଦାନର ମାତ୍ର ଦିନକ ପରେ, ନିତୁ ଭାଇ ସକାଳେ ବାହାରକୁ ଯାଇଥାଆନ୍ତି । କାନ୍ତକବି ମୋତେ ଡ଼ାକି ପଠାଇଲେ । ସେ 'ଭାଗବତ ଭବନ'ର ଦୋ ତାଲାରେ ରହୁଥିଲେ । ସେ ଯାଏ ମୁଁ ତାହାଙ୍କୁ ଅତି ପାଖରୁ ଭଲ କରି ଦେଖିନଥିଲି ।

ସେ ହୁଏତ ଖୁବ୍ କଡ଼ା ଲୋକ ହୋଇଥିବେ ଭାବି ମୁଁ ଟିକିଏ ହଡ଼ବଡ଼େଇ ଗଲି । କୌଣସି ମତେ ପ୍ରୁଫ୍‌ଟକ ଧରି ମନେ ମନେ ଡ଼ରି ଡ଼ରି ଦୁଆର କତିରେ ହାଜର ହେଇ, ଅଣ ଉହାଡ଼ିଆ ଉଣ୍ଡିଲି । କବାଟ ମେଲା ଥିଲା । କଅଁଳ ଖରା ଘର ଭିତରେ ପଡ଼ିଥିଲା । କାନ୍ତକବି ବଡ଼ ବଡ଼ ତକିଆକୁ ଆଉଜି ମୋଟା ଗଦି ବିଛା ପଲଙ୍କରେ ଆରାମରେ ବସିଥିଲେ । ତଳେ ଜଣେ ଗୌରାଙ୍ଗୀ ମହିଳା ବସି ପାନ ଭାଙ୍ଗୁଥିଲେ । ସାକ୍ଷାତ ଲକ୍ଷ୍ମୀପ୍ରତିମା, ସୌମ୍ୟକାନ୍ତ, ପ୍ରସନ୍ନ ବେଦନା, ଶ୍ୱେତ ବାସନା । ପାନଟି ଛେଚି ସେ କାନ୍ତକବିଙ୍କ ପାଟିରେ ଖୁଆଇ ଦେଲେ ।

ମୋ ଉପରେ ନଜର ପଡ଼ିଲାକ୍ଷଣି ସେ ଭିତରକୁ ଡ଼ାକିଲେ । ଅତି ସଂକୋଚରେ ପାଦ ବଢ଼ାଇଲି । କାନ୍ତକବିଙ୍କୁ ଆଭୂମି ପ୍ରଣାମ କଲି । ସେ ତତ୍‌କ୍ଷଣାତ୍ କହିଲେ - "ଆରେ ଆରେ, ଏ କ'ଣ କରୁଛ ଉଠ ।" ମୋତେ ଚଉକୀରେ ବସିବାକୁ କହିଲେ । କିନ୍ତୁ ମୁଁ ଭକ୍ତିଭରେ ପ୍ରାୟ ଅଧା ବସିଲି ।

ମହିଳା ଜଣକ ସିଗାରେଟ୍ ପାକେଟ୍ ଖୋଲି ଖଣ୍ଡିଏ ସିଗାରେଟ୍ କାଢିଲେ ।

କାନ୍ତକବି ଏତିକିବେଳେ ହସି ହସି ପଚାରିଲେ - "ତମ ନାଁ କ'ଣ ?"

ଥଙ୍ଗ ଥଙ୍ଗ ଗଳାରେ ଜବାବ୍ ଦେଲି - "ଲକ୍ଷ୍ମୀନାରାୟଣ ।"

ତହୁଁ ସେ ଭାରି ଥଟ୍ଟାଳିଆ ଢ଼ଙ୍ଗରେ କହିଲେ - "ଶୁଣିଲଣି, ମୁଁ ଲକ୍ଷ୍ମୀକାନ୍ତ, ଜଣେ ଲୋକ । ଆଉ ତମେ ହେଲ ଲକ୍ଷ୍ମୀ ଓ ନାରାୟଣ ଏକାଠି, ମାନେ ଦୁଇ । ତା' ହେଲେ ତମ କରାମତି ନିଶ୍ଚୟ ମୋଠୁଁ ଢ଼େର୍ ବେଶି ।"

ଏତିକି କହୁ ନକହୁଣୁ ମହିଳା ତାହାଙ୍କୁ ଅନାଇ ରୋକିଦେଲେ - "ତମର କ'ଣ ସବୁବେଳେ ସେହି ଟାହିଟାପରା ଢ଼ଙ୍ଗ ଗଲା ନାହିଁ । ସମସ୍ତଙ୍କ ସାଙ୍ଗରେ ଥଟ୍ଟା, ମୁସ୍କିଲ୍ । ସେ ପରା ତମ ସାନ ପୁଅ ସମାନ ହେବ, ଗୌରର ସାଙ୍ଗ । ବାପ ପୁଅକୁ ଥଟ୍ଟା କରେ ନା ?"

"ହଉ ହଉ ତମେ ପରା ମୋ ପୁଅ, ମୋର କାଇଲ୍ । ଥାଉ ସେତିକି, ତମ ସାଙ୍ଗରେ ଆଉ ସେମିତିକା କଥା ପଟିବ ନାହିଁ । ଏଣିକି ତମକୁ କଡ଼ା ମିଜାଜ୍ ଦେଖାଇବି ।"

ଏପରି ଦୋହଲା ପରିସ୍ଥିତିରେ ମୁଁ ହଡ଼ବଡ଼େଇ ଗଲି । ମହିଳା ପାଖ ଟି ପୟରୁ ଛୋଟ ଶିଙ୍ଗ ନଳଟାଏ ଆଣିଲେ । ସିଗାରେଟ୍‌ଟା ତା ମୁହଁରେ ପୁରାଇଲେ, ଦିଆସିଲି କାଠି ମାରି ସେଟା ଲଗାଇ, ପୁଣି ଉଠିଯାଇ କାନ୍ତକବିଙ୍କ ହାତମୁଠା ଭିତରେ ଗଳାଇଦେଲେ । ସେତେବେଳକୁ ତାଙ୍କର ଆଙ୍ଗୁଳି ସବୁ ପ୍ରାୟ ବିକଳାଙ୍ଗ ହୋଇ ଆସିଲାଣି । କାନ୍ତକବି ଥରେ ସିଗାରେଟ୍ ଟାଣି ଖୁବ୍ ଖୁସିରେ ଉପରକୁ ଧୁଆଁ ଛାଡ଼ିଲେ । ଏଣେ ମୋ ମୁହଁକୁ କଟ୍‌ମଟ୍ କରି ଅନାଇଲେ, ଆଉ ହସି ହସି ପଚାରିଲେ - 'ଡ଼ଗର' ର ପ୍ରୁଫ୍ ଆଣିଛ ତ ?

ମୁଁ ଉଠିପଡ଼ି ତାଙ୍କ ହାତକୁ କାଗଜତକ ବଢ଼ାଇ ଦେଉଥିଲି କିନ୍ତୁ ମହିଳା ସଙ୍ଗେ ସଙ୍ଗେ ବାରଣ କଲେ । ପ୍ରୁଫ୍ ତମେ ପଢ଼ । ସେ ଶୁଣିବେ, ଆଉ ଯାହା ବତାଇଦେବେ ଟିପି ନେବ ।

କାନ୍ତକବି ଆଖିରେ ଠାରିଦେଲେ । ମହିଳା ନଇଁପଡ଼ି ଖଟତଳୁ ପିତଳ ପିକଦାନିଟା ଉଠାଇ ନେଇ ତାହାଙ୍କ ମୁଖ ପାଖରେ ଧରିଲେ । କାନ୍ତକବି ପିକ ପକାଇଲେ । ପିକଦାନୀ ପୁଣି ଯଥା ସ୍ଥାନରେ ରହିଲା ।

ତା'ପରେ ମୁଁ ପ୍ରୁଫ୍ ପଢ଼ିବାକୁ ଲାଗିଲି ଥଙ୍ଗେଇ ଥଙ୍ଗେଇ, କାରଣ ମୁଁ ସେଥିରେ ନୂଆ । କାନ୍ତକବି ବେଳେବେଳେ ମୁଣ୍ଡ ଟୁଙ୍ଗାରୁ ଥାଆନ୍ତି ହସି ହସି । କେତୋଟି ଧାଡ଼ି ପଢ଼ିବା ପରେ ସେ ମୋତେ କହିଲେ- ରୁହ, ଏଇଠି କେମିତିକା ଖଟକା ଲାଗୁଛି । କିଛିକ୍ଷଣ ମନେ ମନେ ଭାବି ସେ ମହିଳାଙ୍କୁ ଅନାଇ ପଚାରିଲେ - "ହଇହେ, ଏ ଶବ୍ଦଟା ତ ଠିକ୍ ହେଲା ନାହିଁ । ଏଠି ତମ ମାଇପି ମହଲରେ ଏଟାକୁ କ'ଣ କହନ୍ତି ତ ?"

ମହିଳାଙ୍କ ତୁଣ୍ଡରୁ ସଂଗେ ସଂଗେ ମଜାଳିଆ ଶବ୍ଦଟିଏ ବାହାରି ଆସିଲା ।

କାନ୍ତକବିଙ୍କ ହାତକୁ କାଗଜ ଖଣ୍ଡିକ ବଢ଼ାଇ ଦେଉଥିଲି, କିନ୍ତୁ ମହିଳା ମୋ ହାତରୁ ନେଇଯାଇ ସେହି ଶବ୍ଦଟି ଲେଖିଦେଲେ । ତା'ପରେ ସେ ମୋତେ ବତାଇ ଦେଲେ - "ସେ ସହଜରେ ଲେଖିପାରନ୍ତି ନାହିଁ । ଏଣିକି ତମେ ତାଙ୍କ କହିବା ମୁତାବକ ପ୍ରୁଫ୍‌ରେ ଲେଖିନେବ ।"

ଘରେ ଛାଇ ମାଡ଼ି ଆସିଲା । କବିଙ୍କୁ ଟିକିଏ ଶୀତୁଆ ଲାଗିଲା । ତହୁଁ ମହିଳା ଖଣ୍ଡିଏ ତସର ଚାଦର ଆଣି କାନ୍ତକବିଙ୍କୁ ପୁରା ପୁରି ଘୋଡ଼ାଇ ଦେଲେ । ତାହାଙ୍କ ମୁହଁରୁ ପିକ ବୋହି ଆସୁଥିଲା - ତଉଲିଆରେ କବିଙ୍କ ମୁହଁ ପୋଛିଦେଲେ ।

କବିଙ୍କର ଏକା ସାଙ୍ଗରେ ପାନଚୋବା ଓ ସିଗାରେଟ୍ ଟଣା ଚାଲିଥାଏ । ମହିଳା ସପୁରୀ ରସର ସରବତ କରି ରଖିଥିଲେ । ଗିଲାସଟା ନେଇ କବିଙ୍କ ମୁହଁରେ ଲଗାଇଲେ ।

ଏତିକିବେଳେ ନିତୁ ଭାଇ ହାଜର ହୋଇଗଲା । ମୁଁ ସୁଯୋଗ ଉଣି ଧୀରେ ଧୀରେ ଖସି ଆସିଲି ।

ତଳକୁ ଆସି ପ୍ରେସରେ ଜାଣିଲି - ସେବିକା ମହିଳା ହେଉଛନ୍ତି ଅସଲ କାନ୍ତକବି, ଅର୍ଥାତ୍ ତାହାଙ୍କ ସୁଯୋଗ୍ୟ ସହଧର୍ମିଣୀ ଲବଙ୍ଗଲତା । ମୋ ମଥା ସେହି ପରମା ପତିପରାୟଣା ମହିୟସୀ ମହିଳାଙ୍କ ଚରଣ ଉଦ୍ଦେଶ୍ୟରେ ନଇଁଗଲା ।

କାଳର କରାଳ ସ୍ରୁଅରେ ରସରାଜ କାନ୍ତକବି ଦୁନିଆଁରୁ ଲୁଚିଗଲେ । ସୁବର୍ଣ୍ଣପୁରୀରେ ଅମା ନିଶା ଘୋଟିଗଲା ।

କର୍ପୂର ଉଡ଼ିଗଲା ସିନା, ମାତ୍ର ଅମୂଲ୍ୟ କନା ଖଣ୍ଡିକ ତ ପଡ଼ି ରହିଥିଲା, ଆମର ସମ୍ବଳ ଥିଲା ଏଯାଏ । ସେତକ ବି ଆଜି କୁଆଡ଼େ ଉଡ଼ିଗଲା, ଅନାଥ ହେଲୁ ।”

ଉପର୍ଯ୍ୟୁକ୍ତ ପରିଚ୍ଛେଦଟି ଲକ୍ଷ୍ମୀନାରାୟଣଙ୍କ ଜୀବନ ଚରିତ ‘ଥକାମନ’ର ଶେଷ ଅନୁଚ୍ଛେଦରେ ପ୍ରକାଶିତ । *

ବାସ୍ତବରେ କାନ୍ତକବି ଓ ଡ଼ଗର ସହିତ ତାଙ୍କ ସମ୍ପର୍କ ଅଭିନ୍ନ ଥିଲା । ସେ କାନ୍ତକବିଙ୍କ ବିୟୋଗରେ ଭାଙ୍ଗି ପଡିଥିଲେ । ‘ଡ଼ଗର’ ପତ୍ରିକା ବନ୍ଦ ହୋଇଯିବା ତାଙ୍କୁ ଦାରୁଣ ଦୁଃଖ ଦେଇଥିଲା । ଲକ୍ଷ୍ମୀନାରାୟଣଙ୍କ ଅସମାପ୍ତ ଜୀବନ ଚରିତ ‘ଥକାମନ’ର ଉପର୍ଯ୍ୟୁକ୍ତ ଅନୁଚ୍ଛେଦଟିରେ କେତୋଟି ଗୁରୁତ୍ୱପୂର୍ଣ୍ଣ କଥା ଲକ୍ଷଣୀୟ ।

ପ୍ରଥମରେ ଲକ୍ଷ୍ମୀନାରାୟଣଙ୍କର କାନ୍ତକବିଙ୍କ ପ୍ରତି ସଂଭ୍ରମ ଭକ୍ତି । (ସମସ୍ତ ବୟୋଜ୍ୟେଷ୍ଠ ସାହିତ୍ୟିକଙ୍କୁ ସେ ଗଭୀର ଭକ୍ତି କରୁଥିଲେ । ) ଦ୍ୱିତୀୟରେ ଜଟିଳ କୁଷ୍ଠରୋଗାକ୍ରାନ୍ତ କାନ୍ତକବିଙ୍କ ସାହିତ୍ୟାନୁରକ୍ତି ଓ ହାସ୍ୟରସାତ୍ମକ ମେଜାଜ । ଏବଂ ତୃତୀୟରେ କବିପତ୍ନୀଙ୍କର ପତି ପରାୟଣତା ଓ କବିକୃତି ନିମନ୍ତେ ଯଥୋଚିତ ସହାୟତା ପୂର୍ବକ ସହଧର୍ମିଣୀର ପ୍ରକୃତ ଭୂମିକା ପ୍ରତିପାଦନ ।

ଛାତ୍ର ଜୀବନର ଠିକ୍ ପରେ ପରେ ହେଲେ ମଧ୍ୟ ‘ଡ଼ଗର’ କାର୍ଯ୍ୟାଳୟରେ ଯୋଗଦାନ ବେଳକୁ ଲକ୍ଷ୍ମୀନାରାୟଣଙ୍କ ପାଖରେ ଛାତ୍ର ସୁଲଭ ପ୍ରବଣତା ଭରି ରହିଥିଲା, ତାହା ଉପରୋକ୍ତ ଉଦ୍ଧୃତିରୁ ଜଣାପଡ଼େ ।



---

*ଜୀବନର ଶେଷ ପର୍ଯ୍ୟାୟରେ ବହୁବାର ଏହି ଲେଖକ ତାଙ୍କଠାରୁ ‘ଡ଼ଗର’ ଓ କାନ୍ତକବିଙ୍କର ପ୍ରଶସ୍ତି ଶୁଣିଛି । ତାଙ୍କର ପ୍ରଥମ ଗଳ୍ପ ‘ଶିକ୍ଷା’ ଡ଼ଗରରେ ସ୍ଥାନ ପାଇବା ବେଳେ କାନ୍ତକବି କେମିତି ତାଙ୍କୁ କୋଳେଇ ନେଇଥିଲେ, ତାଙ୍କ ମିନିଗଳ୍ପ ‘ବାର୍ଦ୍ଧକ୍ୟ’, ‘ପତର’ ଓ ‘ଭାତ’ ପଢ଼ି ସେ କେମିତି ତାଙ୍କୁ ଆଶୀର୍ବାଦ କରିଥିଲେ ସେ କଥା ବଖାଣି ଲକ୍ଷ୍ମୀନାରାୟଣ ଲୁହ ସମ୍ବରଣ କରିପାରନ୍ତି ନାହିଁ ।

## ଦ୍ୱିତୀୟ ପରିଚ୍ଛେଦ

# ଜୀବନର ଚଲାପଥ

### ଗୃହସ୍ଥ ଜୀବନ

ଲକ୍ଷ୍ମୀନାରାୟଣଙ୍କ ପୈତୃକ ପରିବାର ସମ୍ପର୍କରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ମାତ୍ର ଆଠବର୍ଷ ବୟସରେ ସେ ବାପଛେଉଣ୍ଡ ହୋଇପଡ଼ି ଦାରୁଣ ଅଭାବ ଅସୁବିଧା ଭିତରେ ମଣିଷ ହୋଇଛନ୍ତି । ମାଆ ମନ୍ଦୁଡ଼ମଣିଙ୍କ ଆତ୍ମବିଶ୍ୱାସ ଓ ଧାର୍ମିକ ଚେତନା, ଦାଦା ଭାସ୍କର (ଲକ୍ଷ୍ମୀନାରାୟଣ ତାଙ୍କୁ ସାନାବାବା ବୋଲି ଡ଼ାକୁଥିଲେ)ଙ୍କ ଧୈର୍ଯ୍ୟ ଓ କଷ୍ଟ ଉପାର୍ଜନର ଅବଲମ୍ବନରେ ସେ ଲାଳିତ ପାଳିତ ହୋଇଛନ୍ତି ଏବଂ ପଡ଼ୋଶୀ ଦାଦା ବଂଶୀଧର ମହାନ୍ତିଙ୍କ ମାସିକ ପାଞ୍ଚଟଙ୍କା ଅନୁଦାନରେ ସେ ମାଟ୍ରିକ ପର୍ଯ୍ୟନ୍ତ ପାଠ ପଢ଼ିଛନ୍ତି । ମାଟ୍ରିକ ପରେ ପରିବାର ପୋଷଣ ନିମନ୍ତେ ଚାକିରି ଖଣ୍ଡିଏ ଯୋଗାଡ଼ କରିବା ତାଙ୍କ ପାଇଁ ଅପରିହାର୍ଯ୍ୟ ହୋଇପଡ଼ିଲା ।

ଏହି କ୍ରମରେ ଅଳ୍ପ କିଛିଦିନ ପାଇଁ କାନ୍ତକବିଙ୍କ 'ଡ଼ଗର' ପତ୍ରିକା ଅଫିସ୍‌ରେ କାର୍ଯ୍ୟ କରିବା ଉତ୍ତାରୁ କଲିକତାରେ ସେ ସର୍ଟହାଣ୍ଡ ଶିଖନ୍ତି ଓ ମୋଟାମୋଟି ୧୯୩୯ ମସିହାରୁ ପୋଲିସ୍ ବିଭାଗରେ ଚାକିରି କରନ୍ତି । ସେତେବେଳେ ମାସିକ ଦରମା ଅତି ନଗଣ୍ୟ । ଦଶଟଙ୍କା ମାତ୍ର ।

ଏହି ସ୍ୱଳ୍ପ ଦରମାକୁ ପୁଞ୍ଜି କରି ସେ ଆପଣା ପରିବାରକୁ ଦୟନୀୟ ଆର୍ଥିକ ଦୁରବସ୍ଥା ଭିତରୁ ମୁକୁଳାଇବା ପାଇଁ ବହୁକଷ୍ଟ ସ୍ୱୀକାର କରିଛନ୍ତି । ଚାକିରି କାଳର ପ୍ରାରମ୍ଭିକ ଅବସ୍ଥାରେ ସେ ତାଙ୍କର ପତ୍ନୀଙ୍କୁ ଲେଖିଥିବା କେତେଖଣ୍ଡ ଚିଠି ପାଠ କଲେ, ସେତେବେଳେ ତାଙ୍କ ପରିବାରର ଆର୍ଥିକ ଦୁରବସ୍ଥା କଥା ସ୍ପଷ୍ଟ ବାରି ହୋଇପଡ଼େ । (ପରିଶିଷ୍ଟ ୬ ଚିଠି ନଂ୧ ଓ ୨ରେ ଦ୍ରଷ୍ଟବ୍ୟ) ।

ଚାକିରି କରିବା ପରେ ଦାଦା (ସାନା ବାବା)ଙ୍କ ଏକମାତ୍ର ପୁତ୍ର ରବିନାରାୟଣର ସମସ୍ତ ଦାୟିତ୍ୱ ସେ ଆଗ୍ରହରେ ଗ୍ରହଣ କରିଥିଲେ ଓ ତାଙ୍କୁ ପାଠ ଶାଠ ପଢ଼ାଇ ମଣିଷ କରିଲେ ।

ସୂଚନାଯୋଗ୍ୟ ଯେ ତାଙ୍କର ଏହି ସାନଭାଇ ରବିନାରାୟଣ ତାଙ୍କୁ ଅତ୍ୟନ୍ତ ସମ୍ମାନ କରନ୍ତି । ୧୯୬୦ରୁ ୧୯୭୦ ମସିହା ଭିତରେ ଜଣେ ବିଶିଷ୍ଟ ଛାତ୍ରନେତା ଭାବେ ପ୍ରଶସ୍ତି

ଲାଭ କରିଥିବା ତାଙ୍କ ମାନ ଭାଇଟି, ପରବର୍ତ୍ତୀ ସମୟରେ ଜଣେ ସୁନାମଧନ୍ୟ ସାମ୍ବାଦିକ ହିସାବରେ ମଧ ବେଶ୍ ଖ୍ୟାତିଲାଭ କରିଛନ୍ତି । ୧୯୯୪ ମସିହାରେ ସେ ଏକ ଦାରୁଣ ସଡ଼କ ଦୁର୍ଘଟଣାର ସମ୍ମୁଖୀନ ହେଲେ । ବର୍ଷାଧିକ କାଳ ଚିକିତ୍ସିତ ହେବା ପରେ ସେ ଏବେ ସପରିବାର ଭୁବନେଶ୍ୱରରେ ଅବସ୍ଥାନ କରୁଛନ୍ତି ।

ପରିବାରର ଅନ୍ୟତମ ସଦସ୍ୟା ମମତାମୟୀ ବୈଷ୍ଣବୀ ମାତା ମହୁଡ଼ମଣି । ଲକ୍ଷ୍ମୀନାରାୟଣଙ୍କ ଜୀବନରେ ମହୁଡ଼ମଣିଙ୍କ ସ୍ଥାନ ସର୍ବାଗ୍ରେ । ତାଙ୍କୁ କେବେ ସେ ପାଖରୁ ଅନ୍ତର କରିନାହାନ୍ତି । ଶୈଶବ ଓ ଛାତ୍ରଜୀବନରେ ମାଆଙ୍କର ଭୂମିକା ଉଲ୍ଲେଖ କରାଯାଇଛି । ଗୃହସ୍ଥ ଜୀବନରେ ମଧ ତାଙ୍କର ଭୂମିକା କସ୍ମିନ୍ କାଳେ ଗୌଣ ହୋଇନାହିଁ । ମହୁଡ଼ମଣିଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ପ୍ରସଙ୍ଗ କ୍ରମେ ଉଲ୍ଲେଖ କରାଯିବ ।

ଲକ୍ଷ୍ମୀନାରାୟଣଙ୍କ ବିବାହ ହୁଏ ୧୯୪୫ ମସିହାରେ, ଭଦ୍ରକସ୍ଥ ଅଣ୍ଡରାଇ ଗ୍ରାମ ନିବାସୀ ଗୌରହରି ଦାସଙ୍କ କନ୍ୟା ପ୍ରମଦାଙ୍କ ସହିତ । ପ୍ରମଦା ଯଥାର୍ଥରେ ଥିଲେ ଆଦର୍ଶ ସହଧର୍ମିଣୀ । ସରଳା, ସୁଶୀଳା ପ୍ରମଦା ଥିଲେ ଅତ୍ୟନ୍ତ ସ୍ନେହଶୀଳା, ଉଦାର ଓ ଅତିଥି ବତ୍ସଳା । ପ୍ରମଦାଙ୍କ ସମ୍ପର୍କରେ ପ୍ରବୀଣ ସାହିତ୍ୟିକ ତଥା ସ୍ୱାଧୀନତା ସଂଗ୍ରାମୀ ନିତ୍ୟାନନ୍ଦ ମହାପାତ୍ର ଲେଖିଛନ୍ତି-

"ଡ଼ଗର ଯେତେବେଳେ କଟକକୁ ଉଠିଗଲା, ମୋର ଠିକ୍ ମନେଅଛି, ମୁଁ ପ୍ରାୟ ଦୁଇତିନିଟା ବେଳେ ତାଙ୍କ (ଲକ୍ଷ୍ମୀନାରାୟଣଙ୍କ ତୁଳସୀପୁରସ୍ଥ) ଘରକୁ ଯାଇ ମଧ୍ୟାହ୍ନ ଭୋଜନ କରି ଆସୁଥିଲି । ତାଙ୍କ ପତ୍ନୀ ପ୍ରମଦା ମୋତେ ଦେଢ଼ଶୁର ମନେକରି ମାନ୍ୟ କରୁଥିଲେ ।" (ତପୋବନର ତପସ୍ୱୀ - ପୃ. ୩୬)

ଲକ୍ଷ୍ମୀନାରାୟଣଙ୍କ ବୈବାହିକ ଜୀବନ ଯେ ସୁଖପ୍ରଦ ଥିଲା ଏଥିରେ ସନ୍ଦେହ ନାହିଁ । ଲକ୍ଷ୍ମୀନାରାୟଣ ନିଜେ ଜଣେ ସାହିତ୍ୟିକ ହୋଇଥିବାବେଳେ ପ୍ରମଦା ଥିଲେ ସାହିତ୍ୟ ରସିକା । ନିଜେ ମଧ କିଛି କିଛି ଲେଖୁଥିଲେ । ଲକ୍ଷ୍ମୀନାରାୟଣ କଟକରୁ ସ୍ତ୍ରୀ ପ୍ରମଦାଙ୍କୁ ଖଣ୍ଡେ ଚିଠିରେ ଲେଖିଥିଲେ- "ତୁମ ଗପ ପାଇଲି - ଚିଠି ନାହିଁ । ଭାରି ଖୁସି ହେଲି । ଯଦି ଚ ଏହା ତୁମର ପ୍ରଥମ ପ୍ରଚେଷ୍ଟା, ଚେଷ୍ଟା କଲେ ତୁମେ ଅଚିରେ ଜଣେ ସିଦ୍ଧହସ୍ତ ଲେଖିକା ହୋଇପାରିବ ବୋଲି ମୋର ବିଶ୍ୱାସ । ତୁମେ ଆସିଲେ ତୁମ ସାମନାରେ ମୁଁ ଏ ଗପଟିର ତାତ୍ପର୍ଯ୍ୟ ଇତ୍ୟାଦି ଆଲୋଚନା କରିବି । ଏଥର 'ଉଦୟ' ପାଇଁ ତୁମର 'ଉର୍ଦ୍ଧ୍ୱବାହୁ' ଟା ଦେଇଛି ।" (ପରିଶିଷ୍ଟ-୬ ରେ ଦ୍ରଷ୍ଟବ୍ୟ ।

ପୁନଶ୍ଚ ପ୍ରମଦାଙ୍କ ସାହିତ୍ୟ ପ୍ରୀତିର ଅନ୍ୟ ଏକ ଝଲକ ଦେଖିବାକୁ ମିଳେ ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ଅନୂଦିତ (ଅନୁସୃଜିତ) ଉପନ୍ୟାସ "ଆନାକାରେନିନା" ରେ ଲିଖିତ ଅନୁବାଦ ସମ୍ବନ୍ଧରେ ଅନୁବାଦକଙ୍କ 'ନିଜକଥା'ରୁ । ପ୍ରମଦାଙ୍କ ଅଳିକୁ ଉପେକ୍ଷା କରି ନପାରି ଲକ୍ଷ୍ମୀନାରାୟଣ ଏହି ଉପନ୍ୟାସର ଅନୁସୃଜନ କରିଥିଲେ । 'ଏହି ନିଜକଥା'ରୁ କିଛି ଅଂଶ ଏଠାରେ ପ୍ରଣିଧାନଯୋଗ୍ୟ ।

"(ତୁମର) କାହିଁକି ଏତେ ଝୁଙ୍କ ?

(ପତ୍ନୀ ଉତ୍ତର ଦିଅନ୍ତି) - ସୁରୁଖୁରରେ ଯାର ଅନୁବାଦ ହୋଇଗଲେ, ମୋ ଜୀବନର ଗୋଟାଏ ବଡ଼ ସାଧ ମେଣ୍ଟିବ । ଛାତ୍ରୀ ଅବସ୍ଥାରେ ଏ ବହିଟି ମୁଁ ପଢିଥିଲି । ଅଶେଷ ଆନନ୍ଦ ପାଇଥିଲି । ସେତେବେଳେ ମନେମନେ ପାଞ୍ଚୁଥିଲି ଓଡ଼ିଆରେ ଏହି ଅମର ପାରିବାରିକ ଗଦ୍ୟ କାବ୍ୟଟିର ରୂପ ଦେବି । ସେହି ସୁପ୍ତ ବାସନାଟି ଏତେଦିନେ ଭଗବାନ ପୂରଣ କରିବାକୁ ଯାଉଛନ୍ତି (ତୁମରି ମାଧ୍ୟମରେ) । ତେଣୁ ମୋର ଆନନ୍ଦ କହିଲେ ନସରେ ।"

ଏହି ଆଦ୍ୟ କଥନୀରୁ ଆହୁରି ମଧ୍ୟ ଜଣାପଡ଼େ ଯେ ପ୍ରମଦା ଗୃହିଣୀଟିଏ ଭାବରେ ପରିବାର ସମ୍ଭାଳିବା ବ୍ୟତିରେକ ସ୍ୱାମୀଙ୍କୁ ସାରସ୍ୱତ ସାଧନାରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରୁଥିଲେ । ଲକ୍ଷ୍ମୀନାରାୟଣ ବେଳେବେଳେ ନିଜେ ନଲେଖି ଡ଼ାକି ଦେଉଥିଲେ ଓ ପ୍ରମଦା ତାହା ଲେଖୁଥିଲେ ।*

ଏକ ପ୍ରକାର ରଚି ଓ ଆଦର୍ଶର ଦୁଇ ପରସ୍ପର ଜୀବନ ସାଥୀ ହୋଇଥିବାରୁ ଉଭୟ ସ୍ୱାମୀ ସ୍ତ୍ରୀଙ୍କ ପାରିବାରିକ ଜୀବନ ଯେ ସୁଖମୟ ହୋଇଥିବ ଏଥିରେ ସନ୍ଦେହ ନାହିଁ ।

ପ୍ରମଦାଙ୍କୁ ନେଇ ଲକ୍ଷ୍ମୀନାରାୟଣ ସୁଖର ନୀଡ଼ ରଚନା କରିଥିଲେ । ସମୟକ୍ରମେ ଏହି ସୁଖ ସଂସାରରେ ଜନ୍ମ ଗ୍ରହଣ କରିଥିଲେ ବଡ଼ ପୁଅ ଆଦିନାରାୟଣ (୧୦.୦୬.୪୬), ସାନପୁଅ ବିରଞ୍ଚି ନାରାୟଣ (୩୧.୦୫.୪୯), ବଡ଼ଝିଅ ସ୍ନେହଲତା (ଅକ୍ଟୋବର ୧୯୫୨) ଓ ସାନ ଝିଅ ଶ୍ରଦ୍ଧା (୧୯୫୫) ।

ପ୍ରମଦା ଜଣେ ଆଦର୍ଶ ଗୃହିଣୀ ଥିଲେ । ବିବାହ ପରେ ବେଶ୍ କିଛିବର୍ଷ ସେ ଶ୍ୱଶୁରାଳୟରେ ରହି ନିଜ ଶାଶୁ, ଖୁଡ଼ିଶାଶୁ ଓ ଖୁଡୁତା ଶଶୁରଙ୍କ ସେବା ଶୁଶ୍ରୂଷା ସହିତ ପିଲାମାନଙ୍କ ଯତ୍ନ ନେଇ ସମ୍ପୂର୍ଣ୍ଣ ପରିବାରଟି ସମ୍ଭାଳିଥିଲେ । ତାହା ଲକ୍ଷ୍ମୀନାରାୟଣଙ୍କ ଚାକିରୀ ଜୀବନର ପ୍ରାରମ୍ଭିକ କାଳ ଏବଂ ଶୋଚନୀୟ ଆର୍ଥିକ ସଂକଟର ସମୟ । ଏହି ସଂକଟରୁ ବାହାରି ଆସିବା ନିମନ୍ତେ ପ୍ରମଦାଙ୍କ ସହଯୋଗ ପ୍ରଣିଧାନଯୋଗ୍ୟ ।

ପରିଶିଷ୍ଟ-୬ ରେ ପତ୍ରସ୍ଥ ପ୍ରମଦାଙ୍କୁ ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ଲିଖିତ ଦୁଇଟି ପତ୍ରରୁ ସ୍ପଷ୍ଟ ବାରି ହୋଇପଡ଼େ ସେତେବେଳର ଆର୍ଥିକ ଦୁରବସ୍ଥା କଥା । ଆହୁରି ମଧ୍ୟ ଜଣାପଡ଼େ ଏହି ସମୟରେ ଲକ୍ଷ୍ମୀନାରାୟଣ କିପରି ପ୍ରମଦାଙ୍କ ଉପରେ ନିର୍ଭରଶୀଳ ଥିଲେ ଓ ପ୍ରମଦା ମଧ୍ୟ କିପରି ଧୈର୍ଯ୍ୟଧାରଣ କରୁଥିଲେ ।

---

* ଲକ୍ଷ୍ମୀନାରାୟଣଙ୍କ ବଡ଼ପୁଅ ଏହି ଲେଖକର ବାଲ୍ୟବନ୍ଧୁ ଆଦିନାରାୟଣ ମଧ୍ୟ କହୁଥିଲେ ଯେ 'ପ୍ରମଦା'ଙ୍କ ଲିଖିତ ଅନେକ କବିତା ସେ ଆବିଷ୍କାର କରିଛି ପାଣ୍ଡୁଲିପି ଆକାରରେ । ତେବେ ଆଦିନାରାୟଣ ବି ଆଜି ସ୍ୱର୍ଗରେ । ହୁଏତ ପ୍ରମଦାଙ୍କ କବିତା ଗୁଡ଼ିକ ସବୁଦିନ ପାଇଁ ଅଗୋଚରରେ ରହିଯିବ ।

ପରବର୍ତ୍ତୀ ସମୟରେ ଲକ୍ଷ୍ମୀନାରାୟଣ ନିଜ ପରିବାରକୁ ଚାକିରି ସ୍ଥାନ କଟକକୁ ଆଣିଥିଲେ । ପରିବାର କହିଲେ ଏହି ଦମ୍ପତି କେବଳ ନିଜକୁ ଓ ନିଜ ଜନ୍ମିତ ପିଲାମାନଙ୍କୁ ବୁଝୁ ନଥିଲେ । ସେମାନଙ୍କ ସହିତ ମାଆ ମହୁଡ଼ମଣି ଓ ଭାସ୍କର ବାବୁଙ୍କ ପୁଅ ରବିନାରାୟଣ ମଧ୍ୟ ସାଙ୍ଗରେ ଆସିଲେ । ରବିନାରାୟଣ କଟକରେ ରହି ପାଠ ପଢ଼ିଲେ । ଗାଁରେ ଭାସ୍କର ବାବୁ ଓ ତାଙ୍କ ସ୍ତ୍ରୀ ପୈତୃକ ସମ୍ପତ୍ତିର ରକ୍ଷଣାବେକ୍ଷଣ କରିବା ବେଳେ ପ୍ରମଦା ଶାଶୁଙ୍କର ଶୁଶ୍ରୂଷା ଓ ଦିଅରର ଯତ୍ନ ନେବାରେ ସାମାନ୍ୟତମ ବ୍ୟତିକ୍ରମ କରିନାହାନ୍ତି । ସାନଭାଇଟିର ଲେଖାପଢ଼ାରେ ଲକ୍ଷ୍ମୀନାରାୟଣ ବି କୌଣସି ବ୍ୟତିକ୍ରମ କରିନାହାଁନ୍ତି । ପ୍ରମଦାଙ୍କ ସହଯୋଗ ଓ ଆପଣାପଣ ତାଙ୍କୁ ବହୁ ଭାବରେ ସାହାଯ୍ୟ କରିଛି ।

କିନ୍ତୁ ଦଇବ ସହିଲା ନାହିଁ । ମାତ୍ର ଷୋହଳ ବର୍ଷର ଦାମ୍ପତ୍ୟ ଜୀବନ ଅତିବାହିତ କରିବା ପରେ ହଠାତ୍ ପ୍ରମଦାଙ୍କର ଅକାଳ ବିୟୋଗ ଘଟିଲା ୧୯୬୧ ମସିହାରେ । ବଡ଼ ପୁଅ ଆଦି ନାରାୟଣଙ୍କୁ ସେତେବେଳେ ମାତ୍ର ପନ୍ଦର ବର୍ଷ ବୟସ ।

ଏହି ଘଟଣାରେ ଲକ୍ଷ୍ମୀନାରାୟଣଙ୍କଠାରୁ ବେଶି ଭାଙ୍ଗି ପଡ଼ିଥିଲେ ତାଙ୍କର ସ୍ନେହମୟୀ ଜନନୀ ମହୁଡ଼ମଣି । ସେହିଦିନଠାରୁ ସେ ହିଁ ପିଲାମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନର ଦାୟିତ୍ୱ ନେଲେ । ସେ ଜାଣିଥିଲେ ଲକ୍ଷ୍ମୀନାରାୟଣଙ୍କ ସାରସ୍ୱତ ମନସ୍କ ପ୍ରକୃତିକୁ । ଲେଖାଲେଖିର ଝୁଙ୍କ୍ ଭିତରେ ପିଲାମାନେ ଅବହେଳିତ ହୋଇପଡ଼ିବା ବିଚିତ୍ର ନଥିଲା ।

ସେ ମଧ୍ୟ ପୁଅର ସୃଜନ କର୍ମ ପାଇଁ ନିଜକୁ ଗର୍ବିତା ମଣୁଥିଲେ ଓ ସେଥିନିମନ୍ତେ ତାଙ୍କୁ ପ୍ରୋତ୍ସାହିତ କରୁଥିଲେ । ତେଣୁ ଏହି ଦୁର୍ଦ୍ଦିନ ସମୟରେ ସେ ଯଦି ପିଲାମାନଙ୍କ ପ୍ରତ୍ୟକ୍ଷ ଦାୟିତ୍ୱ ନେଇ ନଥାଆନ୍ତେ ହୁଏତ ଲକ୍ଷ୍ମୀନାରାୟଣଙ୍କ ସାରସ୍ୱତ ସାଧନା ବିପର୍ଯ୍ୟସ୍ତ ହୋଇପଡ଼ିଥାଆନ୍ତା ।

ଲକ୍ଷ୍ମୀନାରାୟଣଙ୍କ ପାରିବାରିକ ଜୀବନରେ ତାଙ୍କ ମାଆଙ୍କର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଖୋଦ୍ ଲକ୍ଷ୍ମୀନାରାୟଣ ଅତି ନିକଟରୁ ଦେଖିଥିଲେ; ତାଙ୍କୁ ମଣିଷ କରିବା ପାଇଁ ମାଆମନର ବ୍ୟାକୁଳତା, ପୁନଶ୍ଚ ସେଇ ବ୍ୟାକୁଳତା ସେ ଦେଖିଲେ ନାତି - ନାତୁଣୀମାନଙ୍କୁ ମଣିଷ କରିବା ପାଇଁ । ଲକ୍ଷ୍ମୀନାରାୟଣଙ୍କ ଭୂମିକାଟି ଥିଲା କେବଳ ସେମାନଙ୍କ ସ୍ଥୂଳ ଆବଶ୍ୟକତା ମେଣ୍ଟାଇବା । ଏକ ସାକ୍ଷାତକାରରେ ମା'ଙ୍କ ସମ୍ବନ୍ଧରେ ଲକ୍ଷ୍ମୀନାରାୟଣଙ୍କର ନିମ୍ନୋକ୍ତ ଅଶ୍ରୁସିକ୍ତ କଥନିକା ଏଠାରେ ଉଦ୍ଧାର କରାଯାଇପାରେ -

"ହଁ ମୋ ଜନ୍ମକଲା ମା । ମା' ମୋର ଆନନ୍ଦ ଦାୟିନୀ । ମା' ହିଁ ମୋ ପ୍ରେରଣାର ଉତ୍ସ । ମା ମୋତେ ବହୁତ ଭଲ ପାଏ । ସେ ଚାଲିଯିବା ପରେ ମୁଁ ନିଃସ୍ୱ ହୋଇଯାଇଛି ।×××

××× ହଁ ମା ବିଷୟରେ, ତା' ସ୍ନେହ ମମତାର ଅନାବିଳ ନିବିଡ଼ତା ମୋ ଲେଖାରେ ସ୍ଥାନ ପାଇଛି ।" (ଆଇନା - ୧୩ ମାର୍ଚ୍ଚ, ୨୦୦୫)

ଦୀର୍ଘ ତିରିଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ସରକାରୀ ଚାକିରୀ କରିବା ବେଳେ କଟକରେ ଅବସ୍ଥାନ କରି ଏହି ସମୟ ମଧ୍ୟରେ ଜଣେ ପ୍ରତିଷ୍ଠିତ ସାହିତ୍ୟକର ମର୍ଯ୍ୟାଦା ହାସଲ କରି

ସାରିଥିବା ସତ୍ତ୍ୱେ, ଲକ୍ଷ୍ମୀନାରାୟଣ ଅବସର ପରେ ଗାଁକୁ ଫେରି ଆସିଲେ ୧୯୭୮ ମସିହାରେ । ସେ ଚାହିଁଥିଲେ ଓଡ଼ିଆ ସାହିତ୍ୟର ପେଣ୍ଠ ବୋଲାଉଥିବା କଟକ ସହରରେ ଆପଣା ଘର ଖଣ୍ଡିଏ କରି ରହିଯାଇପାରିଥାଆନ୍ତେ ଏବଂ ତଦ୍ୱାରା ହୁଏତ ତାଙ୍କ ସାହିତ୍ୟିକ ଜୀବନର ପରାକାଷ୍ଠା ଆହୁରି ଉଜ୍ଜୀବିତ ହୋଇଥାଆନ୍ତା । କିନ୍ତୁ ମାଆଙ୍କର ଇଚ୍ଛାକୁ ସମ୍ମାନ ଜଣାଇ ସେ ଗାଁ ମାଟିକୁ ଫେରିଆସିଥିଲେ ।

ଲକ୍ଷ୍ମୀନାରାୟଣଙ୍କର ସେହି ସ୍ନେହମୟୀ ଜନନୀଙ୍କ ମୃତ୍ୟୁ ଘଟିଲା ୧୯୮୭ ମସିହାରେ, ତାଙ୍କ ଭିଟାମାଟି ଭଦ୍ରକସ୍ଥ ଜଗନ୍ନାଥପୁର ଗାଁରେ । ଲକ୍ଷ୍ମୀନାରାୟଣ କହନ୍ତି ତାହାଁ ହିଁ ତାଙ୍କ ଜୀବନର ସବୁଠୁ ବଳି ଶୋକାକୁଳ ସ୍ମୃତି । ପ୍ରକୃତରେ ମାତୃ ବିୟୋଗ ପରେ ସେ ଏକାନ୍ତ ଭାବରେ ନିଃସଙ୍ଗ ହୋଇପଡ଼ିଲେ ।

ସେତେବେଳକୁ ତାଙ୍କର ଦୁଇପୁଅ ନିଜ ନିଜର ସଂସାର ସହିତ ଆପଣା ଆପଣା ଚାକିରୀ ସ୍ଥାନରେ । ବଡ଼ପୁଅର କଟକର ବନବିଭାଗରେ ଚାକିରୀ । ସାନପୁଅ ପ୍ରତିଷ୍ଠିତ ଡ଼ାକ୍ତର ବାଲେଶ୍ୱରରେ । ଝିଅ ଦୁହିଁଙ୍କର ବିବାହ କୋଉକାଳୁ ସରିଥିଲା । ଲକ୍ଷ୍ମୀନାରାୟଣ କିନ୍ତୁ ଗାଁ ଛାଡ଼ି କାହାରି ପାଖରେ ଯାଇ ରହିବାକୁ ପ୍ରସ୍ତୁତ ନଥିଲେ ।

ତପୋବନରେ ନିଃସଙ୍ଗ ତପସ୍ୱୀଟିଏ ପରି ସେ ସୃଜନ କର୍ମରେ ମଗ୍ନ ଥିଲେ । ବ୍ୟକ୍ତିଗତ ପାଠାଗାରରେ ଗଚ୍ଛିତ ଅସଂଖ୍ୟ ପୁସ୍ତକ ଭିତରେ ହଜିଯାଉଥିଲେ । ସାତ ଆଠ ଘଣ୍ଟା ପଢ଼ିବା ଓ ଦୁଇ ତିନି ଘଣ୍ଟା ଲେଖାଲେଖି କରିବା ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ । ତା ଛଡ଼ା ଭଦ୍ରକର ସମସ୍ତ ସାହିତ୍ୟ, ସଂସ୍କୃତି ଅନୁଷ୍ଠାନ ସହିତ ସଂପର୍କ ଥିବା ଦୃଷ୍ଟିରୁ ସାଂଗଠନିକ କାର୍ଯ୍ୟକ୍ରମ ବି କମ୍ ନଥିଲା ।

ଏହିସବୁ ଭିତରେ ସେ ନିଜର ଭୋକ ଶୋଷ ଭୁଲି ଯାଉଥିଲେ, ଆହୁରି ମଧ ଭୁଲି ଯାଉଥିଲେ ନିଜର ବାର୍ଦ୍ଧକ୍ୟ ଜନିତ ଦୁର୍ବଳ ସ୍ୱାସ୍ଥ୍ୟକୁ । ଦୂର ସଂପର୍କୀୟା ବିଧବା ଭଉଣୀଟିଏ ଅବଶ୍ୟ ତାଙ୍କର ସେବା ଯତ୍ନ ନେବାକୁ ଆଗେଇ ଆସିଥିଲେ, ତଥାପି ଲକ୍ଷ୍ମୀନାରାୟଣ ନିଜକୁ ସବୁ ଜଂଜାଳରୁ ମୁକ୍ତ କରି କେବଳ ସାହିତ୍ୟ ସେବାରେ ହିଁ ଜୀଉଁଥିଲେ ।

ସାହିତ୍ୟ କର୍ମରେ କୌଣସି ବ୍ୟାଘାତ ହେଲାଭଳି ବାତାବରଣ ଲକ୍ଷ୍ମୀନାରାୟଣଙ୍କ ସଂସାରରେ ଘଟିବାକୁ ଦିଆଯାଉନଥିଲା, ଏହାହିଁ ଥିଲା ଲକ୍ଷ୍ମୀନାରାୟଣଙ୍କ ଗୃହସ୍ଥ ଜୀବନର ସବୁଠାରୁ ବଡ଼ ସଫଳତା ଏବଂ ଏହି ସଫଳତାର ଦୁଇ ନିପୁଣ କାରିଗର ଥିଲେ ମାଆ ମହୁଡ଼ମଣି ଓ ପତ୍ନୀ ପ୍ରମଦା ।

ହୁଏତ ସେହି କାରଣରୁ ମାତୃ ବିୟୋଗ ପରେ ଲକ୍ଷ୍ମୀନାରାୟଣ ନିଜକୁ ନିଃସ୍ୱ ମଣିଲେ ବି ଅଟକି ଯାଇ ନାହାଁନ୍ତି । ଅନ୍ତିମ ସମୟ ପର୍ଯ୍ୟନ୍ତ ସେ ନିଜକୁ ସାରସ୍ୱତ କର୍ମରେ ଲିପ୍ତ ରଖିପାରିଥିଲେ ।

# ଚାକିରି ଜୀବନ

୧୯୩୯ ମସିହାରୁ ୧୯୭୮ ମସିହା, ଦୀର୍ଘ ୩୯ବର୍ଷ କାଳ ଲକ୍ଷ୍ମୀନାରାୟଣ ଚାକିରି ଜୀବନ ଅତିବାହିତ କରିଥିଲେ । କୌଣସି ଠି ସେ ଏହି ଚାକିରୀ ଜୀବନର ଅନୁଭୂତି କଥା ଉଲ୍ଲେଖ କରି ନାହାଁନ୍ତି ।

ସେ ଜଣେ ଦକ୍ଷ ପୋଲିସ୍ ଭାବରେ କାର୍ଯ୍ୟ କରିଥିବାର ଶୁଣାଯାଏ । ମାଟ୍ରିକ ପାଶ୍ ପରେ ୧୯୩୭ରେ ସେ ଅଳ୍ପ ଦିନ ଭଦ୍ରକ 'ଡ଼ଗର' ଅଫିସ୍‌ରେ କାମ କରିଥିଲେ ଓ ତା' ପରେ ସର୍ଟହାଣ୍ଡ ଶିଖିବା ପାଇଁ କଲିକତାରେ ଛଅ ମାସ ଅବସ୍ଥାନ କରିଥିଲେ । ସେଠାରେ ଛଅ ମାସର ସର୍ଟହାଣ୍ଡ ପାଠ୍ୟକ୍ରମ ଶେଷ କରିବା ବେଳକୁ ତାଙ୍କୁ ବାଲେଶ୍ୱରରେ ପୋଲିସ୍ ବିଭାଗରେ ଷ୍ଟେନୋ ହିସାବରେ କାମଟିଏ ମିଳିଥିଲା, ଏହା ଆଗରୁ ଉଲ୍ଲେଖ କରାଯାଇଛି ।

ବାଲେଶ୍ୱରର ଚାକିରିଟି କିନ୍ତୁ ଅବୈତନିକ ଓ ଅସ୍ଥାୟୀ ଥିଲା । ତଥାପି ବିନା ବେତନରେ ଖାଇପିଇ ପଡ଼ି ରହିବାର ହେତୁ ଥିଲା - ଦିନେ ନା ଦିନେ ତାଙ୍କୁ ସ୍ଥାୟୀ ଚାକିରି ଖଣ୍ଡିଏ ମିଳିବ, ଯାହା ପାରିବାରିକ ଦୃଷ୍ଟିକୋଣରୁ ତାଙ୍କ ନିମନ୍ତେ ଏକାନ୍ତ ଜରୁରୀ ଥିଲା ।

ସେ ସମୟରେ .ପୋଲିସ୍ ବିଭାଗରେ ଚାକିରି କରିବାକୁ ସହଜରେ କେହି ରାଜି ହେଉନଥିଲେ । ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନର ତାହା ଶେଷ ପର୍ଯ୍ୟାୟ ଥିଲା । ବ୍ରିଟିଶ ସରକାର ଅଧୀନରେ ପୋଲିସ୍ ବିଭାଗରେ ଚାକିରି କରି ନିଜର ବିବେକ ବିରୁଦ୍ଧରେ ନିଜର ଭାଇ ବିରାଦରୀ ସଂଗ୍ରାମୀ ମାନଙ୍କୁ ଗିରଫ କରିବାକୁ ପଡୁଥିଲା, ସେମାନଙ୍କ ଉପରେ ଅତ୍ୟାଚାର କରିବାକୁ ପଡୁଥିଲା ।

ପୁନଶ୍ଚ ଭଦ୍ରକ ପରି କେତେକ ପ୍ରମୁଖ ଅଞ୍ଚଳରେ ଇଂରେଜ ମାନଙ୍କ ଚକ୍ରାନ୍ତର ଶିକାର ହୋଇ, ପୁରୁଷାନୁକ୍ରମିକ ଭାଇଚାରାର ପରମ୍ପରା ଭୁଲି ହିନ୍ଦୁ ଓ ମୁସଲମାନମାନେ ଗୋଷ୍ଠୀ ସଂଘର୍ଷରେ ଲିପ୍ତ ହେଉଥିଲେ ଓ ମଝିରେ ମଝିରେ ତାହା ଉଗ୍ରରୂପ ଧାରଣ କରୁଥିଲା । ଏହି ପରିସ୍ଥିତି ସ୍ଥାନୀୟ ପୋଲିସ୍ କର୍ମଚାରୀ ମାନଙ୍କୁ ଅଡୁଆରେ ପକାଉଥିଲା ।

ଲକ୍ଷ୍ମୀନାରାୟଣଙ୍କ ଭିଣୋଇ ବିନୋଦ ଚନ୍ଦ୍ର ଦାସ, ଲକ୍ଷ୍ମୀନାରାୟଣଙ୍କର ପାଖାପାଖି ସମବୟସ୍କ । ସେତେବେଳେ ସେ ମଧ୍ୟ ଚାକିରି ଖଣ୍ଡିଏ ଖୋଜୁଥିଲେ । ଏହି ଲେଖକ ନିଜେ ତାଙ୍କରି ମୁହଁରୁ ଶୁଣିଛି - ୧୯୩୮ ମସିହାରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଆଠଜଣ ପୋଲିସ୍ ଅଫିସର ଆକ୍ରୋଶ ମୂଳକ ଭାବରେ ଚାକିରିରୁ ନିଲମ୍ବିତ ହୋଇଥିଲେ । ସେମାନେ ଭଦ୍ରକର ହିନ୍ଦୁ ମୁସଲମାନ ଗୋଷ୍ଠୀ ସଂଘର୍ଷ ଓ ସତ୍ୟାଗ୍ରହୀମାନଙ୍କୁ ଦମନ କରିବାରେ ବିଫଳ ହୋଇଥିବାର ଦୋଷରେ ଏପରି ଦଣ୍ଡରେ ଦଣ୍ଡିତ ହୋଇଥିଲେ । ପୋଲିସ୍ ବିଭାଗରେ ଚାକିରି ଖଣ୍ଡିଏ ମିଳିଥିଲେ ବି ସେହି କାରଣରୁ ବିନୋଦ ବାବୁ ତାହା ପ୍ରତ୍ୟାଖ୍ୟାନ କରି ବହୁ ବିଳମ୍ବରେ ପୂର୍ତ୍ତ ବିଭାଗରେ ଚାକିରି କରିଥିଲେ । ଏ ସବୁ ସତ୍ତ୍ୱେ ପେଟପାଟଣାର ଦାୟରେ ସେହି ବିଭାଗରେ ସ୍ଥାୟୀ ନିଯୁକ୍ତିଟିଏ ପାଇଁ ଲକ୍ଷ୍ମୀନାରାୟଣ ପ୍ରସ୍ତୁତ ଥିଲେ ।

ସ୍ୱାଧୀନତା ସଂଗ୍ରାମ ପାଇଁ ତାଙ୍କର ଗଭୀର ଆନୁଗତ୍ୟ ଥିଲା । କିନ୍ତୁ ପାରିବାରିକ ଅଭାବ ଅସୁବିଧା କାରଣରୁ ଆନ୍ଦୋଳନରେ ଝାସ ଦେବା ସମ୍ଭବ ନଥିଲା । ଦାରୁଣ ଆର୍ଥିକ ପରିସ୍ଥିତି, ମାଆର ଅଶ୍ରୁଳ ଆଖି, ପରିବାର ପୋଷଣ ପାଇଁ ପିତୃ ପ୍ରତିମ ଦାଦାଙ୍କର ଆକୁଳ ଚିନ୍ତା ତାଙ୍କୁ ବ୍ୟଥିତ କରୁଥିଲା । ଏମିତି ପରିସ୍ଥିତିରେ ଈଶ୍ୱରଙ୍କ ଉପରେ ଭରସା ରଖି ଯେ କୌଣସି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ସେ ନିଜକୁ ପ୍ରସ୍ତୁତ କରୁଥିଲେ ।

ସତକୁ ସତ ସେହି ପୋଲିସ୍ ବିଭାଗରେ ସୁଦୂର କୋରାପୁଟରେ ତାଙ୍କୁ ସ୍ଥାୟୀ ଚାକିରିଟିଏ ମିଳିଲା, ଷ୍ଟେନୋଗ୍ରାଫର୍ ହିସାବରେ । ଉପକୂଳ ଅଞ୍ଚଳର ଲୋକଙ୍କ ପାଇଁ ସେତେବେଳେ କୋରାପୁଟ ଏକ ଅଗମ୍ୟ ଅଞ୍ଚଳ ଥିଲା । ସେ ଆଡ଼କୁ ଯିବା ପାଇଁ କେହି ସହଜରେ ରାଜି ହେଉ ନଥିଲେ । ମାଆ ଏବଂ ଦାଦା (ସାନ ବାବା) ତାଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ । ତଥାପି ସେମାନଙ୍କୁ ପ୍ରବୋଧନା ଦେଇ ଲକ୍ଷ୍ମୀନାରାୟଣ କୋରାପୁଟ୍‌ରେ ଯୋଗଦାନ କଲେ ।

ଦୁର୍ଗମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ କୋରାପୁଟ । ଘନ ଜଙ୍ଗଲ । ତାରି ଭିତରେ କାଠରେ ତିଆରି ଘର ତାଙ୍କର ପୋଲିସ୍ ଫାଣ୍ଡି । ଅଖିଆ ଅପିଆ ଅନେକ ଉଜାଗର ରାତି ବିତାଇବାକୁ ପଡ଼ିଛି ।

ଏହି ସମୟରେ ଘଟିଥିବା ଏକ ରୋମାଞ୍ଚକର ଘଟଣା । * କୌଣସି ଏକ ଗାଁରେ ବାଘଟିଏ ମାତିଥିଲା । ଗାଁ ମୁଣ୍ଡରେ ବାଘ ମାରିବା ପାଇଁ ମଞ୍ଚାଟିଏ ବନ୍ଧାଗଲା । ଏହି ମଞ୍ଚାରେ ଥାନା ବାବୁଙ୍କ ସହିତ ତାଙ୍କୁ ସାତ ରାତି ବିତାଇବାକୁ ପଡ଼ିଥିଲା । ଥାନା ବାବୁଙ୍କ ହାତରେ ବନ୍ଧୁକ, ତାଙ୍କ ହାତରେ କାଗଜ କଲମ । ଥାନାବାବୁ ବାଘ ମାରିବେ ଏବଂ ସେ ତା'ର ବିବରଣୀ ସରଜମିନ୍‌ରେ ଲିପିବଦ୍ଧ କରି ରଖିବେ ।

ଶେଷରେ କଲରାପତରିଆ ବାଘଟି ମଲା । କିନ୍ତୁ ତାହା ଥାନା ବାବୁଙ୍କ ଦକ୍ଷ ଶିକାରୀ ପଣରେ ନୁହେଁ । କୌଣସି ସ୍ଥାନୀୟ ଆଦିବାସୀଙ୍କ ଫାସରେ ପଡ଼ି ସେଥିରୁ ମୁକୁଳିବାକୁ ବିବ୍ରତ ହେଉଥିବାବେଳେ ଥାନାବାବୁ ତାଙ୍କୁ ଗୁଳି କରି ମାରିଦେଇଥିଲେ ।

୧୯୪୨ ମସିହାରେ ସେ ସମ୍ବଲପୁରକୁ ବଦଳି ହୋଇଯାଇଥିଲେ । ସେହି ସମୟରେ ସେଠାକାର ଏସ୍.ପି. ଥିଲେ 'ମନେମନେ' (ପ୍ରଥମ ଓଡ଼ିଆ ମନସ୍ତାତ୍ତ୍ୱିକ ଉପନ୍ୟାସ) ଉପନ୍ୟାସର ଲେଖକ ବୈଷ୍ଣବ ଚରଣ ଦାସ । ସେ ମଧ୍ୟ ଭଦ୍ରକ ବଙ୍କସାହିର ଲୋକ । ଲକ୍ଷ୍ମୀନାରାୟଣ ମନେ ମନେ ଖୁସି ହୋଇଥିଲେ, ନିଜେ ଜଣେ ତରୁଣ ଲେଖକ ଭାବରେ ବୈଷ୍ଣବ ଚରଣଙ୍କ ସାକ୍ଷାତ ସାନ୍ନିଧ୍ୟ ପାଇବେ । ଥରେ ଅଧେ ସାକ୍ଷାତ ଓ କଥାବାର୍ତ୍ତା ହୋଇଥିଲା । କିନ୍ତୁ ତାହା କେବଳ ସରକାରୀ ସ୍ତରର ଆଫିସିକ କଥାବାର୍ତ୍ତା । ଷ୍ଟେନୋ ପରି ଜଣେ ଅଧସ୍ତନ କର୍ମଚାରୀ ସହିତ ଏସ୍.ପି. ସାହେବଙ୍କ ସମ୍ପର୍କ ସେ କାଳରେ ଥିଲା ସୁଦୂର ପରାହତ ।

---

* ଲକ୍ଷ୍ମୀନାରାୟଣ ନିଜେ ଏହି କୌତୁକ ଘଟଣାଟି ଏହି ଲେଖକକୁ ଶୁଣାଇଥିଲେ ।

୧୯୪୫ ବେଳକୁ ତାଙ୍କୁ ପୋଲିସ୍‌ର ଭିଜିଲାନ୍‌ସ ବିଭାଗକୁ ବଦଳି କରାଯାଇ କଟକକୁ ପଠାଗଲା । ଷ୍ଟେନୋ ହିସାବରେ ତାଙ୍କର ଯାବତୀୟ ରିପୋର୍ଟ, ସଚ୍ଚୋଟ ପଣ ଓ ନିଷ୍ଠାପର କାର୍ଯ୍ୟପାଇଁ ତାଙ୍କୁ ଭିଜିଲାନ୍‌ସ ବିଭାଗ ନିମନ୍ତେ ଉପଯୁକ୍ତ ବୋଲି ବିବେଚନା କରାଗଲା । ନିଜର ସମଗ୍ର ଚାକିରି ଜୀବନରେ କର୍ତ୍ତବ୍ୟ ନିଷ୍ଠା ଓ ସାଧୁତାକୁ ଲକ୍ଷ୍ମୀନାରାୟଣ ବଜାୟ ରଖିଥିଲେ ।

ସମ୍ବଲପୁରରୁ କଟକ ଆସିବା ବେଳକୁ ତାଙ୍କର ଲେଖା ବିଭିନ୍ନ ପତ୍ରପତ୍ରିକା ମାନଙ୍କରେ ପ୍ରକାଶିତ ହୋଇ ସେ ଜଣେ ଭଲ ଗାଳ୍ପିକ ଓ ଔପନ୍ୟାସିକ ହିସାବରେ ସ୍ଥାନ ଲାଭ କରିସାରିଥିଲେ । ତେଣୁ ଆମ ସାହିତ୍ୟର ପ୍ରାଣକେନ୍ଦ୍ର କଟକକୁ ବଦଳି ହୋଇ ଆସିବା ଦ୍ୱାରା ସେ ବେଶ୍ ଆନନ୍ଦିତ ହୋଇଥିଲେ । ଏହି କଟକରେ ହିଁ ତାଙ୍କ ଚାକିରି କାଳ ଶେଷ ହେଲା ।

ତେବେ କଟକ ହିଁ ତାଙ୍କ ଚାକିରି ଓ ସାରସ୍ୱତ ସାଧନା ଉଭୟର କେନ୍ଦ୍ରସ୍ଥଳ ଥିଲା । ସେତେବେଳେ କଟକରେ ହିଁ ରାଜ୍ୟ ସଚିବାଳୟ ଓ ପୁଲିସ୍ ବିଭାଗର ମୁଖ୍ୟ ଦପ୍ତର ଥିଲା ।

ଏହି ସମୟରେ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନ । ନିର୍ବାଚନର ସ୍ୱତନ୍ତ୍ର କାର୍ଯ୍ୟକ୍ରମରେ ତାଙ୍କୁ ଗୁରୁଦାୟିତ୍ୱ ଦେଇ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ ଅଞ୍ଚଳକୁ ପଠାଯାଇଥିଲା । ଏହି କାର୍ଯ୍ୟ କେତେ ଦାୟିତ୍ୱସମ୍ପନ୍ନ ଓ କଷ୍ଟକର ବ୍ୟାପାର ଥିଲା ତାହା ତାଙ୍କର ଏକ ଚିଠିରୁ ଜଣାପଡ଼େ । ଏହି ଚିଠି ସେ ପଟ୍ଟାମୁଣ୍ଡାଇରୁ ପତ୍ନୀ ପ୍ରମଦାଙ୍କ ପାଖକୁ ଲେଖିଥିଲେ । (ପରିଶିଷ୍ଟ-୬, ଚିଠି ନଂ-୨. ରେ ଚିଠିଟି ପତ୍ରସ୍ଥ କରାଯାଇଛି ) । ଏହି ଚିଠିରୁ ଲକ୍ଷ୍ମୀନାରାୟଣଙ୍କ ତତ୍‌କାଳୀନ ଆର୍ଥିକ ସଂକଟର ସୂଚନା ମଧ୍ୟ ମିଳେ ।

ଦେଶର ପରବର୍ତ୍ତୀ ନିର୍ବାଚନ ୧୯୫୫ ମସିହାରେ । ସେତେବେଳ ପର୍ଯ୍ୟନ୍ତ ଜନସାଧାରଣଙ୍କ ଭିତରେ ଭୋଟ ଦେବାର ସଚେତନା ଆସି ନଥାଏ । ଆଜିକାଲି ନିର୍ବାଚନ କହିଲେ, ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଯେପରି ଶିହରିତ ହୋଇ ଉଠୁଛନ୍ତି, ସହରଠାରୁ ମଫସଲ ପର୍ଯ୍ୟନ୍ତ ଯେଉଁ ଉଦ୍ଦାମ ବାତାବରଣ ସୃଷ୍ଟି ହେଉଛି ସେତେବେଳେ ଅବସ୍ଥା ତାର ବିପରୀତ ଥିଲା । ଲୋକମାନେ ନିର୍ବାଚନ କହିଲେ ସନ୍ଦିଗ୍ଧ ଆଖିରେ ଚାହୁଁଥିଲେ, ସଚେତନ ନଥିଲେ । ଭୋଟ ଦେବା ପାଇଁ ସେମାନଙ୍କୁ ସଚେତନ କରିବାକୁ ପଡୁଥିଲା । କୋରାପୁଟ ପରି ଆଦିବାସୀ ବହୁଳ ଅଞ୍ଚଳର ଅବସ୍ଥା ତ ଆହୁରି ନିଆରା ଥିଲା ।

ପଟ୍ଟାମୁଣ୍ଡାଇ ଅଞ୍ଚଳରେ ପ୍ରଥମ ସାଧାରଣ ନିର୍ବାଚନ ସମୟରେ ଲକ୍ଷ୍ମୀନାରାୟଣ ଯେଉଁ କାର୍ଯ୍ୟ ଦକ୍ଷତାର ପରିଚୟ ଦେଇଥିଲେ, ସେହି ଆଧାରରେ ଏଥର ନିର୍ବାଚନରେ ତାଙ୍କୁ କୋରାପୁଟ ଅଞ୍ଚଳକୁ ପଠାଗଲା । ସୌଭାଗ୍ୟକୁ ଏହି ଅଞ୍ଚଳ ତାଙ୍କର ପୁରୁଣା କାର୍ଯ୍ୟସ୍ଥଳୀ ହୋଇଥିବାରୁ, ସେ ବିଶେଷ ଅସହଜ ମଣି ନଥିଲେ । ତଥାପି ଆଦିବାସୀ ମୁଖିଆମାନଙ୍କୁ ବୁଝାସୁଝା କରି ସେମାନଙ୍କ ଜରିଆରେ ବସ୍ତି ଲୋକମାନଙ୍କୁ ଭୋଟ ଦେବା ପାଇଁ ରାଜି କରାଇବା କାଠିକର ପାଠ ଥିଲା ବୋଲି ସେ କହୁଥିଲେ ।

ସ୍ୱାଧୀନତା ପରେ ଆଚାର୍ଯ୍ୟ ବିନୋବାଙ୍କ ଭୂଦାନ ଯଜ୍ଞ ସକ୍ରିୟ ହେଲା । ମହାତ୍ମା ବିନୋବା ପଦବ୍ରଜରେ ସାରା ଓଡ଼ିଶାରେ ଏହି ଯଜ୍ଞର କାର୍ଯ୍ୟକ୍ରମ କଲେ । ତାଙ୍କ ସହ ଶହ ଶହ ଭୂଦାନ

କର୍ମୀ ଓ ସାମ୍ବାଦିକ ପଦବ୍ରଜରେ ବିଭିନ୍ନ ସ୍ଥାନକୁ ଯାଉଥିଲେ । ପ୍ରବଳ ଜନସମାଗମ ହେଉଥିଲା ।

ଭିଜିଲାନ୍‌ସ ବିଭାଗ ତରଫରୁ ଏହି ପଦଯାତ୍ରା ପର୍ବର ଆଗୁଆ ତଦାରଖ ପାଇଁ ତାଙ୍କୁ ମୃତଏନ କରାଗଲା । ପ୍ରାୟ ବର୍ଷେ କାଳ ବିନୋବାଙ୍କ ସହିତ ସେ ସାରା ଓଡ଼ିଶା ଭ୍ରମଣ କରିଛନ୍ତି ।

କୌଣସି ସ୍ଥାନରେ କାର୍ଯ୍ୟକ୍ରମ ସ୍ଥିରୀକୃତ ହେଲେ ଲକ୍ଷ୍ମୀନାରାୟଣ କାର୍ଯ୍ୟକ୍ରମର ଦିନେ ଦୁଇଦିନ ଆଗରୁ ସେ ସ୍ଥାନରେ ପହଞ୍ଚି ପରିସ୍ଥିତି, ପରିବେଶ ଓ ପ୍ରସ୍ତୁତି ତଦାରଖ କରୁଥିଲେ ଓ ନିଜର ରିପୋର୍ଟ ମୁଖ୍ୟ ଦପ୍ତରକୁ ପଠାଉଥିଲେ । ଏହି ରିପୋର୍ଟ ଉପରେ ହିଁ ଗସ୍ତକ୍ରମ ଚୂଡ଼ାନ୍ତ ହେଉଥିଲା ।

ଏହି ସମୟ ମଧ୍ୟରେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ରମାଦେବୀ ଇତ୍ୟାଦିଙ୍କ ପରି ବହୁ ବିଶିଷ୍ଟ ମନୀଷୀ ମାନଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ତାଙ୍କୁ ମିଳିଥିଲା ଓ ଏହା ତାଙ୍କର ଭାବପ୍ରବଣ ଲେଖକ ଜୀବନକୁ ବେଶ୍ ପ୍ରଭାବିତ କରିଥିଲା ।

ଭୂଦାନ କର୍ମୀମାନଙ୍କ ସହିତ ବହୁସଂଖ୍ୟକ ସାମ୍ବାଦିକ, ଲେଖକ ଓ ବୁଦ୍ଧିଜୀବୀ ମଧ୍ୟ ଚାଲିଚାଲି ବୁଲୁଥିଲେ । ଏହି ଯଜ୍ଞ ସେମାନଙ୍କୁ ଅଭିଭୂତ କରିଥିଲା । କେତେଜଣ ବିଦେଶୀ ସାମ୍ବାଦିକ ମଧ୍ୟ ସେମାନଙ୍କ ସହିତ ସାମିଲ୍ ଥିଲେ । ଏହିପରି ଏକ ଇଂରେଜ ସାମ୍ବାଦିକ ଦମ୍ପତିଙ୍କ ସହିତ ଲକ୍ଷ୍ମୀନାରାୟଣଙ୍କ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା । ଏ ସମ୍ପର୍କରେ ପରବର୍ତ୍ତୀ ପରିଚ୍ଛେଦରେ ଉଲ୍ଲେଖ କରାଯାଇଛି ।

ଲକ୍ଷ୍ମୀନାରାୟଣ ପରବର୍ତ୍ତୀ ସମୟରେ ଭିଜିଲାନ୍‌ସ ବିଭାଗର ଇନସ୍‌ପେକ୍ଟର ପାହ୍ୟାକୁ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ସ୍ନେହ ପ୍ରବଣ ବ୍ୟବହାର, ଶୃଙ୍ଖଳିତ ପ୍ରଶାସନ ଓ ଆଦର୍ଶ ସମ୍ପନ୍ନ ବ୍ୟକ୍ତିତ୍ୱ ପାଇଁ ବିଭାଗର ସମସ୍ତେ ତାଙ୍କୁ ଗଭୀର ସମ୍ମାନ କରୁଥିଲେ । କିନ୍ତୁ ସମୟର ଚାହିଦା ମୁତାବକ ପଦୋନ୍ନତିର ଦୌଡ଼ରେ ସେ ପଛୁଆ ଥିଲେ ।

ତାଙ୍କ ସମୟର ଜଣେ ବରିଷ୍ଠ ପୋଲିସ୍ ପଦାଧିକାରୀ, ବିଶିଷ୍ଟ ସାହିତ୍ୟିକ ସ୍ୱର୍ଗତ ଦୁର୍ଗାମାଧବ ମିଶ୍ରଙ୍କଠାରୁ ଏହି ଲେଖକ ତାଙ୍କର ଅନେକ ପ୍ରଶଂସା ଶୁଣିଛି । ସେ ଲକ୍ଷ୍ମୀନାରାୟଣଙ୍କୁ ଅତି ଶାନ୍ତ ସ୍ୱଭାବର ପୁଣି ଶୃଙ୍ଖଳିତ ପ୍ରଶାସକ ଭାବେ ସମ୍ମାନ କରୁଥିଲେ ଓ ସରକାର ତାଙ୍କ ପ୍ରତି ଅବିଚାର କରୁଛନ୍ତି ବୋଲି କହୁଥିଲେ । ସାହିତ୍ୟିକ ହିସାବରେ ସ୍ୱର୍ଗତ ଦୁର୍ଗାମାଧବ ମିଶ୍ର ଲକ୍ଷ୍ମୀନାରାୟଣଙ୍କୁ ଆଗଧାଡ଼ିର ଗାଳ୍ପିକ ଓ ଶ୍ରେଷ୍ଠ ଅନୁବାଦକ ବୋଲି କହୁଥିଲେ ।

ତେବେ ତାଙ୍କ ଚାକିରୀ ଜୀବନ କଥା ତାଙ୍କରି ଭାଷାରେ ଏତିକି କହିଲେ ଯଥେଷ୍ଟ ହେବ ଯେ- ଚାକିରି ଜୀବନର ପ୍ରଶାସନ, କ୍ଷମତା କେବେ ବି ତାଙ୍କ ସାରସ୍ୱତ ଜୀବନକୁ ବିଶୃଙ୍ଖଳ କରିନାହିଁ, ବରଂ ତାଙ୍କର ସାରସ୍ୱତ ଜୀବନ ଚାକିରୀ ଜୀବନକୁ ପ୍ରଭାବିତ କରି ଶାନ୍ତ ଓ ଶୃଙ୍ଖଳିତ ହେବାରେ ସହାୟକ ହୋଇଛି ।

❐

## ତୃତୀୟ ପରିଚ୍ଛେଦ

# ସାହିତ୍ୟ : କୃତି ଓ କୀର୍ତ୍ତି

ଲକ୍ଷ୍ମୀନାରାୟଣଙ୍କ ତମାମ ଜୀବନ ବିତିଯାଇଛି ସାରସ୍ୱତ ସାଧନାରେ। ଜୀବନ ବ୍ୟାପୀ ଯେତେ ଯାହା କର୍ମ କରିଛନ୍ତି, ସେ ବୃତ୍ତିଗତ ହେଉ ବା ସଂସାରଗତ, ପ୍ରକୃତି ଗତ ହେଉ କି ପ୍ରବୃତ୍ତି ଗତ, ସେ ସବୁରି ଭିତରେ ସାରସ୍ୱତ କର୍ମଟି ଢ଼େଙ୍ଗା ହୋଇ ବାରି ହୋଇ ପଡ଼େ । ସତେ ଯେମିତି ତାଙ୍କ ଚିନ୍ତା ଓ ଚେତନା ଭିତରେ, ଆଚରଣରେ, ସ୍ୱପ୍ନରେ ସବୁଠି ସାହିତ୍ୟ ହିଁ ଥିଲା ଏକମାତ୍ର ଧ୍ୟେୟ ଓ ଶ୍ରେୟ । ସଂସାର ଭିତରେ ରହି ସେ ଜଞ୍ଜାଳ ଗ୍ରସ୍ତ ହୋଇଛନ୍ତି, କର୍ମକ୍ଷେତ୍ରକୁ ଯାଇ ଜୀବିକାର୍ଜ୍ଜନ କରିଛନ୍ତି, କିନ୍ତୁ ସବୁ ଯେମିତି ହଜିଯାଇଛି ସାହିତ୍ୟ ସାଧନାର ଯଜ୍ଞ ବେଦୀରେ । ଜୀବନକୁ ସାମ୍ନା କରିବା ପାଇଁ ଏହି ସାହିତ୍ୟ ଦେଇଛି ତାଙ୍କୁ ନବ ଉନ୍ମାଦନା ।

ତାଙ୍କୁ ସାହିତ୍ୟରେ ସଫଳତା ମିଳିଥିଲା କି ନାହିଁ, ତାହା ପାଠକ ଗୋଷ୍ଠୀହିଁ କହିବେ । ତେବେ କୌଣସି ପୁରସ୍କାର ବା ସମ୍ମାନକୁ ଅପେକ୍ଷା ନରଖି, କୌଣସି ଗୋଷ୍ଠୀ ବା ଲବି ଭିତରେ ନିଜକୁ ବାନ୍ଧି ନରଖି; କେବଳ ଲିଖନ, ପଠନ ଓ କିଛି ସାହିତ୍ୟ ସଂଗଠନର କାର୍ଯ୍ୟକ୍ରମ ମଧ୍ୟରେ ସେ ନିଜର ସମଗ୍ର ଜୀବନଟି ଅତିବାହିତ କରିଦେଲେ ଓ ତାହାରି ଭିତରେ ଶତାଧିକ ଗ୍ରନ୍ଥ ରଚନା ଓ ଅନୁସୃଜନ କରି ଆମ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଗଲେ ।

ମାତ୍ର ମାଟ୍ରିକୁଲେସନ ପର୍ଯ୍ୟନ୍ତ ଶିକ୍ଷାଗତ ଯୋଗ୍ୟତା ଥିବା ସତ୍ତ୍ୱେ, ସେ ପୃଥିବୀର ଅଧିକାଂଶ ଭାଷାର ବଛା ବଛା ଗଳ୍ପ ଓ ଉପନ୍ୟାସକୁ ସଫଳତାର ସହିତ ଓଡ଼ିଆରେ ଅନୁବାଦ (ଅନୁସୃଜନ) କରିଛନ୍ତି ଓ ସେଥି ନିମନ୍ତେ ତାଙ୍କୁ ଓଡ଼ିଆ ଅନୁବାଦ ସାହିତ୍ୟର 'ପ୍ରବାଦ ପୁରୁଷ' ବୋଲି କୁହାଯାଏ । ତେବେ ଅନୁବାଦ ସାହିତ୍ୟରେ ହାତ ଦେବା ପୂର୍ବରୁ ସେ ମୌଳିକ ଗଳ୍ପ ଓ ଉପନ୍ୟାସ ଲେଖି ତତ୍କାଳୀନ ଓଡ଼ିଆ ଗଦ୍ୟ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏକ ପ୍ରମୁଖ ସ୍ଥାନ ଅଧିକାର କରିଥିଲେ ।

ଏହି ଅଧ୍ୟାୟରେ ତାଙ୍କର ସାହିତ୍ୟ କୃତିର ଆମେ କିଂଚିତ ଆଲୋଚନା କରିବା ।

### ଗଳ୍ପ :

ଲକ୍ଷ୍ମୀ ନାରାୟଣ ପ୍ରଥମେ ମୌଳିକ ଗଳ୍ପ ଏବଂ ପରେ ପରେ ମୌଳିକ ଉପନ୍ୟାସରୁ ହିଁ ଲେଖକ ଜୀବନ ଆରମ୍ଭ କରିଥିଲେ । ମାତ୍ର ୨୦ ବର୍ଷ ବୟସରେ ତାଙ୍କର ପ୍ରଥମ ଗଳ୍ପ 'ଶିଳ୍ପୀ'

'ଡ଼ଗର' ପତ୍ରିକାରେ ୧୯୩୮ରେ ପ୍ରକାଶିତ ହୋଇଥିଲା । ସେତେବେଳେ 'ଡ଼ଗର'ର ପ୍ରତିଷ୍ଠାତା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ନିଜେ ପତ୍ରିକାର ସମ୍ପାଦନା କରୁଥିଲେ । ଏହି ଗଳ୍ପଟି ନୋବେଲ୍ ଲରିଏଟ୍ ଚେଖଭ୍‌ଙ୍କର କୌଣସି ଗଳ୍ପର ଛାୟାରେ ଲିଖିତ । ୧୯୩୯ରୁ ୧୯୪୦ ମସିହାରେ ଡ଼ଗର ପତ୍ରିକାରେ ତାଙ୍କର କେତୋଟି ଗଳ୍ପ ପ୍ରକାଶିତ । ଏହି ଗଳ୍ପ ଗୁଡ଼ିକ ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ନୈବେଦ୍ୟ' ରେ ସଂକଳିତ ହୋଇଛି । ୧୯୪୦ ମସିହାରେ 'ଜଗନ୍ନାଥ ସାହିତ୍ୟ ସଂସଦ' ଭଦ୍ରକ ଏହାକୁ ପ୍ରକାଶ କରିଥିଲେ । ବର୍ତ୍ତମାନ ଏହି ସଂକଳନଟି ଦୁଃଷ୍ପ୍ରାପ୍ୟ ।

ତାଙ୍କର ପ୍ରଥମ ମିନି ଗଳ୍ପ 'ଅନୁରକ୍ତି' ପ୍ରକାଶିତ ହୁଏ ୧୯୪୧ ମସିହାରେ 'ସହକାର' ପତ୍ରିକାରେ । ସେତେବେଳେ ସହକାର ପତ୍ରିକାର ସମ୍ପାଦନା କରୁଥିଲେ ପଦ୍ମଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଯିଏ ଲକ୍ଷ୍ମୀନାରାୟଣଙ୍କୁ ଏହି ଗଳ୍ପ ପାଇଁ ଭୂୟସୀ ପ୍ରଶଂସା କରିଥିଲେ । ବସ୍ତୁତଃ ଏହା ପରେ କ୍ଷୁଦ୍ର ଗଳ୍ପ ଲେଖକ ହିସାବରେ ସେ ପ୍ରସିଦ୍ଧି ଲାଭ କରିବାକୁ ଲାଗିଲେ । ଅତି କମ୍ ଶବ୍ଦରେ ଗୋଟିଏ ଭାବ ଓ କାହାଣୀକୁ ପରିସ୍ଫୁଟ କରିବାର ଧାରାଟିଏ ଓଡ଼ିଆ ଗଳ୍ପରେ ତାଙ୍କଠି ଠାରୁ ଆରମ୍ଭ ହୋଇଥିଲା ବୋଲି ଅନେକେ ମତ ଦିଅନ୍ତି ।

ଏହାପରେ ଲକ୍ଷ୍ମୀନାରାୟଣଙ୍କ ଗଳ୍ପ ନିୟମିତ ଭାବରେ 'ସହକାର', 'ଡ଼ଗର' ଓ 'ଉଦୟ' ଇତ୍ୟାଦି ସମ୍ଭ୍ରାନ୍ତ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ସେତେବେଳେ ଏହି ସବୁ ପତ୍ରିକାର ନିୟମିତ ଗାଳ୍ପିକ ଥିଲେ ଗୋପୀନାଥ, କାହ୍ନୁଚରଣ, ସୁରେନ୍ଦ୍ର, ନିତ୍ୟାନନ୍ଦ, ବ୍ରହ୍ମାନନ୍ଦ ଓ ଅନନ୍ତ ପଣ୍ଡା ପ୍ରମୁଖ । ନିଜେ କାଳିନ୍ଦୀ ଚରଣ ମଧ୍ୟ ଗପ ଲେଖୁଥିଲେ । ଏହି ବିଶିଷ୍ଟ ଗାଳ୍ପିକ ମାନଙ୍କ ସହ ତାଳ ଦେଇ ଲକ୍ଷ୍ମୀନାରାୟଣଙ୍କ ଗଳ୍ପ, ବିଶେଷ କରି ମିନି ଗଳ୍ପ ବେଶ୍ ଆଦୃତ ହେଉଥିଲା । ତାଙ୍କ ଗଳ୍ପ ମାନଙ୍କର ବିଶେଷତ୍ୱ ଥିଲା - ସଂକ୍ଷେପ କଥନ, ଅଭିନବ ଶୈଳୀ ଓ ଭାବବସ୍ତୁ ଚୟନରେ ନୂତନତା ।

ଲକ୍ଷ୍ମୀନାରାୟଣଙ୍କ ଗଳ୍ପ ସଂକଳନ 'ଦେହ ନିଲାମ ହେଉଛି' (୧୯୫୯)ରେ ଆଶିର୍ବାଣୀ ଛଳରେ କାନ୍ତ କବି ଲକ୍ଷ୍ମୀକାନ୍ତ ଲେଖିଥିବା ଉକ୍ତିଟି ଏଠାରେ ପ୍ରଣିଧାନଯୋଗ୍ୟ ।

"××× ଅତି ସାନ ଗଳ୍ପ ଭିତରେ ଆର୍ଟ ଫୁଟାଇ ପାରିବା ଲକ୍ଷ୍ମୀନାରାୟଣ ବାବୁଙ୍କ ବିଶେଷତ୍ୱ । ଏତେ ଛୋଟ ଗଳ୍ପ ଆଉ କେହି ଲେଖି ନାହାନ୍ତି ଓଡ଼ିଆରେ । ତାଙ୍କ ଗଳ୍ପର ଶୈଳୀ ଓ ଭଙ୍ଗୀ ସମ୍ପୂର୍ଣ୍ଣ ଅଭିନବ ।"

ଏହି ପୁସ୍ତକର ଆଭାସରେ ଗାଳ୍ପିକ ନିଜେ ଲେଖିଛନ୍ତି -

"××× ଏ ସଂସାରର ରୂପ ବଦଳୁଛି, ଆଉ ତହିଁ ସଂଗେ ସାହିତ୍ୟର ଧାରା ମଧ୍ୟ । ଦିନ ଥିଲା, ଯେତେବେଳେ ମନୋରଞ୍ଜନ ପାଇଁ ଲୋକେ ରାତି ରାତି ବସି ଅଦ୍‌ଭୂତ ଗପ ଶୁଣୁଥିଲେ । ××× ଆଜିର ଜୀବନ ସଂଗ୍ରାମ କ୍ଷେତ୍ରରେ ମଣିଷ ସମୟକୁ ମାପି ଚାଲିଛି । ତେଣୁ ସେ ଚାହୁଁଛି ତାର ସୀମିତ ଅବସର ଭିତରେ ନିଜର ମାନସିକ କ୍ଷୁଧା ମେଣ୍ଟାଇବ । ସେଥିପାଇଁ ଆଧୁନିକ ସାହିତ୍ୟ ରାଜ୍ୟରେ ଅତି ସାନ ଗଳ୍ପର ଉଦ୍ଭାବନ ଏବଂ ତାର ଅସୀମ ଜନପ୍ରିୟତା ଅର୍ଜନ ।"

ତାଙ୍କ ଗଳ୍ପ ଯେତେ ଛୋଟ (ମିନି) ହେଲେ ବି ସେଥିରେ କାହାଣୀଟିଏ ଥାଏ, ଜଣେ ବା ଏକାଧିକ ଚରିତ୍ରଙ୍କ ଜରିଆରେ କିଛି ଘଟଣାର ପ୍ରବାହ ଭିତରେ କାହାଣୀଟି ବିକଶିତ ହୁଏ । କାହାଣୀର ଏହି ବିକାଶଧାରାରେ ସେ ଯେଉଁ ଶୈଳୀର ଉପଯୋଗ କରନ୍ତି, ସେହି ଶୈଳୀ ହିଁ ଗଳ୍ପଟିକୁ ଛୋଟ ବା ମିନି କରିଦିଏ, କିନ୍ତୁ ଗାଳ୍ପିକଙ୍କ ଉପଲବ୍ଧି ଓ ଆବେଗିକ ପରିପ୍ରକାଶ ଆଦୌ ବ୍ୟାହତ ହୁଏ ନାହିଁ । ସୁତରାଂ ପାଠକ ନିକଟରେ ଗଳ୍ପଟିର ଭାବବସ୍ତୁ ବା Theme ଦୁର୍ବୋଧ୍ୟ ହୋଇ ରହେ ନାହିଁ । ଲକ୍ଷ୍ମୀନାରାୟଣଙ୍କ ଭାଷାରେ "Plot ବା ଘଟଣା ବିନ୍ୟାସ ହେଉଛି ଗଳ୍ପର ଶରୀର, ଚରିତ୍ର ମାନେ ଗଳ୍ପର ମେରୁଦଣ୍ଡ ଏବଂ ଭାବବସ୍ତୁ ହେଉଛି ତାର ଆତ୍ମା ।" ତେଣୁ ଗଳ୍ପର ଭାବବସ୍ତୁ ଦୁର୍ବୋଧ ହେଲେ ତାହା ପାଠକକୁ ଛୁଇଁବ କିପରି ?

ମିନିଗଳ୍ପର ଏହି ଧାରା ପ୍ରାୟତଃ ଲକ୍ଷ୍ମୀନାରାୟଣଙ୍କ ଠାରୁ ହିଁ ଆରମ୍ଭ ହୋଇଥିଲା ବୋଲି କହିଲେ ଦ୍ୱିରୁକ୍ତି ହେବନାହିଁ । ବିଗତ ଶତାବ୍ଦୀର ଷାଠିଏ ସତୁରୀ ଦଶକରେ ଏହି ମିନି ଗଳ୍ପର ବହୁଳ ପ୍ରଚଳନ ପରିଲକ୍ଷିତ ହୁଏ । ଆଭାସ ଗଳ୍ପ, ସାଙ୍କେତିକ ଗଳ୍ପ, ଅଣୁଗଳ୍ପ ଓ ମିନି ଗଳ୍ପ ନାମରେ ଏହାକୁ ନେଇ ଏହି ସମୟ ମଧ୍ୟରେ ଅନେକ ଗାଳ୍ପିକ ନାନା ପ୍ରକାର ପରୀକ୍ଷା ନିରୀକ୍ଷା କରିଛନ୍ତି । ଅଥଚ ନିଜେ ଲକ୍ଷ୍ମୀନାରାୟଣ ସେତେବେଳକୁ ଗଳ୍ପ ଲେଖା ଛାଡି ଅନୁବାଦ କର୍ମକୁ ଆଦରି ନେଇଥିଲେ ।

'ଅନୁରକ୍ତି' ତାଙ୍କର ପ୍ରଥମ ମିନି ଗଳ୍ପ । ଏହି ଗଳ୍ପଟି ୧୯୪୧ରେ 'ସହକାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହା ମଧ୍ୟ 'ମଳୟ ବହିଲାଣି' ସଂକଳନରେ ସଂକଳିତ ହୋଇଛି । ଡିମାଇ ୧/୮ ବହିରେ ମାତ୍ର ଦେଢ ପୃଷ୍ଠା ମଧ୍ୟରେ ସୀମିତ ଏହି ଗଳ୍ପ । ସ୍ୱାର୍ଥନ୍ୱେଷୀ ମଣିଷ ଚରିତ୍ର, ସ୍ୱାର୍ଥପରତା ପାଇଁ କେମିତି ଗୋଟିଏ ଜରାଗ୍ରସ୍ତ ବୁଭୁକ୍ଷୁ କୁକୁର ଠାରୁ ବି ହୀନ ହୋଇପାରେ ତାହା ଅତି କଳାତ୍ମକ ଭାବରେ ଏହି ଗଳ୍ପରେ ଚିତ୍ରିତ ହୋଇଛି । ଆତ୍ମ ସଂଳାପଧର୍ମୀ ଏହି ଗପଟିରେ ମାତ୍ର ତିନୋଟି ଦୃଶ୍ୟପଟ । ପ୍ରଥମ ଦୃଶ୍ୟପଟରେ ନାୟକ "ମୁଁ" ଚାକିରି କ୍ଷେତ୍ରରେ ନିଜ ବସାଘରେ, ହୋଟେଲରୁ ମଗାଇ ଖାଇବାକୁ ବସିବାବେଳେ, ତାରବାର୍ତ୍ତା ଯୋଗେ ବାପାଙ୍କର ମୃତ୍ୟୁ ସମ୍ବାଦ ପାଆନ୍ତି । ବାପା ବହୁଦିନରୁ ଅସୁସ୍ଥ ଥିବା କାରଣରୁ, ସେ ଗାଁରେ ବାପାଙ୍କ ପାଖରେ ଆପଣା ପରିବାର ଛାଡି, ଏକୁଟିଆ ବସାଘରେ ରହୁଥିଲେ । ତାରାବାର୍ତ୍ତା ପାଇ ଅଗତ୍ୟା ହୋଟେଲରୁ ମଗାଯାଇଥିବା ଖାଦ୍ୟତକ ବାହାର ବାରଣ୍ଡାରେ ଶୋଇଥିବା ବୁଲା କୁକୁରଟି ପାଖରେ ଅଜାଡି ଦେଇ ସେ ଗାଁକୁ ବାହାରି ଯାଆନ୍ତି । ତା ପରେ ଦ୍ୱିତୀୟ ଦୃଶ୍ୟ ପଟ୍ଟ । ଗାଁରେ ବାପାଙ୍କର ଶୁଦ୍ଧିକର୍ମ ଶେଷ କରି ଫେରିବା ବାଟରେ ପିତୃ ଶୋକ ଜର୍ଜର ମନକୁ ସେ ସାନ୍ତ୍ୱନା ଦେଉଥିଲେ - ବାପା ସିନା ଚାଲିଗଲେ, ତେବେ ଯାହା ହେଉ ସାନ ଭାଇକୁ ଚାକିରୀ ଖଣ୍ଡେ ମିଳି ଯାଇଛି, ଯାହାକୁ ଘୋର ଆର୍ଥିକ ଦୁରାବସ୍ଥା ସତ୍ୱେ ଅତି କଷ୍ଟରେ ସେ ପାଠ ପଢାଇଥିଲେ । ବସା ଘରକୁ ଫେରି ଦେଖନ୍ତି ପୂର୍ବୋକ୍ତ କୁକୁରଟି ତାଙ୍କ ଘରକୁ ଜଗି ରହିଛି । ତୃତୀୟ ଓ ଶେଷ ଦୃଶ୍ୟ ପଟ୍ଟରେ ପ୍ରଥମ ଦୃଶ୍ୟର ପୁନରାବୃତ୍ତି । ଖାଇବାକୁ ବସିବା ବେଳେ ପୁଣି ଏକ ତାରବାର୍ତ୍ତା ।

ସ୍ତ୍ରୀଙ୍କ ପାଖରୁ ବାର୍ତ୍ତା ଆସିଛି - 'ଶିଘ୍ର ଆସ, ସାନ ଭାଇ ଭିନେ ହେବାକୁ ଚାହୁଁଛି' । ଏହି ତାର ବାର୍ତ୍ତା ପାଇ ଗଳ୍ପ ନାୟକଙ୍କ (ଲେଖକ ନିଜେ) ଅନ୍ତର୍ଦ୍ଦହିଁ ହୋଇଗଲା ବେଳେ ସେ ଲକ୍ଷ୍ୟ କରନ୍ତି, ପୂର୍ବୋକ୍ତ କୁକୁରଟି କୃତଜ୍ଞ ଦୃଷ୍ଟିରେ ତାଙ୍କୁ ଚାହିଁ ଲାଞ୍ଜ ହଲାଉଛି ।

ବେଶ୍ କଳାତ୍ମକ ଭାବରେ "କୁକୁର" ପରି ଏକ ମାନବେଇର ଚରିତ୍ରକୁ ଏହି ଗଳ୍ପରେ ପ୍ରତୀକ ଭାବରେ ବ୍ୟବହାର କରାଯାଇଅଛି ।

ସେହି ପରି 'ଭାତ' ଅନ୍ୟ ଏକ ମିନିଗଳ୍ପ । ଯେଉଁଥିରେ ସମାଜର ପ୍ରତି ସ୍ତରରେ ବଞ୍ଚିବା ପାଇଁ ସଂଗ୍ରାମର ଚିତ୍ର ଅତି ସୁନ୍ଦର ଭାବରେ ଅଙ୍କିତ ।

"ଫୁଲ ଓ କଢ" ଏକ ରୋମାଣ୍ଟିକ ମିନିଗଳ୍ପ, ବୟସ ଅନୁସାରେ ଅନୁଭବ ଓ ଅଭିଜ୍ଞତା ର ତାରତମ୍ୟ ଏହାର କଥା ବସ୍ତୁ ।

"ଆମେ" ସେହିପରି ଲେଖକଙ୍କର ଅନ୍ୟ ଏକ ମିନିଗଳ୍ପ ।

ଯଶ ରଙ୍କ ମଣିଷ ଚରିତ୍ର ମାନଙ୍କୁ ନେଇ ସେ ଅନ୍ୟ ଏକ ସାର୍ଥକ ମିନିଗଳ୍ପ ଲେଖିଥିଲେ; ଯାହାର ନାମ 'କଳାକାର' । ଗାଳ୍ପିକ, ଔପନ୍ୟାସିକ, ଚିତ୍ରକର, ଐତିହାସିକ, ଏମିତିକି ବୈଜ୍ଞାନିକ ସମସ୍ତେ ଯଶ, ପ୍ରତିଷ୍ଠା, ସମ୍ମାନ, ସମ୍ବର୍ଦ୍ଧନା ପଛରେ କେମିତି ଧାଇଁ ଛନ୍ତି ଏହି ଗଳ୍ପ ତାହାର ସୂଚନା ଦିଏ ।

ପୁଅ-ବୋହୂ, ଶାଶୁ-ଶ୍ୱଶୁର, ଙ୍କ ସମ୍ପର୍କ କୁ ନେଇ ଲିଖିତ ମିନିଗଳ୍ପ 'ବାର୍ଦ୍ଧକ୍ୟ' । ଗଳ୍ପର ନାୟକ ବୃଦ୍ଧ ହରିହରଙ୍କ ପାଖରେ ଥିବା ବାଡ଼ିଟିକୁ ପ୍ରତୀକ ଭାବରେ ବ୍ୟବହାର କରାଯାଇଛି ଏହି ଗଳ୍ପରେ ।

"ଜିହ୍ୱାଚ୍ଛେଦୀ" ଏକ ଶ୍ଳେଷାତ୍ମକ ମିନିଗଳ୍ପ । ମିଛ ଡାକ୍ତରୀ ସାର୍ଟିଫିକେଟ କୁ କେନ୍ଦ୍ର କରି ଲିଖିତ; ଏହି ଗଳ୍ପଟିର ଭାଷା ଅତ୍ୟନ୍ତ ସାବଲୀଳ ହେଲେ ମଧ୍ୟ ଏହାର ଅନ୍ତର୍ନିହିତ ଶ୍ଳେଷ ମନକୁ ଛୁଏଁ ।

ଲକ୍ଷ୍ମୀନାରାୟଣ ଯେତେ ମିନିଗଳ୍ପ ରଚନା କରିଛନ୍ତି, ସବୁ ଗଳ୍ପର ଆଲୋଚନା ଏଠାରେ ସମ୍ଭବ ନୁହେଁ । 'ସ୍ତମ୍ଭ', 'ଆଉ ନ ଦିଏ ଧରା', 'ବିବାହ ପରେ', 'ପୋଲିସ', 'ପତର' ଓ 'ବିଚାରାଳୟ' ଇତ୍ୟାଦି ଏହି ଶ୍ରେଣୀର ଗଳ୍ପ । ତେବେ ଏତିକି କୁହାଯାଇପାରେ ଯେ, ମିନିଗଳ୍ପ ଇରିଆରେ ସେ ପ୍ରତୀକାତ୍ମକ, ରୋମାଣ୍ଟିକ୍, ପାରିବାରିକ ଓ ସମସ୍ୟାମୂଳକ, ଏପରି ଭିନ୍ନଭିନ୍ନ ସ୍ୱାଦର ଗଳ୍ପ ପରିବେଷଣ କରିବାରେ ସଫଳ ହୋଇଛନ୍ତି ।

ମିନି ଗଳ୍ପକୁ ବାଦ ଦେଲେ, ଲକ୍ଷ୍ମୀନାରାୟଣ ଆହୁରି ଅନେକ ସମସ୍ୟା ଓ ସଂସ୍କାର ମୂଳକ, ସାମାଜିକ ଓ ଐତିହାସିକ ଗଳ୍ପ ମଧ୍ୟ ଲେଖିଛନ୍ତି ।

'ଦେହ ନିଲାମ ହେଉଛି' ଏକ ସାମାଜିକ ସଂସ୍କାରମୂଳକ ଗଳ୍ପ । ଏହି ଗଳ୍ପଟିର ରଚନା କାଳ ୧୯୫୪ ମସିହା । ସେତେବେଳେ ମଧ୍ୟ ଆମ ସମାଜରେ ଯୌତୁକ ପ୍ରଥା କନ୍ୟାପକ୍ଷର ପିତାମାତାଙ୍କ ପାଇଁ ଦୁର୍ବିସହ ଥିଲା । ଏହି ପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରି ଲକ୍ଷ୍ମୀନାରାୟଣ ଏହି ଗଳ୍ପଟି ବେଶ ନାଟକୀୟ ଢଙ୍ଗରେ ଲେଖିଛନ୍ତି ।

'ନାଗୁଣୀ ଓ ନବଜାତକ' ଗଳ୍ପର ନିମ୍ନୋକ୍ତ ସଂଳାପଟି ସମାଜର ସ୍ୱରୂପ ପଦାରେ ପକାଇ ଦିଏ ।

"ଜନପ୍ରିୟ ହେବା ସହଜ, ମାତ୍ର ସଚ୍ଚୋଟ ହେବା କଠିନ । ନିଜକୁ ଫାକି ଦେଇ ଅନ୍ୟ ନିକଟରେ ପ୍ରିୟ ହେବା ତାର ଇଚ୍ଛା ବିରୁଦ୍ଧ । କାମନା ନିର୍ଭୀକ ଓ ସ୍ୱାଧୀନ, ସେ ନିଜ ନିକଟରେ ଚିରଦିନ ଅମଳିନ ରହିବ ।"

ଗାଳ୍ପିକଙ୍କର ଏହି ସଂଳାପ, ଜଣେ ଆଦର୍ଶ ସମ୍ପନ୍ନ ବ୍ୟକ୍ତିର ସଂଜ୍ଞା ନିରୂପଣ କରେ । ନିଜେ ନିଜ ନିକଟରେ ଅନାବିଳ ରହିବାର ଅର୍ଥ ଆପଣାର ବ୍ୟକ୍ତିତ୍ୱକୁ ଅକ୍ଷୁର୍ଣ୍ଣ ରଖିବା ଓ ତଥାକଥିତ ପୁରସ୍କାର, ତିରଷ୍କାର ପ୍ରତି ଉଦାସୀନ ରହିବା । (ଲକ୍ଷ୍ମୀନାରାୟଣଙ୍କ ନିଜସ୍ୱ ଜୀବନ ଶୈଳୀ ହିଁ ଏହାର ଜ୍ୱଳନ୍ତ ଉଦାହରଣ) ଗଳ୍ପ ମାଧମରେ ଲେଖକଙ୍କର ଏହି ବାର୍ତ୍ତା 'ନାଗୁଣୀ ଓ ନବଜାତକ' ଗଳ୍ପରେ ସଫଳ ଭାବେ ରୂପାୟିତ ହୋଇ ପାରିଛି ।

ଲକ୍ଷ୍ମୀନାରାୟଣଙ୍କ ଅନ୍ୟ ଏକ ସାର୍ଥକ ଗଳ୍ପ 'ଛବିର ଶ୍ରେଷ୍ଠ ଦାନ' । ଜଣେ ଗାଳ୍ପିକଙ୍କ ପ୍ରବଣତାରେ ଭିଜା ଭିଜା ଏ କାହାଣୀ । ଜଣେ ସଫଳ ଗାଳ୍ପିକ ଜୈନେନ୍ଦ୍ର କୁମାର ଏ ଗଳ୍ପର ନାୟକ । ଗଳ୍ପ ଲେଖିବାକୁ ସେ ଘଟଣା ଖୋଜନ୍ତି ନାହିଁ । ଘଟଣାମାନେ ତାଙ୍କୁ ଧରା ଦିଅନ୍ତି । ଯେ କୌଣସି ଘଟଣାକୁ ନେଇ ସେ ଅନବରତ ଗପ ଲେଖୁ ଲେଖୁ ତାଙ୍କର ଦୃଷ୍ଟିଶକ୍ତି ନଷ୍ଟ ହୁଏ । ତଥାପି ପୃଥିବୀର ଶ୍ରେଷ୍ଠ ଗପଟିଏ ଲେଖିବାର ପ୍ରବଣତା ତାଙ୍କର ଶଙ୍କିଯାଏ ନାହିଁ । ଚାରୁଶୀଳା ପତ୍ନୀ ତାଙ୍କ ପାଖେ ପାଖେ ରହି ତାଙ୍କ ଆଖିର କାମ କରନ୍ତି । ତାଙ୍କରି ସହାୟତାରେ ଏଣିକି କାଳି କଲମ ଛାଡି ଗାଳ୍ପିକ ସିଧା ସଳଖ ଗଳ୍ପ ସବୁ ଟାଇପ୍ କରନ୍ତି । ପତ୍ନୀ ଟାଇପ ମେସିନରେ ଟେପ ବଦଳାଇ ଦିଅନ୍ତି; ବାଁ ଡାହାଣକୁ କାଗଜ ସଜାଇ ରଖି ଦିଅନ୍ତି । ଦେଖି ପାରୁ ନ ଥିଲେ ବି ସ୍ୱଚ୍ଛନ୍ଦରେ ତାଙ୍କ ଆଙ୍ଗୁଠି ଟାଇପ ମେସିନରେ ମନ ଓ କଳ୍ପନାର ତାଳେ ତାଳେ ଚାଲନ୍ତି । ଏମିତି ହଠାତ୍ ଦିନେ ବ୍ରାହ୍ମ ମୁହୂର୍ତ୍ତରେ ଅବଚେତନ ଅବସ୍ଥାରେ ଗାଳ୍ପିକ ଅନୁଭବ କରନ୍ତି, ସବୁଠୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଓ ପ୍ରସଙ୍ଗ ତାଙ୍କ ଅନ୍ତରାତ୍ମାକୁ ଛୁଇଁଛି । ସେହି ଅବସ୍ଥାରେ ଉଠି ଆସି ଅଭ୍ୟାସ କ୍ରମେ ସେ ଟାଇପ କରି ଚାଲନ୍ତି ପୃଷ୍ଠା ପରେ ପୃଷ୍ଠା । ପତ୍ନୀ ନିଦ୍ରିତା । ରୋମାଞ୍ଚରେ ଉଲ୍ଲସିତ ଗାଳ୍ପିକଙ୍କ ଆଙ୍ଗୁଳି ଅଗରେ ସବୁ ଶବ୍ଦ, ସଂଳାପ, ଦୈବୀ ପ୍ରେରିତ ଭାବରେ ଧରା ଦେଉଥାଆନ୍ତି । ଲକ୍ଷ୍ମୀନାରାୟଣଙ୍କ ଭାଷାରେ, "ସେ ଗପ ଲେଖୁ ନାହାନ୍ତି, ଗପ ତାଙ୍କ ଭିତର ଦେଇ ନିଜେ ଲେଖିହୋଇ ଆତ୍ମପ୍ରକାଶ କରିବାରେ ବ୍ୟଗ୍ର ହୋଇ ଉଠୁଛି ।"

କାହାଣୀଟି ଚରମ ବିନ୍ଦୁରେ ପହଞ୍ଚି ଚମତ୍କାର ପରିସମାପ୍ତି ଲଭିଲା । ଲେଖକ ସ୍ୱଗତୋକ୍ତି କଲେ- "ମୁଁ ପୃଥିବୀର ଶ୍ରେଷ୍ଠ କାହାଣୀ ଆଜି ଲେଖିଛି" । ପତ୍ନୀ ଧାଇଁ ଆସିଲା ବେଳକୁ ଗାଳ୍ପିକ ଅବଶ ହୋଇ ଚଉକିରେ ଢଳି ପଡନ୍ତି । ଏ ପଟରେ ପତ୍ନୀ ଦେଖନ୍ତି ଗତ ରାତିରେ ଟାଇପ ମେସିନର ରିବନ ବାହାର କରି ଦେବା ପରେ ନୂଆ ରିବନ ଲାଗି ନାହିଁ; ଫଳ ସ୍ୱରୂପ ବାମ ପଟର ସାଦା କାଗଜ ଗୁଡିକ ଟାଇପ ମେସିନ ପେଟ ର ଗଳି ଅକ୍ଷତ ଭାବରେ ଡାହାଣ ପଟରେ

ଜମା ହୋଇଛନ୍ତି । କିନ୍ତୁ ତାଙ୍କ ଶ୍ରେଷ୍ଠ ଗଳ୍ପର ଏହି ହତଶ୍ରୀ ଦେଖିବାକୁ ଗାଳ୍ପିକ ନିଜେ ଆଉ ଜୀବନରେ ନାହାନ୍ତି ।

ଏହି ଗଳ୍ପରେ ଜଣେ ଗାଳ୍ପିକର ପ୍ରବଣତା ଯେତିକି ଜୀବନ୍ତ, ଗଳ୍ପର ନାଟକୀୟ ଉତ୍କଣ୍ଠା ଓ ପରିଣତି ସେତିକି ହୃଦୟ ସ୍ପର୍ଶୀ ।

'ଉପହାର' ଗଳ୍ପରେ ଜଣେ ଆଦର୍ଶ ଶିକ୍ଷକ ନିଜର ବହୁ କଷ୍ଟ, ଉପାର୍ଜିତ ଅର୍ଥରେ ସ୍ତ୍ରୀଙ୍କ ଜନ୍ମଦିନ ଉପହାର ସ୍ୱରୂପ ସୁନା ଚେନଟିଏ କିଣିବାକୁ ଗଲା ବେଳେ; ଜଣେ ଭଲ ଛାତ୍ରର ଉଚ୍ଚଶିକ୍ଷା ପାଇଁ ଅର୍ଥାଭାବର ଦୁଃଖ ତାଙ୍କୁ ଆନ୍ଦୋଳିତ କରେ । ସେ ପତ୍ନୀଙ୍କ ପାଇଁ ହାର ବଦଳରେ ଛାତ୍ରର ଶିକ୍ଷା ପାଇଁ ସେହି ଅର୍ଥ ବିନିଯୋଗ କରି ପତ୍ନୀଙ୍କୁ କହନ୍ତି -

"ସତରେ ବିକାଶର ଗୋଟାଏ ବଡ ବାଧା ଘୁଞ୍ଚିଗଲା । ଦେଖିବ, ଏଣିକି ତାର ଭବିଷ୍ୟତ କେତେ ଉଜ୍ଜ୍ୱଳ ହେବ । ତୁମର ଉପହାରର ଅର୍ଥ ତୁମ ପାଇଁ ଗୋଟାଏ ମହତ ଆଦର୍ଶ କିଣି ଆଣି ପାରିଛି । କ'ଣ ଏଥିରେ ତୁମର ଖୁସି ତ ?"

'ଲୁଥରୁ' ଗଳ୍ପରେ ନାୟକ ଲୁଥରୁ ସେହିପରି ଏକ ଆଦର୍ଶ ଚରିତ୍ର । ସରକାରୀ ଅର୍ଥାଗାରର ଜଗୁଆଳି ଲୁଥରୁ କର୍ତ୍ତବ୍ୟ ପରାୟଣାତାର ଚରମ ପରିଚୟ ଦେଇ ତା ବାପା ଉପରକୁ ଗୁଳି ଚଳାଏ ।

ଦେହ ଚେତନାକୁ ନେଇ ଅତି ସଂଭ୍ରମ ଓ କଳାତ୍ମକ ଭାବରେ ଲକ୍ଷ୍ମୀନାରାୟଣ କେତୋଟି ଗଳ୍ପ ରଚନା କରିଛନ୍ତି ।

ଗୋଟିଏ ଉଦାହରଣ-

"ସେତେବେଳେ ମୁଁ ସପନ ପୁରୀ ରଚନା କରୁଥିଲି । କିନ୍ତୁ ଯୌବନ ମୋର ବାଲିଘର ପରି ଉଜୁଡିଗଲା । ବଡ ହେଲାରୁ ଜାଣିଲି ଯେ ସୋହାଗ ମୋର ସରି ଯାଇଛି । ଜୋର୍‌ରେ ହସିଦେଲି । ଉଭେଇ ଗଲା ମୋ ସୋହାଗ । ଥିଲା କେବେ, ଗଲା କେବେ ? ମୋ ବାପା ତ ସେ ଖେଳ ଖେଳୁଥିଲେ ।

ତାଙ୍କ ଖେଳ ସରିଗଲା, ଆଜି ମୋ ହୃଦୟ ଜଳି ପୋଡି ଯାଉଛି । × × × ଆଜି ସେ ବିଧବା । ତା ଭିତରେ ବୁଭୁକ୍ଷାର ଅନଳ ହୁ ହୁ ହୋଇ ଜଳେ । (ମଳୟ ବହିଲାଣି-ପୃ.୪୬)

'ପତି ପରମ ଗୁରୁ' ଗଳ୍ପର ଉପରୋକ୍ତ ଉଦ୍ଧୃତିରେ ଜଣେ ବାଲ୍ୟ ବିଧବାର କାରୁଣ୍ୟ ସହିତ ତା ଦେହାସକ୍ତିକୁ ସନ୍ତୁଳିତ ଭାବରେ ଉପସ୍ଥାପିତ କରାଯାଇଛି ।

ପରକୀୟା ପ୍ରୀତି ଉପରେ ଆଧାରିତ 'କଣ୍ଟକେନୈବ କଣ୍ଟକମ୍'ପରି ଗଳ୍ପରେ ମଣିଷର ପ୍ରତିହିଂସା ପରାୟଣତା ଓ ଯୌନାକାଂକ୍ଷା ପ୍ରତିଫଳିତ ହୋଇଛି ।

ସମାଜରେ ମୁଖାପିନ୍ଧା ମଣିଷର ନଷ୍ଟ ଚରିତ୍ର ର ଦୃଷ୍ଟାନ୍ତ ମିଳେ ଭଣ୍ଡ ତପସ୍ୱୀ ଅଭିରାମ ବାବା ଚରିତ୍ରରୁ, ଗଳ୍ପ 'ଅଭିରାମ ବାବା'ରେ । 'ଭାତମୁଠେ' ଗଳ୍ପର ଦେବେନ୍ଦ୍ର 'ଖାଲିବୋତଲ' ଗଳ୍ପର ଶଙ୍କର, 'ତ୍ରିମୂର୍ତ୍ତୀ ଗଳ୍ପର' 'କ', 'ଖ','ଗ' ଚରିତ୍ର ଉଚ୍ଚଶିକ୍ଷିତ ବେକାର ଜୀବନର

ଦୃଷ୍ଟାନ୍ତ ଯୋଗ୍ୟ ଚରିତ୍ର । ଏପରିକି 'ବାର୍ଦ୍ଧକ୍ୟ' ଗଳ୍ପର ଅବସର ପ୍ରାପ୍ତ ବୃଦ୍ଧ ମଧ୍ୟ ପୁଅ ବୋହୂଙ୍କ ନିକଟରେ ଏକ ବେକାର ଚରିତ୍ର ଭାବରେ ଚିତ୍ରିତ ହୋଇଛନ୍ତି ।

'ଯାନ୍ତ୍ରିକ' ଗଳ୍ପରେ ନାଗେଶ୍ୱର ସିଂ ଖଟିଖିଆ ଶ୍ରମିକ ଶ୍ରେଣୀର ପ୍ରତିନିଧି ।

ଲକ୍ଷ୍ମୀନାରାୟଣଙ୍କ ଗଳ୍ପ ସମୂହରେ ନାରୀ ଚରିତ୍ରର ବୈଶିଷ୍ଟ୍ୟ ମଧ୍ୟ ଲକ୍ଷଣୀୟ ।

'ନୂଆବୋଉ' ଗଳ୍ପରେ ଦିଅର ପାଇଁ ଭାଉଜଙ୍କ ତ୍ୟାଗର ପଟାନ୍ତର ନାହିଁ । ସେହିପରି 'ତାଙ୍କୁ ଆହୁରି ଭଲପାଏ' ଗଳ୍ପରେ 'ରମାଦେବୀ' ଙ୍କ ପରି ଆଦର୍ଶ ହିନ୍ଦୁ ନାରୀର ଚରିତ୍ର ଦୃଷ୍ଟାନ୍ତ ମୂଳକ ହୋଇ ପାରିଛି ।

ମାତୃତ୍ୱ କୁ ନେଇ ଲକ୍ଷ୍ମୀନାରାୟଣ ରଚନା କରିଛନ୍ତି ଭିନ୍ନ ଶୈଳୀର କେତୋଟି ଗଳ୍ପ । 'ପତି ପରମ ଗୁରୁ' ଗଳ୍ପରେ ବାଲ୍ୟବିଧବା ବିମଳା ଅନ୍ୟ ନିକଟରେ ନିଜ ଦେହ ଦାନ କରିବାକୁ ବିଳାପ କରେ - "ମୁଁ ନାରୀ - ମାତା ହେବାକୁ ଚାହେଁ ।"

ମାତୃତ୍ୱ ହରାଇଥିବା ଅନୁରାଧା ଚରିତ୍ର 'ଗୋଟିଏ ସନ୍ଧ୍ୟା ଓ ସକାଳ' ଗଳ୍ପରେ; ନିଜର ସାନ ଭଉଣୀ ସହିତ ସ୍ୱାମୀଙ୍କର ଅବୈଧ ପ୍ରଣୟ ସମ୍ପର୍କ କଥା ଜାଣି ମଧ୍ୟ ସେମାନଙ୍କ ସନ୍ତାନକୁ କୋଳେଇ ନିଏ ମାତୃତ୍ୱର ଅଭିଳାଷରେ ।

"ବହ୍ନିଶିଖା" ଗଳ୍ପରେ ଜଣେ ଭିକାରୁଣୀ ବଳାତ୍କାରର ଶିକାର ହୋଇ ମାତୃତ୍ୱ ଲାଭ କରିବା ଫଳରେ ଆତ୍ମହତ୍ୟା କରିବାକୁ ଉଦ୍ୟତ ହୁଅନ୍ତେ ଭାବୀ ସନ୍ତାନର ମମତା ତାକୁ ଆତ୍ମହତ୍ୟାରୁ ନିବୃତ୍ତ କରେ ।

ଅନ୍ୟପକ୍ଷରେ 'କ୍ଷଣ କ୍ଷଣକେ ଆନ' ଗଳ୍ପରେ କୁଆଁରୀ କନ୍ୟାଟିଏ ଅବୈଧ ସନ୍ତାନର ମାଆ ହେବାର ଲଜ୍ଜାରେ ଆତ୍ମହତ୍ୟା କରେ । ପୁନଶ୍ଚ 'ନାଗୁଣୀ ଓ ନବଜାତକ' ଗଳ୍ପରେ ନାରୀ ଚରିତ୍ରଟି ଭରଣ ପୋଷଣର ଭୟରେ ସନ୍ତାନକୁ ଚଳନ୍ତା ରେଳ ତଳକୁ ଠେଲିଦିଏ ।

'ଅବବାହିକା' ଗଳ୍ପରେ ଚନ୍ଦ୍ରିକାଙ୍କ ଭିତରେ କାମନାସିକ୍ତ, ଗର୍ବିଣୀ ଓ ସ୍ୱେଚ୍ଛା ଚାରିଣୀ ନାରୀ ଚରିତ୍ରର କଳଙ୍କ ଉନ୍ମୋଚିତ ହୋଇଛି ।

ଲକ୍ଷ୍ମୀନାରାୟଣଙ୍କ ଗଳ୍ପରେ ଦୃଷ୍ଟାନ୍ତ ମୂଳକ ମାନବେତର ଚରିତ୍ରମାନେ ମଧ୍ୟ ପରିଦୃଶ୍ୟ ହୁଅନ୍ତି । 'ଅନୁରକ୍ତି' ଗଳ୍ପର କୁକୁର ଏହାର ପ୍ରଥମ ଦୃଷ୍ଟାନ୍ତ । 'ସହାବସ୍ଥାନ' ଗଳ୍ପରେ ମୂଷା ଓ ବିରାଡିଙ୍କ ଚରିତ୍ର ମଣିଷଙ୍କ ଠାରୁ ଅଧିକ ସମ୍ବେଦନଶୀଳ ଭାବେ ପ୍ରତିପାଦିତ ହୋଇଛନ୍ତି । "ସୋହାଗ" ଗଳ୍ପରେ ମଇନା ଚରିତ୍ର, 'ଭୂଆ' ଗଳ୍ପରେ ଶଙ୍କା (ବିଲେଇ) ଚରିତ୍ର ଇତ୍ୟାଦି ଆଦର୍ଶ ମାନବେତର ଚରିତ୍ର ମାନଙ୍କର ଦୃଷ୍ଟାନ୍ତ ମୂଳକ ଉଦାହରଣ ।

ଐତିହାସିକ ପଟଭୂମିରେ 'ନୟନାଞ୍ଜନ', 'ଇନ୍ଦ୍ରଧନୁ', 'ସିନ୍ଧୁମନ୍ଥନ' ଓ 'ଆଭରଣ' ପରି କେତୋଟି ଗଳ୍ପ ଲକ୍ଷ୍ମୀନାରାୟଣ ସଫଳତାର ସହ ରଚନା କରିଛନ୍ତି । "ନୟନାଞ୍ଜନ" ଗଳ୍ପର ତଥାଗତ ବୁଦ୍ଧ; ନିଜର ସାନଭାଇ ନନ୍ଦଙ୍କୁ କିପରି ସଂସାର ର ମାୟା ବନ୍ଧନରୁ ମୁକ୍ତ କରିବା ନିମିତ୍ତ ସାଧନାରେ ପ୍ରବୃତ୍ତ କରାଇଥିଲେ; ତାହା ଅତି ମାର୍ମିକ ଶୈଳୀରେ ବ୍ୟକ୍ତ ହୋଇଛି ।

ମୋଟାମୋଟି ୧୯୩୯ରୁ ୧୯୫୪-୫୫ ପର୍ଯ୍ୟନ୍ତ ସେ ଗଳ୍ପ ରଚନା କରୁଥିଲେ ଓ ଏହି ସମୟ ମଧ୍ୟରେ ତାଙ୍କ ଲିଖିତ ଗଳ୍ପ ଗୁଡିକୁ ବିଚାର କଲେ ସେ ଯେ ଜଣେ ପ୍ରଥିତ ଯଶା ଗାଳ୍ପିକ ତାହା ସ୍ୱୀକାର କରିବାକୁ ହେବ । ତାଙ୍କର କଳ୍ପନା ଶକ୍ତି ସ୍ୱଚ୍ଛନ୍ଦ ଥିଲା, ଚରିତ୍ର ଚୟନ ବାସ୍ତବ ଥିଲା । ତାଙ୍କ ଗଳ୍ପମାନଙ୍କରୁ ସୁତୀବ୍ର ଅଙ୍ଗିକାର ବଦ୍ଧତା ଓ ସାବଲୀଳ କଥନ ଭଙ୍ଗୀ ବାରି ହୋଇ ପଡୁଥିଲା ।

## ଉପନ୍ୟାସ :

ଲକ୍ଷ୍ମୀନାରାୟଣ ଆଠଖଣ୍ଡ ଉପନ୍ୟାସ ରଚନା କରିଥିଲେ । ଗଳ୍ପ ଓ ଉପନ୍ୟାସ ମଧ୍ୟରେ ତାରତମ୍ୟ ସମ୍ପର୍କରେ ଲକ୍ଷ୍ମୀନାରାୟଣ ନିଜେ କହୁଥିଲେ- "ଜୀବନର ଏକ ବିଶେଷ ମୁହୂର୍ତ୍ତ ଅଥବା ତତ୍‌କାଳୀନ ଏକ ବିଶେଷ ଘଟଣା କୁ ନେଇ ଗପଟିଏ ଲେଖାଯାଏ । କିନ୍ତୁ ଉପନ୍ୟାସ ଜୀବନର ଗତିପଥ ଓ ଜୀବନ ସହିତ ଗୁନ୍ଥା ସମାଜର ନାନା ବିଧ ତତ୍‌କାଳୀନ ଘଟଣାକୁ ନେଇ ଲେଖାଯାଏ । ତେଣୁ ଗଳ୍ପ ସ୍ଥିରଚିତ୍ର ଟିଏ ହୋଇଥିବା ବେଳେ ଉପନ୍ୟାସ ଚଳଚିତ୍ର ପରି ଅନେକ ପ୍ରବାହମାନ ଚିତ୍ରର ସମାହାର । ଗୋଟିଏ ବା ଏକାଧିକ ମୁଖ୍ୟ ଚରିତ୍ର ସହିତ ଆତଯାତ ଆହୁରି ଅନେକ ଚରିତ୍ର ଏବଂ ସେମାନଙ୍କ ଜୀବନର ଗତିପଥ ଭିତରେ ଘଟୁଥିବା ଅନେକ ଘଟଣା କୁ ସନ୍ତୁଳିତ ଭାବରେ ଉପସ୍ଥାପନ କରି ଗୋଟାଏ ଭାବବସ୍ତୁ ବା Theme କୁ ଉତ୍ତୀର୍ଣ୍ଣ କରାଇବା, ଉପନ୍ୟାସ ର ଲକ୍ଷ୍ୟ ।"

ଲକ୍ଷ୍ମୀନାରାୟଣ ୧୯୪୨ ମସିହାରୁ ୧୯୫୦ ମସିହା ଭିତରେ ୮ଖଣ୍ଡ ଉପନ୍ୟାସ ଲେଖି ତା ପରେ ପ୍ରାୟତଃ ଉପନ୍ୟାସ ଓ ଗଳ୍ପ ଲିଖନରୁ ସନ୍ୟାସ ନେଇଛନ୍ତି । ମନପ୍ରାଣ ଦେଇ ଅନୁବାଦ ଓ ଅନୁସୃଜନ କର୍ମରେ ପ୍ରବୃତ୍ତ ହେବା କାରଣରୁ ଏପରି ହୋଇଛି ବୋଲି କୁହାଯାଇ ପାରେ ।

ତେବେ ୧୯୭୧ ମସିହାରେ ସେ ପୁନଶ୍ଚ ଖଣ୍ଡିଏ ଉପନ୍ୟାସ 'କପଟପାଶା' ଭେଟି ଦେଇଛନ୍ତି ପାଠକମାନଙ୍କୁ । ଆନ୍ତର୍ଜାତିକ ସ୍ତରରେ ଗୋଟିଏ ଦେଶର ଗୁପ୍ତତଥ୍ୟ ସବୁ ଚୋରି କରି ଅନ୍ୟ ଦେଶକୁ ନେଇଯିବା, ଏହି ପକ୍ରିୟାକୁ ପ୍ରତିହତ କରିବା ପାଇଁ ଅର୍ନ୍ତଦେଶୀୟ ଗୁପ୍ତଚର ବାହିନୀ ଗଠିତ ହେବା; ଇତ୍ୟାଦି ଏହି ଉପନ୍ୟାସର କଥାବସ୍ତୁ । ରହସ୍ୟ, ରୋମାଞ୍ଚପୂର୍ଣ୍ଣ, ହେଲେ ମଧ୍ୟ ଏହାକୁ ସଠିକ ଭାବେ ଡିଟେକ୍‌ଟିଭ ଉପନ୍ୟାସ ବୋଲି କହିହେବ ନାହିଁ । ଏହାକୁ ଗୁପ୍ତଚର ଉପନ୍ୟାସ କୁହାଯାଇପାରେ । ଇତି ପୂର୍ବରୁ ଓଡିଆରେ ଏ ପ୍ରକାର ଉପନ୍ୟାସ ଲିଖିତ ବା ପ୍ରକାଶିତ ହୋଇ ନ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା ସମଗ୍ର ବିଶ୍ୱକୁ ଆତଙ୍କିତ କରିବା ଉତ୍ତାରୁ, ଦେଶ ବିଦେଶରେ ଗୁପ୍ତଚର ବୃତ୍ତିର ଭୂମିକା ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ଆଜିକାଲି ଭାରତ ବର୍ଷ ସମେତ ଦେଶ ବିଦେଶରେ ଏହି କଥାବସ୍ତୁ ଉପରେ ଆଧାରିତ ନାନା ବିଧ ଚଳଚିତ୍ର ମାନ ପ୍ରଦର୍ଶିତ ହେଉଛନ୍ତି । ହୁଏତ ପ୍ରାଚ୍ୟ ସାହିତ୍ୟର ବହୁଳ ଅନୁସୃଜନ ସମୟରେ ଲକ୍ଷ୍ମୀନାରାୟଣଙ୍କୁ

ଏହି ପରି କୌଣସି କାହାଣୀ ଗଭୀର ଭାବେ ପ୍ରଭାବିତ କରିଛି, ଯାହାର ଫଳ ସ୍ୱରୂପ ସେ ଏହି ଉପନ୍ୟାସ ଲେଖିଛନ୍ତି ।

ତେବେ ସମୟାନୁକ୍ରମିକ ଭାବେ ଆମେ ଏଠାରେ ତାଙ୍କ ଉପନ୍ୟାସ ସମୂହର କ୍ଷିପ୍ତ ଆଲୋଚନା କରିବା ।

'ହାତ କଡି' ତାଙ୍କର ପ୍ରଥମ ଉପନ୍ୟାସ (୧୯୪୨) । ନାମ କରଣରୁ ରହସ୍ୟ ଉପନ୍ୟାସ (ଡିଟେକ୍‌ଟିଭ)ପରି ମନେ ହେଉଥିଲେ ବି ପ୍ରକୃତ ପକ୍ଷେ ଏହା ଏକ ସାମାଜିକ କାହାଣୀ ପ୍ରଧାନ ଉପନ୍ୟାସ । ଧନଖୋର, ଲୋଭୀ ଜମିଦାରର ଋଣ ଗ୍ରହୀତାମାନଙ୍କ ପ୍ରତି କ୍ରୁର ଅବିଚାର ଓ ନିର୍ଯ୍ୟାତନା, ସମୟକ୍ରମେ ଜମିଦାରର ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ଏବଂ ଶେଷରେ ଜମିଦାର ହାତରେ ହାତକଡି, ଏହା ହିଁ ଉପନ୍ୟାସର କଥାବସ୍ତୁ । ଉପନ୍ୟାସଟିରେ ଫକୀର ମୋହନୀୟ ଚରିତ୍ର ଓ ସାମାଜିକ ଚିତ୍ରର ଛାପ ବାରିହୋଇ ପଡେ ।

ତାଙ୍କର ଦ୍ୱିତୀୟ ଉପନ୍ୟାସ 'ଚକ୍ରବ୍ୟୂହ' ମଧ୍ୟ ପାରିବାରିକ କାହାଣୀକୁ ନେଇ ଏକ ସାମାଜିକ ଉପନ୍ୟାସ, ୧୯୪୩ ମସିହାରେ ପ୍ରଗତି ସାହିତ୍ୟ ମନ୍ଦିର, କଟକଙ୍କ ଦ୍ୱାରା ପ୍ରକାଶିତ ।

ଆମ ଘରକରଣା ଭିତରେ ଯାହା ଯେମିତି ଘଟେ, ସମ୍ପତ୍ତି ବାଡିର ମୋହରେ ମଣିଷ ଯେମିତି ଅପକର୍ମ ସବୁ କରେ, ସେ ସବୁକୁ ଉପଜୀବ୍ୟ କରି ଏହି ଉପନ୍ୟାସଟି ରଚିତ । ସାନ ଭାଇ ଗଗନ ବିହାରୀ ଏକୁଟିଆ ପୈତୃକ ସମ୍ପତ୍ତିକୁ ଭୋଗ ଦଖଲ କରିବା ପାଇଁ ଲାଳାୟିତ ହେଲା ବେଳେ ତାଙ୍କୁ ଏ ଦିଗରେ ପ୍ରୋତ୍ସାହିତ କରିବା ପାଇଁ ସୁଧୀର ପରି କୁଚକ୍ରୀ ଚରିତ୍ରର ଅଭାବ ନାହିଁ । ଅଥଚ ବଡଭାଇ ଉଚ୍ଚଶିକ୍ଷିତ ବିପିନ ବିହାରୀ ଏ ସବୁ ହୀନମନ୍ୟତାର ଊର୍ଦ୍ଧ୍ୱରେ । ସବୁବେଳେ ସମ୍ବେଦନ ଶୀଳ, ଗମ୍ଭୀର ଓ ବିଚାରବନ୍ତ । ତାଙ୍କ ଦ୍ୱାରା ଉପକୃତ ଗଦାଧର ମଧ୍ୟ ଏକ ଆଦର୍ଶ ଚରିତ୍ର । ବିପିନ ବିହାରୀଙ୍କ ପ୍ରତି ଅବିଚାରକୁ ସେ ବରଦାସ୍ତ କରି ନ ପାରି, ଖଳ ଚରିତ୍ର ମାନଙ୍କ ଚକ୍ରବ୍ୟୂହ ଭିତରେ ବିପିନ ବିହାରୀଙ୍କୁ ସହାୟତା କରିବାକୁ ସେ ଆଗେଇ ଆସେ । ଏହି ଉପନ୍ୟାସରେ ଗଦାଧର ପରି ଆଦର୍ଶ ଚରିତ୍ର ମାଧ୍ୟମରେ ଲେଖକ ମାନବିକ ମୂଲ୍ୟ ବୋଧର ଜୟଗାନ କରିଛନ୍ତି ।

ପରବର୍ତ୍ତୀ ଉପନ୍ୟାସ 'ମାୟାପୁରୀ' । ପ୍ରକାଶନ ସମୟ ୧୯୪୭ ମସିହା । ଏହି ଉପନ୍ୟାସଟି ସେ ଛଦ୍ମନାମ 'ଶ୍ରୀ କୁମାର' ନାମରେ ରଚନା କରିଛନ୍ତି । ଲେଖକଙ୍କର ଅନ୍ୟ ଏକ ଉପନ୍ୟାସ ହରଣ ଚାଲ' ପୁସ୍ତକର ବିଜ୍ଞାପନ ପୃଷ୍ଠାରେ ତାଙ୍କର ଅନ୍ୟାନ୍ୟ ପୁସ୍ତକମାନଙ୍କ ମଧ୍ୟରେ ଏହି ପୁସ୍ତକର ନାମ ମଧ୍ୟ ଉଲ୍ଲେଖ ହୋଇଥିବାରୁ ଏହା ତାଙ୍କ ଦ୍ୱାରା ରଚିତ ଉପନ୍ୟାସ ବୋଲି ପ୍ରମାଣିତ ହୁଏ ।

ଏ ଦୁନିଆ ଏକ ମାୟାପୁରୀ । ସବୁକ୍ଷେତ୍ରରେ ପ୍ରପଞ୍ଚ ମାୟାରେ ଆବଦ୍ଧ ମଣିଷ । ମାୟା ବନ୍ଧନର ଗୁଢ ରହସ୍ୟ ଭେଦ କରିବା ଏତେ ସହଜବ୍ୟାପାର ନୁହେଁ । ଏହା ହିଁ ଏ ଉପନ୍ୟାସର ମର୍ମ ବାଣୀ ।

ଲେଖକଙ୍କର ପରବର୍ତ୍ତୀ ଉପନ୍ୟାସ 'ପିଶାଚ' ପ୍ରକାଶିତ ହୁଏ ୧୯୪୭ ମସିହାରେ ସେହି ଶ୍ରୀକୁମାର ଛଦ୍ମନାମରେ । ଏହା ଏକ ଦୀର୍ଘ କାହାଣୀ ମୂଳକ ଉପନ୍ୟାସ । ଅମାନବିକତା, ପାପ ଓ ଅନ୍ୟାୟ କର୍ମ ପାଇଁ ଈଶ୍ୱରଙ୍କ ବିଚାରରେ ଦଣ୍ଡ ବିଧାନ ରହିଛି ଏହା ହିଁ ଏହି ସଂସ୍କାର ମୂଳକ ଉପନ୍ୟାସର ବାର୍ତ୍ତା ।

ଜଣେ ଶିକ୍ଷିତ ଏବଂ ସମ୍ଭ୍ରାନ୍ତ ଜମିଦାର, ବ୍ୟକ୍ତିଗତ ପାଠାଗାରରେ ବହୁ ଦୁର୍ମୂଲ୍ୟ ଗ୍ରନ୍ଥ ସଜାଇ ରଖିଥିବା ସତ୍ତ୍ୱେ ନିଜର ଭ୍ରଷ୍ଟ ଓ ସ୍ଖଳିତ ଚରିତ୍ର ନିମନ୍ତେ ଅପନିନ୍ଦିତ । ବହୁ ନାରୀ ପିପାସୁ ଏହି ଜମିଦାର; ସନ୍ତାନ ସମ୍ଭବା ହେବାର କ୍ଷମତା ହରାଇଥିବାରୁ ନିଜର ସୁଶ୍ରୀ, ସୁଶୀଳା ପତ୍ନୀଙ୍କୁ ଷଡଯନ୍ତ୍ର କରି ହତ୍ୟା କରିବା ପରେ ଅନ୍ୟ ଜଣେ ଯୁବତୀ ପ୍ରତି ଲୋଲୁପ ଦୃଷ୍ଟି ପକାନ୍ତି । ତାଙ୍କୁ ନିଜ ଦପ୍ତରରେ ଚାକିରୀ ଦେଇ, ନିଜ ସନ୍ତାନର ଗର୍ଭଧାରିଣୀ କରିବାକୁ ପ୍ରଲୋଭିତ କରାନ୍ତି । ଧୀରେ ଧୀରେ ପ୍ରଲୋଭନ ଅତ୍ୟାଚାରର ରୂପ ନିଏ କିନ୍ତୁ ଅବଶେଷରେ ଜମିଦାର ପରାଜିତ ହୁଅନ୍ତି । ସାବଲୀଳ କଥନ ଭଙ୍ଗି ଓ ଘଟଣା ବିନ୍ୟାସ ଏହି ଉପନ୍ୟାସଟିର ବିଶେଷତ୍ୱ ।

'ପ୍ରଥମ ପ୍ରେମ' ପରବର୍ତ୍ତୀ ଉପନ୍ୟାସ ୧୯୪୮ ମସିହାରେ ପ୍ରକାଶିତ । ନାମ କରଣ ଅନୁସାରେ ଏହା ଏକ ରୋମାଣ୍ଟିକ ଉପନ୍ୟାସ ।

ପ୍ରେମ କେବଳ ସୌନ୍ଦର୍ଯ୍ୟ, ଆନନ୍ଦ, ଉପଭୋଗ ଓ ପିପାସାର ପ୍ରତୀକ ନୁହେଁ । ପ୍ରେମର ପରିସର ବିବାହ ପରି ଏକ ସାମାଜିକ ଓ ଦୈହିକ ଆବଶ୍ୟକତାର ବହୁ ଉର୍ଦ୍ଧ୍ୱରେ । ତ୍ୟାଗ ଓ ବଳିଦାନ ଏହାର ପରିଭାଷା । ଉପନ୍ୟାସର ନାୟକ ଗୋପ, ପ୍ରେମର ଏହି ନୈସର୍ଗିକ ଆଦର୍ଶ ଟେକି ଧରିଛି ପାଠକ ନିକଟରେ । ପିଲାଟି ଦିନରୁ ଭଲ ପାଉଥିବା ଫୁଲକୁ ବିବାହ କରି ପାରିଲା ନାହିଁ ବୋଲି ସେ ବିରହରେ ଜୁହୁଳି ନିଜକୁ ନଷ୍ଟ କରି ଦେଇ ନାହିଁ ବା ବିଦ୍ରୋହ କରି ନାହିଁ । ବରଂ ଫୁଲ କେମିତି ସୁଖ, ଶାନ୍ତିରେ ରହିବ, ତାହା ଗୋପ ଜୀବନର ଲକ୍ଷ୍ୟ ପାଲଟି ଯାଇଛି ।

ଔପନ୍ୟାସିକ, ନାୟକ ଗୋପ ମୁହଁରେ କୁହାଇଛନ୍ତି- "ଯେ ଯାହାକୁ ଭଲ ପାଏ, ସେ ତାହାକୁ କେବେ ଭୁଲ ବାଟରେ ନେଇଯିବାକୁ ଚାହେଁ ନାହିଁ ।" ଏହି ଉକ୍ତି ପ୍ରମାଣ କରିଦିଏ ଯେ ସାଧାରଣ ପ୍ରେମ କାହାଣୀର ବିଫଳ ନାୟକ ମାନଙ୍କ ପରି ନାୟିକାକୁ ନାଟକୀୟ ଢଙ୍ଗରେ ଉଠାଇ ନେବାର ଭୁଲ ନ କରି ପ୍ରକୃତ ପ୍ରେମିକ ବରଂ ନାୟିକା କେମିତି ସ୍ୱାମୀ, ଶାଶୁ, ଶ୍ୱଶୁରଙ୍କୁ ନେଇ ସୁଖର ସଂସାର ଗଢିବ ସେ ଦିଗରେ ଯତ୍ନବାନ ହେବା ଦରକାର । ଏଥିନିମନ୍ତେ ନାୟକ ଗୋପକୁ ଅନେକ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । କିନ୍ତୁ ତାର ସମସ୍ତ ତ୍ୟାଗ ଓ ବଳିଦାନ ବ୍ୟର୍ଥ ହୋଇଛି । ଏ ପ୍ରକାର ଶାଶ୍ୱତ ପ୍ରେମର ପଟାନ୍ତର ନାହିଁ । କାହ୍ନୁଚରଣଙ୍କ 'ଶାସ୍ତି', 'ତୁଣ୍ଡବାଇଦ' ଓ 'ହା ଅନ୍ନ' ପରି ଏହି ଉପନ୍ୟାସରେ ପ୍ରେମ, ଦେହାସକ୍ତିରୁ ମୁକୁଳି ଆସି ତ୍ୟାଗ ଓ ଅଙ୍ଗୀକାରବଦ୍ଧତାର ଏକ ଶୁଦ୍ଧ ପୂତ ଝରଣା ପାଲଟି ଯାଇଛି ।

ଲକ୍ଷ୍ମୀନାରାୟଣଙ୍କର ପରବର୍ତ୍ତୀ ଉପନ୍ୟାସ 'ମଲା ମଣିଷ କଥା କହେ' ଏକ ଭିନ୍ନ ସ୍ୱାଦର ଉପନ୍ୟାସ ଯାହା ୧୯୪୯ ମସିହାରେ ଲେଖକ ସହଯୋଗ ସମିତି, କଟକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।

ପରିସ୍ଥିତି ଓ ପରିବେଶର ପ୍ରଭାବ ରେ ଯିଏ ନିଷ୍କ୍ରିୟ ଜଣାପଡେ, ସେ ବି ଦିନେ ମୁଣ୍ଡ ସଳଖ କରି ଛିଡା ହୁଏ, କଥା କହେ ଏବଂ ନିଜତ୍ୱ ଜାହିର କରେ, ଏହା ହିଁ ଏହି ଉପନ୍ୟାସର ବକ୍ତବ୍ୟ ।

ପରବର୍ତ୍ତୀ ଉପନ୍ୟାସ 'ହରଣ ଚାଲ' ୧୯୫୦ ମସିହାରେ ପ୍ରକାଶିତ ହୁଏ ଲେଖକ ସହଯୋଗ ସମିତି, କଟକଙ୍କ ସୌଜନ୍ୟରୁ । ଏହା ଏକ ରହସ୍ୟ (ଡିଟେକ୍‌ଟିଭ) ଉପନ୍ୟାସ । ଏହି ଉପନ୍ୟାସରେ ବୁଢିଆଣିସୂତା ଭଳି ରହସ୍ୟ ଘନ ଘଟଣା ମାନଙ୍କ ସହିତ ଚରିତ୍ର ମାନଙ୍କୁ ବାନ୍ଧି ରଖିବାରେ ଲକ୍ଷ୍ମୀନାରାୟଣ ସଫଳ ହୋଇଥିଲେ । ସେତେବେଳେ ହାତଗଣତି ମାତ୍ର କେଇଜଣ ଓଡିଆରେ ରହସ୍ୟ ଉପନ୍ୟାସ ରଚନା କରୁଥିଲେ । ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପାଠକ ଏହି ଉପନ୍ୟାସକୁ ଉତ୍କଣ୍ଠିତ ଭାବରେ ପଢିବାକୁ ଆଗ୍ରହ ପ୍ରକାଶ କରନ୍ତି । ସେହି ଦୃଷ୍ଟିରୁ ରହସ୍ୟ ଉପନ୍ୟାସ କ୍ଷେତ୍ରରେ ଏହି 'ହରଣ ଚାଲ' ଉପନ୍ୟାସର ଭୂମିକା ଗୁରୁତ୍ୱ ପୂର୍ଣ୍ଣ ।

'ହରଣ ଚାଲ' ଉପନ୍ୟାସ ପୁସ୍ତକର ପଛପାଖ ପ୍ରଚ୍ଛଦର ଭିତର ପଟେ ମୁଦ୍ରିତ ଏକ ବିଜ୍ଞାପନରୁ ଜଣା ପଡେ ଲକ୍ଷ୍ମୀନାରାୟଣ ଆହୁରି ତିନିଖଣ୍ଡ ରହସ୍ୟ ରୋମାଞ୍ଚ ଉପନ୍ୟାସ ଲେଖିଥିଲେ । ସେ ଗୁଡିକର ନାମ ହେଲା 'ଅଦୃଶ୍ୟ ମନୁଷ୍ୟ', 'ଡିଟେକ୍‌ଟିଭ' ଓ 'ଶୋଣିତ ତର୍ପଣ' କିନ୍ତୁ ସେ ସବୁ ପ୍ରକାଶିତ ହୋଇ ପାରିଛି କି ନାହିଁ ତାହାର କୌଣସି ତଥ୍ୟ ମିଳୁ ନାହିଁ ।

୧୯୭୧ ମସିହାରେ ପ୍ରକାଶିତ ଲକ୍ଷ୍ମୀନାରାୟଣଙ୍କ ଶେଷ ଉପନ୍ୟାସ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି ।

ମୋଟାମୋଟି ଭାବେ ଲକ୍ଷ୍ମୀନାରାୟଣଙ୍କ ଉପନ୍ୟାସଗୁଡିକୁ ପାଠ କଲେ ଜଣାଯାଏ, ସାମାଜିକ, ରୋମାଣ୍ଟିକ ଓ ପାରିବାରିକ ଏପରିକି ଡିଟେକ୍‌ଟିଭ ଉପନ୍ୟାସରେ ହାତ ଦେଇ ସେ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଛନ୍ତି । ଏପରିକି 'କପଟ ପାଶା' ପରି ଗୁପ୍ତଚର ଉପନ୍ୟାସ, ଯାହା ସେତେବେଳେ ଏକ ନୂତନ ଉଦ୍ୟମ ଥିଲା, ସେଥିରେବି ସେ ସଫଳତା ହାସଲ କରିଛନ୍ତି ।

ସୁଚିନ୍ତିତ ସରଳ କଥା ବିନ୍ୟାସ ତାଙ୍କ ଉପନ୍ୟାସର ଶୈଳୀ ଥିଲା । ଅଧିକାଂଶ କ୍ଷେତ୍ରରେ ସେ ସଂଳାପ ଧର୍ମୀ ଭାଷା ବ୍ୟବହାର କରୁଥିଲେ, ଯାହା ସେତେବେଳେ ପାଠକ ମନକୁ ଛୁଉଁଥିଲା । ଉପନ୍ୟାସର କାହାଣୀ ଓ ଚରିତ୍ର ମାନଙ୍କ ମାଧ୍ୟମରେ ମାନବୀୟ ମୂଲ୍ୟବୋଧର ସନ୍ଦେଶ ତାଙ୍କ ଉପନ୍ୟାସର ମୁଖ୍ୟ ସ୍ୱର ଥିଲା ।

## ଅନୁବାଦ :

ଅନୁବାଦର ଆବେଦନ ଓ ରସୋତ୍ତୀର୍ଣ୍ଣତା ମୌଳିକ ସାହିତ୍ୟଠାରୁ କୌଣସି ଗୁଣରେ କମ୍ ନୁହେଁ । ଅନୁବାଦ ହିଁ ବାସ୍ତବ ସୃଜନଶୀଳ ସାହିତ୍ୟର କ୍ରମବିକାଶକୁ ସକ୍ରୀୟ ଓ ତ୍ୱରାନ୍ୱିତ

କରେ । ତେଣୁ ଅନୁବାଦ ସାହିତ୍ୟର ଭୂମିକା ଏକାନ୍ତ ଗୁରୁତ୍ୱ ପୂର୍ଣ୍ଣ । ଏହା ମାଧ୍ୟମରେ ପାଠକ ଅନ୍ୟ ଭାଷାର ପୁସ୍ତକ ଅଧ୍ୟୟନ କରି ସେହି ଭାଷାଭାଷି ଅଞ୍ଚଳର ବିଷୟ ଓ ଭାବ ସହିତ ପରିଚୟ ଲାଭ କରେ ।

ଅନୁବାଦ ସାହିତ୍ୟର ମୁଖ୍ୟତଃ ଦୁଇଟି ଧାରା । ପ୍ରଥମ ଧାରା - ଅନ୍ୟ ଭାଷାରେ ରଚିତ ସାହିତ୍ୟ କୃତିମାନଙ୍କୁ ମାତୃ ଭାଷାରେ ଭାଷାନ୍ତରିତ କରିବା, ରୂପାନ୍ତରିତ କରିବା ବା ଅନୁବାଦ କରିବା । ଏହା ଦ୍ୱାରା ଗୋଟିଏ ଆଞ୍ଚଳିକ ଭାଷା ସାହିତ୍ୟର ଲେଖକ ଓ ପାଠକମାନେ ବି ବିଶ୍ୱର ଅନ୍ୟାନ୍ୟ ଭାଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରା ସହିତ ପରିଚିତ ହୋଇ ପାରିବେ । ପୁନଶ୍ଚ ସେହି ଉତ୍ସଭାଷା (Source Language) ର ତତ୍‌କାଳୀନ ଗତି ଓ ପ୍ରକୃତି ସମ୍ପର୍କରେ ମଧ୍ୟ ଅନୂଦିତ ଭାଷାର ପାଠକ (ବିଶେଷ ଭାବରେ ସାହିତ୍ୟିକ)ମାନେ ଅବଗତ ହୋଇ ପାରିବେ । ଫଳ ସ୍ୱରୂପ ସାହିତ୍ୟ କ୍ଷେତ୍ରରେ ଚିନ୍ତା ଓ ଚେତନା ସମ୍ପ୍ରସାରିତ ହେବାର ସୁଯୋଗ ମିଳିବ ।

ଦ୍ୱିତୀୟ ଧାରା (୨)- ମାତୃ ଭାଷାରେ ରଚିତ ସାହିତ୍ୟ କୃତିକୁ ଅନ୍ୟ ଭାଷାରେ ଭାଷାନ୍ତରିତ/ରୂପାନ୍ତରିତ ବା ଅନୁବାଦ କରିବା । ଏହା ଦ୍ୱାରା ମାତୃ ଭାଷାର ସାହିତ୍ୟ, ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ମର୍ଯ୍ୟାଦା ଲାଭ କରିବାର ସୁଯୋଗ ପାଇବ ।

ଲକ୍ଷ୍ମୀନାରାୟ ମହାନ୍ତି ଥିଲେ ପ୍ରଥମ ଧାରାର ଜଣେ ଅଦ୍ୱିତୀୟ ଅନୁବାଦକ । ସେ ଯେତେବେଳେ ଅନୁବାଦ କର୍ମରେ ହାତ ଦେଲେ, ସେ ସମୟ ଆମ ଦେଶ ଓ ପ୍ରଦେଶର ସାହିତ୍ୟ, ସଂସ୍କୃତି କ୍ଷେତ୍ରର ଏକ ସନ୍ଧିକ୍ଷଣ । ସ୍ୱାଧୀନତାର ପରବର୍ତ୍ତୀ ଦଶନ୍ଧିରେ ଲକ୍ଷ୍ମୀନାରାୟଣ ଏହି କର୍ମରେ ହାତ ଦେଲେ । ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ପରି ଓଡିଆ ସାହିତ୍ୟରେ ମଧ୍ୟ ସେତେବେଳେ ଆଧୁନିକ ଯୁଗର ଉନ୍ମେଷ ପର୍ବ । ଆମ ଲେଖକ କବିମାନେ ଜନ ଜୀବନର ସୁଖ, ଦୁଃଖ, ସାମାଜିକ ରୀତି, ନୀତି, ବାଧା ବନ୍ଧନକୁ ରୂପ ଦେବାରେ ଅଧିକ ଆଗ୍ରହ ପ୍ରକାଶ କରୁଥାଆନ୍ତି । ସାମ୍ୟବାଦର ମାର୍କସୀୟ ଚିନ୍ତାଧାରା ବିଶ୍ୱ ସାହିତ୍ୟକୁ ପ୍ରଭାବିତ କରୁଥାଏ । 'ଟମକକାଙ୍କ କୁଟୀର' ପରି ଉପନ୍ୟାସମାନେ ସାମନ୍ତବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସଫଳ ହୋଇଥାଆନ୍ତି । ଏହି ସମୟରେ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷା, ବିଶେଷ କରି ପଡୋଶୀ ବଙ୍ଗଳାରେ ପାଶ୍ଚାତ୍ୟ ସାହିତ୍ୟର ଅନୁବାଦ ପାଇଁ ବିଶେଷ ଆଗ୍ରହ ପରିଲକ୍ଷିତ ହେଉଥାଏ ।

ସୁତରାଂ ଏହି ସମୟରେ ଆମ ଓଡିଆ ଲେଖକମାନେ ମଧ୍ୟ ବିଶ୍ୱ ସାହିତ୍ୟ ସହିତ ପରିଚିତ ହେବାକୁ ଉତ୍ସୁକ ହେବା ସ୍ୱାଭାବିକ । ଏପରିକି ଉଚ୍ଚଶିକ୍ଷିତ ପାଠକମାନେ ବିଦେଶୀ ଗଳ୍ପ ଓ ଉପନ୍ୟାସ ପ୍ରତି ଅଧିକ ଆଗ୍ରହ ପ୍ରକାଶ କରୁଥିଲେ ମଧ୍ୟ ଆମ ସାହିତ୍ୟରେ ସେତେବେଳେ ଆମ ଲେଖକ ଓ ସାଧାରଣ ପାଠକ ମାନଙ୍କ ପାଇଁ ବିଶିଷ୍ଟ ବିଦେଶୀ ସାହିତ୍ୟ କୃତୀ ମାନଙ୍କର ଅନୁବାଦ ର ଅଭାବ ବିଶେଷ ଭାବରେ ଅନୁଭୂତ ହେଉଥିଲା ।

ତେଣୁ ଏହି ସମୟରେ ସାହିତ୍ୟ ସାଧକ ଲକ୍ଷ୍ମୀନାରାୟଣ ଗଳ୍ପ ଓ ଉପନ୍ୟାସ ରଚନାରୁ ଏକ ପ୍ରକାର ନିବୃତ୍ତ ହୋଇ ଅନୁବାଦ ସାହିତ୍ୟରେ ମନୋନିିବେଶ କଲେ । ସେ କାହିଁକି ନିବିଷ୍ଟ ଭାବରେ ଅନୁବାଦ କର୍ମରେ ମଜ୍ଜି ଗଲେ, ତାହାର କାରଣ ଗୁଡ଼ିକ ଏଠାରେ ପ୍ରଣିଧାନ ଯୋଗ୍ୟ ।

ସ୍ୱୟଂ ଲକ୍ଷ୍ମୀନାରାୟଣ ଏ ସମ୍ପର୍କରେ କହିଛନ୍ତି - 'ଜଣେ ଅଣ ଓଡିଆ ଲେଖକଙ୍କ ବିଦ୍ରୁପ ସହି ନ ପାରି ମୁଁ ଅନୁବାଦ ବୃତ୍ତିରେ ଲାଗିଗଲି, ଫଳରେ କାହାଣୀ ରଚନା ମୋ ଠୁଁ ଦୂରେଇ ଗଲା' । (କୋଣାର୍କ-ବିଷୁବ ସଂଖ୍ୟା- ୨ ୦ ୦ ୬-ପୃ. ୧ ୧ ୬) । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଲକ୍ଷ୍ମୀନାରାୟଣ ପ୍ରଥମେ ଗଳ୍ପ ଓ ପରେ ପରେ ଉପନ୍ୟାସ ରଚନା କରି ନିଜର ସାରସ୍ୱତ ଜୀବନ ଆରମ୍ଭ କରିଥିଲେ ଓ ୧ ୯ ୫ ୦ ମସିହା ସୁଦ୍ଧା ତାଙ୍କର ଅନେକ ଗଳ୍ପ ଓ ଉପନ୍ୟାସ ପ୍ରକାଶିତ ହୋଇ ତାଙ୍କୁ ଯଶ ଓ ପ୍ରତିଷ୍ଠା ଆଣି ଦେଇଥିଲେ । ତାହାସତ୍ତ୍ୱେ ଆମ ସାହିତ୍ୟର ପ୍ରଗତି ନିମନ୍ତେ ସେ ଅନୁବାଦ କର୍ମରେ ନିଜକୁ ଉତ୍ସର୍ଗ କରିଦେଲେ ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ତାଙ୍କର ପ୍ରଥମ ଗଳ୍ପ 'ଶିଳ୍ପୀ' ୧ ୯ ୩ ୯ ମସିହାରେ ଡଗରରେ ପ୍ରକାଶିତ ହୋଇଥିଲା । ଏହି ଗଳ୍ପ ନୋବେଲ ଲରିଏଟ୍ ଚେଖଭଙ୍କ କୌଣସି ଗଳ୍ପର ଛାୟାରେ ଲେଖା ହୋଇଥିଲା ବୋଲି ସେ ଦ୍ରଷ୍ଟବ୍ୟରେ ସ୍ୱୀକାର କରିଥିଲେ । ଏହା ଯଦିଓ ଏକ ଅନୁବାଦ ନ ଥିଲା, ତଥାପି ଏହି ଗଳ୍ପଟି ପଢିବା ପରେ କାନ୍ତକବି ଲକ୍ଷ୍ମୀକାନ୍ତ ତାଙ୍କୁ ଅଧିକରୁ ଅଧିକ ବିଦେଶୀ ଗଳ୍ପ ଓଡିଆରେ ପରିବେଷଣ କରିବା ପାଇଁ ଉତ୍ସାହିତ କରିଥିଲେ । ୧ ୯ ୪ ୮ ମସିହାରେ ଡ. ହରେକୃଷ୍ଣ ମହତାବଙ୍କ ଦ୍ୱାରା 'ପ୍ରଜାତନ୍ତ୍ର ପ୍ରଚାର ସମିତି' ସୌଜନ୍ୟରେ ମାସିକ ସାହିତ୍ୟ ପତ୍ରିକା ଝଙ୍କାର'ର ଆବିର୍ଭାବ ଘଟିଲା । ଏହି ପତ୍ରିକାରେ ଲକ୍ଷ୍ମୀନାରାୟଣଙ୍କର କେତୋଟି ଅନୁବାଦ ଗଳ୍ପ ପ୍ରକାଶିତ ହେଲା ଓ ତା ପରେ ଡ. ମହତାବ ତାଙ୍କୁ ଅନୁବାଦ ସାହିତ୍ୟର ପ୍ରସାର ନିମନ୍ତେ ପ୍ରୋତ୍ସାହିତ କରିଲେ ।

ଏ ସମ୍ପର୍କରେ ଅନ୍ୟ ଗୋଟିଏ ଘଟଣା ମଧ୍ୟ ଏଠାରେ ଉଲ୍ଲେଖନୀୟ ।*

ପୂଜ୍ୟ ବିନୋବାଙ୍କ ଭୂଦାନ କାର୍ଯ୍ୟକ୍ରମରେ, ସରକାରୀ ଦାୟିତ୍ୱରେ ତାଙ୍କୁ ବିନୋବାଙ୍କ ସହିତ ସାରା ଓଡିଶା ବୁଲିବାକୁ ପଡିଥିଲା । ଏହି ସମୟରେ ଏକ ବିଦେଶୀ ସାମ୍ବାଦିକ ଦମ୍ପତି

---

*(୧ ୯ ୯ ୪ ମସିହାରେ ଲକ୍ଷ୍ମୀନାରାୟଣ କିଛିଦିନ ପାଇଁ ଏହି ଲେଖକର ଚାକିରିସ୍ଥାନ ସୁକିନ୍ଦା ଟାଟା ମାଇନ୍ସରେ ଆତିଥ୍ୟ ଗ୍ରହଣ କରିଥିଲେ । ସେହି ସମୟରେ କଥାଛଳରେ ସେ ମଧ୍ୟ ଉପରୋକ୍ତ ବିରଳ ଅନୁଭୂତି କିଛି କହିଥିଲେ ଓ ଇଂରେଜ ସାମ୍ବାଦିକ ଦମ୍ପତିଙ୍କ ନାମ ଉଲ୍ଲେଖ କରିଥିଲେ । ଏହି ଲେଖକର ଦୂର୍ଭାଗ୍ୟ ଯେ, ସେତେବେଳେ ଲକ୍ଷ୍ମୀନାରାୟଣଙ୍କ ଜୀବନୀ ପୁସ୍ତିକା ଲେଖିବା ପାଇଁ ସେ ଲୋଡ଼ା ପଡ଼ିବା କଥା ଚିନ୍ତା ବି କରିପାରି ନଥିଲା । ଆଜି ଦୁଃଖ ଲାଗୁଛି, ସେତେବେଳେ ଯଦି କିଛି ଟିପି ରଖାଯାଇ ପାରିଥାଆନ୍ତା ତେବେ ଆଜି ସେହି ଇଂରେଜ ସାମ୍ବାଦିକ ଦମ୍ପତିଙ୍କ ନାମ ବିସ୍ମରଣକୁ ଯାଇନଥାନ୍ତା ଓ ଏହି କାର୍ଯ୍ୟଟି ସହଜ ଓ ସୁନ୍ଦର ଭାବରେ ସମ୍ପାଦିତ ହୋଇପାରିଥାନ୍ତା ।)

ମଧ୍ୟ ବିନୋବାଙ୍କ ସହିତ ବିଭିନ୍ନ ସ୍ଥାନକୁ ଯାଉଥିଲେ । ସେମାନଙ୍କର ସାହିତ୍ୟ ପ୍ରତି ଋଚିଥିଲା । ଲକ୍ଷ୍ମୀନାରାୟଣ ସେମାନଙ୍କ ନିକଟ ସମ୍ପର୍କରେ ଆସିବା ଫଳରେ ଏହି ଦମ୍ପତି ତାଙ୍କୁ କେତେଖଣ୍ଡ ଇଂରାଜୀ ଅନୁଦିତ ପୁସ୍ତକ ଉପହାର ଦେଇଥିଲେ । ଏହି ପୁସ୍ତକ ସବୁ ପଢିବା ପରେ, ଓଡିଆ ଲେଖକ ଓ ପାଠକମାନେ ଏହି ପ୍ରକାର ପୁସ୍ତକ ନିହାତି ପଢିବା ଆବଶ୍ୟକ ବୋଲି ସେ ଅନୁଭବ କଲେ । ଫଳରେ ତାଙ୍କର ଅନୁବାଦ କର୍ମ ପ୍ରତି ଆଗ୍ରହ ଆହୁରି ବଢିଗଲା । ଏହି ସାମ୍ବାଦିକ ଦମ୍ପତି ବହୁବର୍ଷ ପର୍ଯ୍ୟନ୍ତ କଟକ ତୁଳସୀପୁର ନିକଟରେ ଏକ ଭଡା ଘରେ ରହୁଥିଲେ । ସେମାନେ ଲକ୍ଷ୍ମୀନାରାୟଣଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିଥିବା କଥା ଏବେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କ ଭିଣୋଇ ବିନୋଦ ଚନ୍ଦ୍ର ଦାସ କହନ୍ତି ।

ଏହି ପରି ଘଟଣା କ୍ରମେ ବହୁବିଧ କାରଣରୁ ଏକଦା ବିଶିଷ୍ଟ ଗାଳ୍ପିକ ଓ ଔପନ୍ୟାସିକ ଲକ୍ଷ୍ମୀନାରାୟଣ ଅନୁବାଦ କର୍ମକୁ ଆପଣେଇ ନେଲେ ।

ଲକ୍ଷ୍ମୀନାରାୟଣ କୃତ ଭାଷାନ୍ତର କର୍ମକୁ ସ୍ଥୁଳ ଭାବରେ ଆମେ ଦୁଇଟି ଭାଗରେ ବିଭକ୍ତ କରି ପାରିବା । ପ୍ରଥମଟି ଅନୁବାଦ ଓ ଦ୍ୱିତୀୟଟି ଅନୁସୃଜନ ।

ମୂଳ ଗ୍ରନ୍ଥରୁ ବା ଉତ୍ସଭାଷାରୁ ସିଧାସଳଖ ମାତୃଭାଷା (ଓଡିଆ) ରେ ଭାଷାନ୍ତରକୁ 'ଅନୁବାଦ' କୁହାଯିବ । ଲକ୍ଷ୍ମୀନାରାୟଣ ବଙ୍ଗଳା, ହିନ୍ଦି ଓ ଇଂରାଜୀ ଭାଷାର ମୂଳ ଗ୍ରନ୍ଥ ଗୁଡିକୁ ଓଡିଆରେ ଅନୁବାଦ କରିଛନ୍ତି । ସେ ଏହିପରି ପ୍ରାୟ ପାଞ୍ଚଖଣ୍ଡ ପ୍ରସିଦ୍ଧ ଉପନ୍ୟାସର ସଂପୂର୍ଣ୍ଣ ଅନୁବାଦ କରିବା ସହିତ ଖଣ୍ଡିଏ ପୂର୍ଣ୍ଣାଙ୍ଗ ଭ୍ରମଣ କାହାଣୀ ମଧ୍ୟ ଅନୁବାଦ କରିଛନ୍ତି । (ପରିଶିଷ୍ଟ-୨ରେ ଗ୍ରନ୍ଥସୂଚୀ) ।

'ବନଚାରୀ' ଉପନ୍ୟାସ ପାଇଁ ତାଙ୍କୁ ୧ ୯ ୯ ୦ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିଲା । ବଙ୍ଗଳା ଔପନ୍ୟାସିକ ବିଭୂତି ବନ୍ଦୋପାଧ୍ୟାୟଙ୍କ ଜନପ୍ରିୟ ଉପନ୍ୟାସ 'ଆରଣ୍ୟକ' ର ଏହା ଓଡିଆ ଅନୁବାଦ । ଏହି ଉପନ୍ୟାସ ଅନୁଦିତ ହେବା ପୂର୍ବରୁ ପ୍ରଖ୍ୟାତ କଥାକାର ମନୋଜ ଦାସଙ୍କ 'ଆରଣ୍ୟକ' ଗଳ୍ପ ସଂକଳନ ପ୍ରକାଶିତ ହୋଇ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇ ସାରିଥିଲା । ତେଣୁ ମୂଳ ଲେଖକଙ୍କ ଅନୁମତି କ୍ରମେ ଲକ୍ଷ୍ମୀନାରାୟଣ ଏହି ଅନୁଦିତ ପୁସ୍ତକର ନାମ 'ଆରଣ୍ୟକ' ପରିବର୍ତ୍ତେ 'ବନଚାରୀ' ରଖିଲେ । ଉପନ୍ୟାସର କଥାବସ୍ତୁ ଦୃଷ୍ଟିରୁ ଏପରି ନାମ କରଣ ବାସ୍ତବରେ ଯଥାର୍ଥ ବୋଲି ମୂଳ ଲେଖକଙ୍କ ସମେତ ବହୁ ବରିଷ୍ଠ ସମାଲୋଚକ ମତ ବ୍ୟକ୍ତ କରିଥିଲେ । ଏହି ଅନୁଦିତ ଉପନ୍ୟାସ ସମ୍ପର୍କରେ କେନ୍ଦ୍ର ସାହିତ୍ୟ ଏକାଡେମୀର ମନ୍ତବ୍ୟ ହେଲା-

"BANACHARI" which wins the prize of Oriya as an outstanding translation of BIBHUTI BHUSANA BANDAOPADHYAYA's Bengali classic "ARANYAKA". The choice of stylistic variants in the sentences, words and idioms is constantly excellent and the work manages to recreate the atmosphere and subtly of the originals as well as its poetry.

ବାସ୍ତବରେ ଲକ୍ଷ୍ମୀନାରାୟଣଙ୍କ ଅନୁବାଦର ବିଶେଷତ୍ୱଟି ହେଲା- ମୂଳ ଗ୍ରନ୍ଥର ଭାବ ବସ୍ତୁ ବା Theme କୁ ଅକ୍ଷୁର୍ଣ୍ଣ ରଖି, ସେଥିରେ ବ୍ୟବହୃତ ଉପମା ଓ ରଢି ଇତ୍ୟାଦିର ସଠିକ ଅନୂଦିତ ଶବ୍ଦ ଓ ରଢି ପ୍ରୟୋଗ କରିବା; ଯାହାଦ୍ୱାରା ମୂଳ ଭାବ ବସ୍ତୁର ସଠିକ ପରିବେଶଟିଏ ପୁନଃ ସୃଷ୍ଟି ହେବ, କିନ୍ତୁ ତାହା କୌଣସି ଦିଗରୁ ଓଡିଶାର ଆଞ୍ଚଳିକ ପରିବେଶ ଠାରୁ ଅଲଗା ନ ଥିବ । ବହିଟି ପଢିବା ବେଳେ, ପାଠକ ଯେ ଅନ୍ୟ ଏକ ଭାଷା ବା ପରିବେଶର କଥା ପଢୁଛି ଏପରି ଅସହଜ ଭାବ ତା ମନକୁ ଆଦୌ ଛୁଇଁବ ନାହିଁ । କେବଳ ବନଚାରୀ ନୁହେଁ ତାଙ୍କ ଦ୍ୱାରା ଅନୂଦିତ ଅନ୍ୟାନ୍ୟ ପୁସ୍ତକମାନଙ୍କରେ ମଧ୍ୟ ଏହି ବିଶେଷତ୍ୱ ବାରି ହୋଇପଡେ ।

'ଆନନ୍ଦମଠ' ଉପନ୍ୟାସର ନିମ୍ନୋକ ପରିଚ୍ଛେଦଟି ଲକ୍ଷ୍ମୀନାରାୟଣଙ୍କ ଅନୁବାଦ କଳା ଓ ଶବ୍ଦ ଚୟନର ଏକ ପ୍ରକୃଷ୍ଟ ଉଦାହରଣ ।

'ପୂର୍ଣ୍ଣିମାର ଅମଳ ଧବଳ ଜ୍ୟୋତ୍ସ୍ନାଲୋକରେ ନିସ୍ତବ୍ଧ ନିର୍ଜନ ରଣକ୍ଷେତ୍ର ପ୍ଲାବିତ ହୋଇଥିଲା । ଚାରିଆଡେ ଇଂରେଜ ଓ ସନ୍ତାନ ସେନାମାନେ ମରି ପଡିଥିଲେ । ସେମାନଙ୍କ ଭିତରେ ଶାନ୍ତି ଏକାକିନୀ ଜୀବନାନନ୍ଦଙ୍କ ଦେହ ଖୋଜୁଥିଲା । ବହୁତ ଖୋଜା ଖୋଜି ପରେ ନ ପାଇବାରୁ ସେ ଅବଶେଷରେ ଭୂଇଁରେ ଲୋଟି ପଡି କାନ୍ଦିବାକୁ ଲାଗିଲା" (ଆନନ୍ଦମଠ-ପୃ-୯)

ଏହି ଉଦ୍ଧୃତିର ପ୍ରଥମ ବାକ୍ୟଟି, ବଙ୍ଗଳାର ଉତ୍ସଗ୍ରନ୍ଥର ପାଞ୍ଚୋଟି ବାକ୍ୟର ଭାବକୁ ଏବଂ ପରିବେଶର ଗାମ୍ଭୀର୍ଯ୍ୟକୁ ଅତି କୁଶଳତାର ସହିତ ସୂଚାଇଦିଏ । ଏହା ହିଁ ତାଙ୍କ ଅନୁସୃଜନ କଳାର ବିଶେଷତ୍ୱ ।

ବିଶିଷ୍ଟ ପଞ୍ଜାବୀ ଲେଖକ ଭାଇ ନାନକ୍ ସିଂହଙ୍କ 'ଧଳାରକ୍ତ' ଉପନ୍ୟାସର ଅନୁସୃଜନରୁ ଆଉ ଗୋଟିଏ ଉଦାହାରଣ ନିଆଯାଉ ।

"ଅମାବାସ୍ୟାର କିଟି କିଟି କଳାରାତି, ଶୀତଋତୁ, ମାଘମାସ, ଝଡ଼ର ସାଇଁ ସାଇଁ ଗର୍ଜନ ଓ ଶୃଙ୍ଖଳା ଗଛର କର୍କଶ ଆବାଜ ମିଶି ଦୁଃଖ ନିଆଁରେ ଜଳୁଥିବା ସେହି ଯୁବତୀର ହୃଦୟରେ ପ୍ରଳୟ ସଂଚାର କରିଥିଲା ।" ("ଧଳା ରକତ", ପୃ.୧୦)

ଏଠାରେ ବ୍ୟବହୃତ 'କିଟି କିଟି କଳାରାତି', 'ସାଇଁ ସାଇଁ ଗର୍ଜନ' ପରି ଶବ୍ଦ ଗୁଡ଼ିକ ଓଡ଼ିଆ ଭାଷାର ନିଖୁଣ ପ୍ରୟୋଗ । ସେହିପରି 'ଦୁଃଖ ନିଆଁରେ ଜଳିବା' ଏବଂ 'ହୃଦୟରେ ପ୍ରଳୟ ସଂଚାର କରିବା' ପରି ଖଣ୍ଡ ବାକ୍ୟ ଗୁଡ଼ିକ ପ୍ରୟୋଗ କରି ସେ ଏକ ସମ୍ବେଦନଶୀଳ ପରିବେଶକୁ ଯଥାର୍ଥରେ ଉପସ୍ଥାପିତ କରିପାରିଛନ୍ତି ।

ଶେଷରେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ 'ବନଚାରୀ' ଉପନ୍ୟାସର ନିମ୍ନୋକ୍ତ ଉଦ୍ଧୃତିଟି ଲକ୍ଷ୍ୟ କରାଯାଉ ।

"ଏହି ତିନି ବର୍ଷ ଭିତରେ ମୋର ଅନେକ ପରିବର୍ତ୍ତନ ହୋଇଛି । ଲବଟୁଲିୟା ଓ ଆଜମାବାଦର ବନ୍ୟ ପ୍ରକୃତି କି ମାୟା-କଜଳ ମୋ ଆଖିରେ ଲଗାଇ ଦେଇଛି – ସହରକୁ ଏକ ରକମ ପାଶୋରି ଦେଇଛି । ନିର୍ଜନତାର ମୋହ, ନକ୍ଷତ୍ର-ଖଚିତ ଉଦାର ଆକାଶର ମୋହ

ମୋତେ ଏମିତି ଭାବରେ ଗ୍ରାସ କରିଛି ଯେ, ମଝିରେ ଥରେ ଦିନ କେତୋଟି ପାଇଁ ପାଟନାକୁ ଯାଇ ଛଟପଟ ହେବାକୁ ଲାଗିଲି । କେବେ ପିଚୁ ଢ଼ଳା ଧରାବନ୍ଧା ରାସ୍ତାର ଗଣ୍ଡି ଏଡ଼ାଇ, ଲବଟୁଲିୟା ବଇହାରକୁ ଫେରିଯିବି - ପିଆଲା ପରି ଅଜାଡ଼ି ପଡ଼ିଥିବା ନୀଳ ଆକାଶ ତଳେ ପ୍ରାନ୍ତର ପରେ ପ୍ରାନ୍ତର, ଅରଣ୍ୟ ପରେ ଅରଣ୍ୟ, ଯେଉଁଠି ତିଆରି ରାଜପଥ ନାହିଁ, ଇଟାର କୋଠାବାଡ଼ି ନାହିଁ, ମଟର ହର୍ଣ୍ଣର ଆବାଜ ନାହିଁ, ଯେଉଁଠି ଘନ ନିଦ୍ରାର ଫାଙ୍କରେ କେବଳ ଦୂର ଅନ୍ଧକାର ବଣରେ ବିଲୁଆଙ୍କ ପ୍ରହର ଘୋଷଣା ଶୁଣାଯାଏ, ନୋହିଲେ ନୀଳ ଗାଈ ପଲର ସମ୍ମିଳିତ ପଦଧ୍ୱନି କିମ୍ବା ବନ୍ୟ ମଇଁଷିର ଗମ୍ଭୀର ଆବାଜ ।"

ପ୍ରଶସ୍ତି ପତ୍ରରେ ଏକାଡ଼େମୀ କର୍ତ୍ତୃପକ୍ଷ ଲକ୍ଷ୍ମୀନାରାୟଣଙ୍କ ଶୈଳୀରେ ଶବ୍ଦ ଚୟନ, ଉପମା ଓ ରଢ଼ି ପ୍ରୟୋଗର ଯଥାର୍ଥତା ନିମନ୍ତେ କରିଥିବା ପ୍ରଶଂସା ଯେ ଯଥାର୍ଥ ତାହା ଉପରୋକ୍ତ ଉଦ୍ଧୃତିରୁ ପ୍ରମାଣିତ ହୁଏ ।

ବିଶ୍ୱକବି ରବୀନ୍ଦ୍ର ନାଥଙ୍କର କାଳଜୟୀ ଉପନ୍ୟାସ 'ଗୋରା'ର ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଲକ୍ଷ୍ମୀନାରାୟଣଙ୍କୁ ହିଁ ଚୟନ କରିଥିଲେ । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ହେବାପରେ ଲକ୍ଷ୍ମୀନାରାୟଣଙ୍କର ଏହା ଏକ ଅନବଦ୍ୟ କୃତି । ଏହାପରେ ତାଙ୍କର ଆହୁରି ଦୁଇଟି ଅନବଦ୍ୟ ଅନୁଷ୍ଠାନ 'ଧଳାରକତ' ଓ 'ଆତ୍ମପ୍ରକାଶ' ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ (୨୦୦୪)। ବିଶ୍ୱକବିଙ୍କ 'ଗୋରା' ଉପନ୍ୟାସରେ ଜାତି ଧର୍ମର ଊର୍ଦ୍ଧ୍ୱରେ ଜୀବନ ଜୀଇଁବା ପାଇଁ ଜଣେ ସଚ୍ଚା ଭାରତୀୟର ଅଭିଳାଷ ଓ ଦେଶାତ୍ମବୋଧ ଅତି ଜୀବନ୍ତ ଭାବରେ ପ୍ରତିଫଳିତ । ଏହି ଉପନ୍ୟାସ ସମ୍ପର୍କରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ମନ୍ତବ୍ୟ ହେଲା - 'ଋଷିୟ ତଥା ସେମାନଙ୍କ ସାହିତ୍ୟ ପାଇଁ ଟଲଷ୍ଟୟଙ୍କ 'ଯୁଦ୍ଧ ଓ ଶାନ୍ତି' ଯେଉଳି ତାତ୍ପର୍ଯ୍ୟ ପୂର୍ଣ୍ଣ ଭାରତୀୟ ତଥା ସେମାନଙ୍କ ସାହିତ୍ୟ ପାଇଁ ରବୀନ୍ଦ୍ର ନାଥଙ୍କ 'ଗୋରା' ମଧ୍ୟ ସେହିଭଳି ତାତ୍ପର୍ଯ୍ୟପୂର୍ଣ୍ଣ । (ସୁଚନାଯୋଗ୍ୟ ଯେ ଟଲଷ୍ଟୟଙ୍କ 'ଯୁଦ୍ଧ ଓ ଶାନ୍ତି' ମଧ୍ୟ ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ଅନୁସୃଜିତ ।) 'ଗୋରା' ଉପନ୍ୟାସର ଅନୁବାଦରେ ମଧ୍ୟ ଲକ୍ଷ୍ମୀନାରାୟଣ ଅତି ସଫଳତାର ସହିତ ବିଶ୍ୱକବିଙ୍କ ରଚନାର ଦେଶାତ୍ମବୋଧ ଏବଂ 'ସର୍ବଧର୍ମ ସମନ୍ୱୟ'ର ଛାପ ପ୍ରତିଫଳିତ କରିଛନ୍ତି । ଗୋଟିଏ ଉଦାହରଣ - "ଗୋରା ଜବାବ୍ ଦେଲା, 'ଆପଣଙ୍କ ପାଖରେ ଏହି ମୁକ୍ତିର ମନ୍ତ୍ର ଅଛି । ସେଇଥିପାଇଁ ଆଜି ଆପଣ କେଉଁ ସମାଜରେ ସ୍ଥାନ ପାଉନାହାନ୍ତି । ମୋତେ ଆପଣଙ୍କ ଶିଷ୍ୟ କରନ୍ତୁ । ଆଜି ଆପଣ ମୋତେ ସେହି ଦେବତାଙ୍କ ମନ୍ତ୍ର ଦିଅନ୍ତୁ ଯେ ହିନ୍ଦୁ ମୁସଲମାନ୍ ଖ୍ରୀଷ୍ଟାନ୍ ବ୍ରାହ୍ମ ସଭିଁଙ୍କର, ଯାହାଙ୍କ ମନ୍ଦିରର ଦ୍ୱାର କୌଣସି ଜାତି କି ବ୍ୟକ୍ତିର ନିକଟରେ କେଉଁ ଦିନ ଅବରୁଦ୍ଧ ହୁଏନା, ଯେ କେବଳ ହିନ୍ଦୁର ଦେବତା ନୁହନ୍ତି - ଯେ ଭାରତବର୍ଷର ଦେବତା ।"

(ଗୋରା - ପୃ. ୪୧୯)

## ଅନୁସୃଜନ :

ତାଙ୍କ ଅନୁବାଦର ଅନ୍ୟ ଦିଗଟି ହେଲା 'ଅନୁସୃଜନ' । ମାଟ୍ରିକ ପର୍ଯ୍ୟନ୍ତ ପଢ଼ିଥିବା ଲକ୍ଷ୍ମୀନାରାୟଣ ମାତ୍ର ତିନୋଟି ଭାଷାରେ ପାରଦର୍ଶିତା ଅର୍ଜନ କରିଥିଲେ । ଯଥା- ଇଂରାଜୀ, ହିନ୍ଦୀ ଓ ବଙ୍ଗଳା । ଏହି ଭାଷାର ବହି ଗୁଡ଼ିକୁ ସେ ସିଧା ସଳଖ ଓଡ଼ିଆରେ ଅନୁବାଦ କରିପାରୁଥିଲେ । କିନ୍ତୁ ପୃଥିବୀର ଅଧିକାଂଶ ଭାଷାର ବଛା ବଛା ବହି ଗୁଡ଼ିକୁ ସେ ବିପୁଳ ପରିମାଣରେ ଓଡ଼ିଆରେ ଭାଷାନ୍ତରିତ କରିଛନ୍ତି । ମୂଳଭାଷାରେ ଲିଖିତ ମୂଳ ଗ୍ରନ୍ଥର ଇଂରାଜୀ, ହିନ୍ଦୀ ଅଥବା ବଙ୍ଗଳା ଅନୁବାଦକୁ ସେ ଏଠାରେ ଉତ୍ସଗ୍ରନ୍ଥ (Source language book) ଭାବେ ଗ୍ରହଣ କରି ତାହାକୁ ଭାଷାନ୍ତରିତ କରିଛନ୍ତି ।

ଏହି ପରିପ୍ରେକ୍ଷୀରେ ତାଙ୍କ ସହିତ ବିଶିଷ୍ଟ ସାହିତ୍ୟ ସମାଲୋଚକ ଡ. କୃଷ୍ଣଚରଣ ବେହେରା ମହୋଦୟଙ୍କର ୧୯୫୧ ମସିହାର କଥୋପକଥନର କିୟଦଂଶ ଏଠାରେ ପ୍ରଣିଧାନଯୋଗ୍ୟ । ସେତେବେଳେ ଡ. ବେହେରା 'ଡ଼ଗର' ପ୍ରେସ୍‌ରେ କାର୍ଯ୍ୟ କରୁଥିଲେ ଓ ସେହି 'ଡ଼ଗର' ପ୍ରେସ୍‌ରେ ହିଁ ଏହି କଥୋପକଥନ ଅନୁଷ୍ଠିତ ହୋଇଥିଲା । ସେହି କଥୋପକଥନର କିୟଦଂଶ ଏଠାରେ ଉଦ୍ଧାର କରାଗଲା ।

କୃଷ୍ଣଚରଣ- "ଭାରତୀୟ ହେଉ ବା ବିଦେଶୀ ହେଉ, ଯେଉଁ ଭାଷାରୁ ଆପଣ ଅନୁବାଦ କରୁଛନ୍ତି, ସେହିସବୁ ଭାଷା ଆପଣ ଶିଖିଛନ୍ତି କି ?"

ଲକ୍ଷ୍ମୀନାରାୟଣ- "କେବଳ ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଇତ୍ୟାଦି ଅଳ୍ପ କେତୋଟି ଭାଷା ମୁଁ ଶିଖିଛି" ।

କୃଷ୍ଣଚରଣ- "ତା ହେଲେ, ଜର୍ମାନ, ଫରାସୀ ପ୍ରଭୃତି ଭାଷା ଆପଣ ଅନୁବାଦ କରୁଛନ୍ତି କେମିତି ?"

ଲକ୍ଷ୍ମୀନାରାୟଣ- "ଇଂରାଜୀ, ବଙ୍ଗଳାଦି ଭାଷା ଜରିଆରେ ମୁଁ ଅନୁବାଦ କରେ ।"

କୃଷ୍ଣଚରଣ- " ଆପଣଙ୍କ ଅନୁବାଦ ତେଣୁ ଉତ୍ସ ମୂଳକ ଅନୁବାଦ ନୁହେଁ । ଗୋଟିଏ ଋଷୀୟ କି ଜର୍ମାନ ଗଳ୍ପ ଇଂରାଜୀରେ ଅନୁଦିତ ହୋଇଛି, ସେହି ଅନୁଦିତ ଗଳ୍ପକୁ ପୁଣି·ଆପଣ ଓଡ଼ିଆରେ ଅନୁବାଦ କରୁଛନ୍ତି । ଏହା ସେକେଣ୍ଡ୍ କି ଥାର୍ଡ୍ ହେଣ୍ଡ ଅନୁବାଦ, ମୂଳ ଲେଖାର । ଏହା ଠିକ୍ ଓ ବିଶ୍ୱସ୍ତ ଅନୁବାଦ ହୋଇ ପାରିବ କି ?"

ଲକ୍ଷ୍ମୀନାରାୟଣ- "ଏହାକୁ ଆପଣ 'ଅନୁସୃଜନ' କହି ପାରନ୍ତି । ପୃଥିବୀରେ ପ୍ରାୟ ସବୁ ଭାଷାରେ ଏପରି ହୋଇଥାଏ । ମୁଁ ଯେତେବେଳେ ଇଂରାଜୀ ବା ବଙ୍ଗଳା ଭାଷାର ଜରିଆରେ କେତେକ ଇଉରୋପୀୟ ଭାଷାର ଲେଖା ଅନୁବାଦ କରୁଛି, ସେହି ଲେଖାର ମୂଳ ଭାବ ଓ ବକ୍ତବ୍ୟ ତଥା ଚରିତ୍ର ଚିତ୍ରଣ ବଜାୟ ରଖିବା ପାଇଁ ଧ୍ୟାନ ଦେଉଛି । ମୂଳ ଲେଖାର ଭାବ ବା ବକ୍ତବ୍ୟ ମୁଁ ବିକୃତ କରିନାହିଁ - ମୂଳ ଚରିତ୍ରକୁ ମଧ୍ୟ ବିକୃତ କରିନାହିଁ ।"

କୃଷ୍ଣଚରଣ- "ଅନୁସୃଜନ କଥା ମୁଁ ବୁଝିଗଲି ।" (ତପୋବନର ତପସ୍ୱୀ - ପୃ. ୭୨)

୧୯୫୧ ମସିହାରେ ଲକ୍ଷ୍ମୀନାରାୟଣ ଯେମିତି ବୁଝାଇଥିଲେ ଓ ଡ. ବେହେରା ଯାହା ବୁଝିଥିଲେ, ତହିଁରୁ, ଆମେ ସାଧାରଣ ପାଠକ ମାନେ ଏତିକି ବୁଝୁ ଯେ, ମୂଳଗ୍ରନ୍ଥରୁ ଅନ୍ୟ ଭାଷାରେ (ଇଂରାଜୀ ବା ବଙ୍ଗଳା) ଅନୂଦିତ ଗ୍ରନ୍ଥକୁ ଉତ୍ସରୂପେ ଗ୍ରହଣ କରି, ଲକ୍ଷ୍ମୀନାରାୟଣ ଯେଉଁ ଭାଷାନ୍ତର କାର୍ଯ୍ୟ କରୁଥିଲେ, ତାହାକୁ ସେ ଅନୁସୃଜନ କହୁଥିଲେ । ଅବଶ୍ୟ ଅଧୁନା, ଅନୁବାଦ, ଅନୁସୃଜନ, ଭାଷାନ୍ତର, ରୂପାନ୍ତର ଭଳି ଶବ୍ଦମାନଙ୍କର ପୃଥକ୍ ପୃଥକ୍ ସଂଜ୍ଞା ଗବେଷକ ମାନଙ୍କ ଦ୍ୱାରା ନିରୁପିତ ହେଲାଣି ।

ତେବେ ଏହି ଅନୁସୃଜନ କର୍ମଟି ଅତୀବ କ୍ଲାଷ୍ଟ ଓ ଶ୍ରମ ତଥା ସମୟ ସାପେକ୍ଷ । ଅନୂଦିତ ଇଂରାଜୀ ବା ବଙ୍ଗଳା ଭାଷାକୁ ସିଧାସଳଖ ଅନୁବାଦ କରିଦେଲେ ତାହା ଭାବବସ୍ତୁକୁ ବିକୃତ କରିଦେବାର ଆଶଙ୍କା ଥାଏ । ଲକ୍ଷ୍ମୀନାରାୟଣ ସେଥିପାଇଁ ଅନେକ ସମୟରେ ଏହି ବିଦେଶୀ ଭାଷା ମାନଙ୍କ ଅନସୃଜନ ନିମନ୍ତେ ଏକାଧିକ ଅନୂଦିତ ପୁସ୍ତକ (ଇଂରାଜୀ, ହିନ୍ଦୀ, ବଙ୍ଗଳା) ସଂଗ୍ରହ କରି ସେ ଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ଏକାଧିକ ବାର ପଢି, ତାର ଭାବବସ୍ତୁ, ପରିବେଶ ଓ ଚରିତ୍ର ମାନଙ୍କୁ ଆତ୍ମସ୍ଥ କରୁଥିଲେ । ତା ପରେ ସେ ଗୋଟିଏ ବହିକୁ ମୂଳଗ୍ରନ୍ଥ ଓ ଅନ୍ୟ ଗୁଡ଼ିକୁ ସହାୟକ ଗ୍ରନ୍ଥ (Reference book) ଭାବରେ ଗ୍ରହଣ କରି ଅନୁସୃଜନ କର୍ମ କରୁଥିଲେ । ଅନୁସୃଜନ କର୍ମରେ ନିଜସ୍ୱ ଲେଖକୀୟ କଳାଟି ତାଙ୍କୁ ବିଶେଷ ଭାବେ ସହାୟକ ହେଉଥିଲା । ନିଶ୍ଚିତ ଭାବରେ ଏହା ଏକ ଜଟିଳ ଓ କଷ୍ଟସାଧ ସାଧନା । ତଥାପି ଲକ୍ଷ୍ମୀନାରାୟଣ ବିପୁଳ ସଂଖ୍ୟାର ବିଦେଶୀ ଗ୍ରନ୍ଥର ଅନୁସୃଜନ କରି ଆମ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ଅନୁସୃଜିତ ପୁସ୍ତକ ସଂଖ୍ୟା ଶହେ ପାଖା ପାଖି (ପରିଶିଷ୍ଟ-୩ରେ ପୁସ୍ତକ ତାଲିକା ଦ୍ରଷ୍ଟବ୍ୟ) । ଏହା ବାହାରେ ବିଭିନ୍ନ ପତ୍ର ପତ୍ରିକା (ବିଶେଷ କରି ଝଙ୍କାର)ରେ ବହୁ ଅନୁସୃଜିତ ଗଳ୍ପ ପ୍ରକାଶିତ, ଯାହା ପୁସ୍ତକ ଆକାରରେ ସଂକଳିତ ହୋଇ ପାରିନାହିଁ । ଓଡ଼ିଆ ସାହିତ୍ୟରେ ଏହି ଅନୁସୃଜନର ଧାରାଟି ତାଙ୍କରି ଠାରୁ ଗଢ଼ି ଆସିଛି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ଠାରୁ ଅନୁପ୍ରାଣିତ ହୋଇ ଏବେ କିଛି ଲେଖକ ଦେଶ ବିଦେଶର କାହାଣୀମାନ ଅନୁସୃଜନ କରି ପତ୍ର ପତ୍ରିକାମାନଙ୍କରେ ପ୍ରକାଶ କରୁଛନ୍ତି । ତେବେ ଏହା ପର୍ଯ୍ୟାପ୍ତ ନୁହେଁ, ଏବଂ ଏ ସବୁକୁ ପୁସ୍ତକ ଆକାରରେ ସଂକଳିତ କରିବାର ଆଗ୍ରହ ବି ନଥିଲା ପରି ଜଣାପଡ଼େ । ଉପନ୍ୟାସ ଅନୁସୃଜନରେ ତ ଆଗ୍ରହ ଥିବାର ଆଦୌ ଲକ୍ଷ୍ୟ କରାଯାଏ ନାହିଁ ।

ଲକ୍ଷ୍ମୀନାରାୟଣଙ୍କ ଅନୁସୃଜନକୁ ପୁନଶ୍ଚ ଆମେ ଦୁଇ ଭାଗରେ ବିଭକ୍ତ କରିଦେବା - ଉପନ୍ୟାସ ଅନୁସୃଜନ ଓ ଗଳ୍ପ ଅନୁସୃଜନ ।

ଏତେ ବିପୁଳ ପରିମାଣର ଅନୁସୃଜନ ସମ୍ପର୍କରେ ଆଲୋଚନା କରିବା ଏହି ପରିସର ମଧ୍ୟରେ ସମ୍ଭବ ନୁହେଁ । ତେବେ ତାଙ୍କର ଉପନ୍ୟାସ ଓ ଗଳ୍ପ ଅନୁସୃଜନର କଳା ସମ୍ପର୍କରେ ଆମେ ସଂକ୍ଷେପରେ ଆଲୋଚନା କରିବା ।

## ଅନୁସୃଜିତ ଉପନ୍ୟାସ :

ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟ ସୃଷ୍ଟିର ତାଲିକା ପରିଶିଷ୍ଟ-୩ ରେ ସନ୍ନିବେଶିତ । ଏହି ତାଲିକା ସ୍ୱୟଂ ସମ୍ପୂର୍ଣ୍ଣ ବୋଲି କହିହେବ ନାହିଁ । ହୁଏତ ଏହି ତାଲିକା ବାହାରେ ବି ଆହୁରି କିଛି ଗ୍ରନ୍ଥ ରହିଯାଇଥାଇପାରେ । ଆମେ ଏହି ତାଲିକା ଭିତରେ ଥିବା ଅନୁସୃଜିତ ଉପନ୍ୟାସ ଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରିପାରିବା । (୧) ସଂକ୍ଷେପଣ ଓ ଅନୁସୃଜନ ଏବଂ (୨) ସମ୍ପୂର୍ଣ୍ଣ ଅନୁସୃଜନ ।

ଲକ୍ଷ୍ମୀନାରାୟଣ ବିଶ୍ୱ ଉପନ୍ୟାସ ସିରିଜ୍‌ରେ ଦେଶ ବିଦେଶର ଅନେକଗୁଡ଼ିଏ ଉପନ୍ୟାସକୁ ଓଡ଼ିଆ ଭାଷାରେ ସଂକ୍ଷେପରେ ଅନୁବାଦ (ଅନୁସୃଜନ) କରିବା ପାଇଁ ଏକ କଷ୍ଟକରବଧ ସାଧନା ଆରମ୍ଭ କରିଥିଲେ ୧୯୭୦ ମସିହା ପୂର୍ବରୁ । ଏହି ପ୍ରକାର ୧୦୦ଖଣ୍ଡ ଉପନ୍ୟାସ ଓଡ଼ିଆ ପାଠକ ମାନଙ୍କୁ ଉପହାର ଦେବା ପାଇଁ ସେ ଏକ ଖସଡ଼ା ପ୍ରସ୍ତୁତ କରିଥିଲେ ଏବଂ ସେତେବେଳର ବିଶିଷ୍ଟ ପ୍ରକାଶକ ଶ୍ରୀ ନବକିଶୋର ମହାପାତ୍ର ଏହାର ପ୍ରକାଶନ ଦାୟିତ୍ୱ ନେଇଥିଲେ ।

ଏହି ସମୟରେ କାହ୍ନୁଚରଣ, ଗୋପୀନାଥ ଓ ସୁରେନ୍ଦ୍ର ମହାନ୍ତିଙ୍କ ପଛକୁ ସେ କାଳର ତରୁଣ ଔପନ୍ୟାସିକ ଶାନ୍ତନୁ ଆଚାର୍ଯ୍ୟ, ବିଭୂତି ପଟ୍ଟନାୟକ, ଚନ୍ଦ୍ରଶେଖର ରଥ ଓ ଦେବ୍ରାଜ ଲେଙ୍କା ପ୍ରମୁଖ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ପାରଂପରିକତା ସହିତ ନୂଆ ରୂପରଂଗ ପ୍ରଦାନ କରୁଥାଆନ୍ତି । ଲକ୍ଷ୍ମୀନାରାୟଣ ମଧ୍ୟ ନିଜେ ଏହି ସମୟ ବେଳକୁ ସାତଖଣ୍ଡ ମୌଳିକ ଉପନ୍ୟାସ ରଚନା କରି ସାରିଥାଆନ୍ତି । ତେବେ ଏତିକିବେଳେ ସେ ଔପନ୍ୟାସିକ ଓ ଉପନ୍ୟାସ ପାଠକ, ସମସ୍ତଙ୍କୁ ଉପନ୍ୟାସ କ୍ଷେତ୍ରରେ ନୂତନ ସ୍ୱାଦ ପରିବେଷଣ କରିବା ପାଇଁ ପୂର୍ବ ଓ ପଶ୍ଚିମ ସଭ୍ୟତାର ଏକାଧିକ ଉପନ୍ୟାସକୁ ସଂକ୍ଷେପରେ ଓଡ଼ିଆ ଭାଷାରେ ଅନୁସୃଜନ କରି, ବିଶ୍ୱ ସାହିତ୍ୟ ପ୍ରତି ଗବାକ୍ଷ ଉନ୍ମୁକ୍ତ କରିଦେଲେ । ଆମ ସାହିତ୍ୟରେ ଏପରି ପ୍ରୟାସ କରିବାରେ ଲକ୍ଷ୍ମୀନାରାୟଣ ପ୍ରଥମ ।

ମୂଳ ଉପନ୍ୟାସର ସମ୍ପୂର୍ଣ୍ଣ ପାଠ ଅଧ୍ୟୟନ ସହିତ ଏହାର ଆବେଗ, ଘଟଣା ବିନ୍ୟାସ ଓ ଚରିତ୍ରାୟନକୁ ଅକ୍ଷୁର୍ଣ୍ଣ ରଖି ସେ ଉପନ୍ୟାସର ସଂକ୍ଷେପଣ କାର୍ଯ୍ୟ ସଂପାଦନା କରିଛନ୍ତି । ଏହି ପରିପ୍ରେକ୍ଷୀରେ ତାଙ୍କର ସୃଜନ ବା ଅନୁସୃଜନ ସହିତ ତାଙ୍କର ସମ୍ପାଦନା ପ୍ରତିଭା ମଧ୍ୟ ସମ ପରିମାଣରେ ପ୍ରଶଂସା ଯୋଗ୍ୟ । ହେର୍‌ମେନହେସ୍‌ଙ୍କ 'ସିଦ୍ଧାର୍ଥ', ବଙ୍କିମ୍ ଚନ୍ଦ୍ରଙ୍କ 'ଆନନ୍ଦମଠ'ର ସନ୍ୟାସୀ ଭାବାନନ୍ଦଙ୍କ ଚରିତ୍ର, ଏପରିକି ହାରିଯେଟ୍ ଏଲିଜାବେଥ୍‌ଙ୍କ 'ଅଙ୍କଲ୍ ଟମ୍‌ସ କେବିନ'ର ଟମ୍ ଓ ଶେଲ୍‌ବି ପରି ଚରିତ୍ର ମାନଙ୍କ ମାନସିକ ଦ୍ୱନ୍ଦ ଓ ଦର୍ଶନକୁ ଲକ୍ଷ୍ମୀନାରାୟଣ ସଠିକ୍ ଭାବେ ଉପସ୍ଥାପନ କରିବାରେ ସକ୍ଷମ ହୋଇଛନ୍ତି ।

ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି, ମୂଳ ଉପନ୍ୟାସ ମାନେ ବିସ୍ତୃତ ପ୍ଲଟ ଓ ଚରିତ୍ରାୟନରେ ଭର୍ତ୍ତି ହୋଇଥିବା ବେଳେ, ତହିଁରୁ ଅତିଶୟୋକ୍ତି ଓ ଅତିରିକ୍ତ ବର୍ଣ୍ଣନା ମାନଙ୍କୁ ବାଦ୍ ଦେବା ସତ୍ତ୍ୱେ, ସେ ଭାବ ସଂରଚନା ଓ ସାବଲୀଳତାର କ୍ରମକୁ ଶକ୍ତ ଓ ଶାଣିତ କରି ପରିବେଷଣ କରି ପାରୁଥିଲେ, ତାହାପୁଣି ଘରୋଇ ପରିବେଶରେ । ପାର୍ଲବକ୍‌ଙ୍କ 'ଗୁଡ୍ ଆର୍ଥ' ର ସଂକ୍ଷେପିତ ଅନୁସୃଜନ 'ବସୁଧା' ପଢିବା ବେଳେ ସେଥିରେ ଦେଶଜ ଶବ୍ଦ ଓ ଗ୍ରାମୀଣ ଭାଷା ପ୍ରୟୋଗ ଯୋଗୁଁ, ଉପନ୍ୟାସର ଚରିତ୍ର ମାନଙ୍କ ଭିତରେ ଓଡ଼ିଆ ରୂପ ଗଂଧର ସାଦୃଶ୍ୟ ବାରି ହୋଇପଡ଼େ । ଲକ୍ଷ୍ମୀନାରାୟଣ କିନ୍ତୁ ମୂଳ ଗ୍ରନ୍ଥର ଚରିତ୍ର ମାନଙ୍କ ନାମ କୌଣସି ଠି ପରିବର୍ତ୍ତନ କରି ନାହାନ୍ତି ।

'କାଦମ୍ବରୀ' ଶୀର୍ଷକରେ 'ପୃଥିବୀର ଶ୍ରେଷ୍ଠ ଉପନ୍ୟାସମାଳା'ର ପ୍ରଥମ ଖଣ୍ଡ ଆରମ୍ଭ । ୧୯୭୪ ମସିହା ଶେଷ ସୁଦ୍ଧା ଏହି ଉପନ୍ୟାସ ମାଳାର ବାରଖଣ୍ଡ ପ୍ରକାଶିତ ହୋଇ ସାରିଥିଲା ଏବଂ ଏହି ବାରଖଣ୍ଡ ଗ୍ରନ୍ଥରେ ପୃଥିବୀର ପ୍ରାୟ ୩୦ଖଣ୍ଡ ବଛା ବଛା ଉପନ୍ୟାସର ସଂକ୍ଷେପ ରୂପ ଅନୁସୃଜିତ ହୋଇଛି । (ପରିଶିଷ୍ଟ-୩ ରେ ତାଲିକା ସନ୍ନିବେଶିତ)

ନିଜର ଏପରି ଉଦ୍ୟମ ସମ୍ପର୍କରେ ଲକ୍ଷ୍ମୀନାରାୟଣ ନିଜେ ଉପନ୍ୟାସ ମାଳାର ଦ୍ୱିତୀୟ ଖଣ୍ଡ "ଆନନ୍ଦମଠ" ର ଭୂମିକାରେ କହିଛନ୍ତି -

"ଆମ ଜାତୀୟ ସାହିତ୍ୟରେ ଯେମିତି ଅଛି, ପୃଥିବୀର ଅନ୍ୟ ସବୁ ଦେଶର ସାହିତ୍ୟରେ ମଧ୍ୟ ସେମିତି ବହୁ କାଳଜୟୀ ଉପନ୍ୟାସ ରହିଛି, ଯାହାର ଆବେଦନ ସାର୍ବଜନୀନ ଓ ସର୍ବକାଳୀନ । ପାଶ୍ଚାତ୍ୟ ଦେଶରେ ସେହିସବୁ ଅକ୍ଷୟ ସାହିତ୍ୟ କୃତିର ସଂକ୍ଷିପ୍ତ ରୂପାନ୍ତର ଦେଖାଯାଏ, ଯାହା ଫଳରେ ଅତି କମ୍ ସମୟ ଭିତରେ ଅନେକ ଗୁଡ଼ିଏ ବଛା ବଛା ବହି ପଢିହୁଏ । ସେହି ସଂକ୍ଷିପ୍ତ ରଚନା ସବୁ ପଢି ସାରିବା ପରେ ମୂଳ ଗ୍ରନ୍ଥ ପଢିବାର ଆଗ୍ରହ ପାଠକ ମାନଙ୍କ ମଧ୍ୟରେ ଜାତ କରାଇବା ଉଦ୍ଦେଶ୍ୟରେ, ଏହି ଧରଣର ବହି ସବୁ ସେଠାରେ ବହୁଳ ପ୍ରଚାରିତ ହୋଇଥାଏ । ମାତ୍ର ଆମ ଗରିବ ଦେଶରେ ସେପରି ସୁପରିକଳ୍ପିତ ଯୋଜନା ହୋଇ ନଥିବାରୁ, ମୁଁ ସ୍ଥିର କଲି ଯେ ପୃଥିବୀର ନାନା ଦେଶରୁ ସଂଗୃହୀତ ବିଭିନ୍ନ ସ୍ୱାଦର ଶତାଧିକ ଚିରନ୍ତନ ତଥା ଜନପ୍ରିୟ ଉପନ୍ୟାସର ସଂକ୍ଷିପ୍ତ ରୂପ ମୋର ଗରିବ ପାଠକଙ୍କ ନିକଟରେ ଉପସ୍ଥାପିତ କରିବି ।"

ଏହି ପରି ଏକ ଚେତନାରେ ଉଦ୍‌ବୁଦ୍ଧ ହୋଇ, ବିଶ୍ୱ ସାହିତ୍ୟର ଉର୍ବର ଉପଲବ୍ଧି ଗୁଡ଼ିକୁ ଓଡ଼ିଆ ମାନଙ୍କ ପାଖରେ ପରିଚିତ କରାଇ ସେ ଓଡ଼ିଆ ସାହିତ୍ୟକୁ ଯେପରି ଋଦ୍ଧିମନ୍ତ କରିଛନ୍ତି ତାହାର ପଟାନ୍ତର ନାହିଁ ।

'ବିଶ୍ୱ ଉପନ୍ୟାସମାଳା ସିରିଜ୍'ରେ ଉପନ୍ୟାସ ମାନଙ୍କର ସଂକ୍ଷେପଣ ଓ ଅନୁସୃଜନ ବ୍ୟତୀତ ସେ ବିଶ୍ୱର ଆହୁରି କେତେକ କାଳଜୟୀ ଉପନ୍ୟାସ ମାନଙ୍କର ସମ୍ପୂର୍ଣ୍ଣ ଅନୁସୃଜନ କରିଛନ୍ତି ମଧ୍ୟ ।

ଅନୁବାଦ ପ୍ରସଙ୍ଗରେ ସ୍ୱୟଂ ଲକ୍ଷ୍ମୀନାରାୟଣଙ୍କର ମନ୍ତବ୍ୟ ହେଲା "ଅନୁବାଦର ପ୍ରଧାନତଃ ଦୁଇଟି ପଦ୍ଧତି । ଗୋଟିଏ - ମୂଳ ଲେଖକକୁ ପାଠକର ଭାଷା ଜଗତକୁ ନେଇଯିବା, ଅପରଟି-

ପାଠକକୁ ମୂଳ ଲେଖକର ଭାଷା ଜଗତକୁ ଘେନି ଆସିବା । ପ୍ରଥମଟିରେ ସ୍ୱାଧୀନତାର ସୀମା ନ ଥାଏ । ଫଳରେ ଅନୁବାଦ ସାବଲୀଳ ଓ ସୁଖ ପାଠ୍ୟ ହୁଏ । ଅନ୍ୟ ପଦ୍ଧତିରେ ଅନୁବାଦ ହିଁ ସମ୍ପୂର୍ଣ୍ଣ ଅନୁବାଦ ବୋଲି ମନେହୁଏ ।" (ଜନସୁଧା-୨୦୦୩, ପୃ.୮)

ଲକ୍ଷ୍ମୀନାରାୟଣ ନିଜେ ପ୍ରଧାନତଃ ପ୍ରଥମ ପଦ୍ଧତିର ଅନୁସରଣରେ ଅନୁବାଦ ଓ ଅନୁସୃଜନ କରୁଥିଲେ । କୌଣସିଠି ସେ ଯାନ୍ତ୍ରିକ ବା ଆକ୍ଷରିକ ଅନୁବାଦ ପ୍ରତି ଗୁରୁତ୍ୱ ନଦେଇ ଭାବଗତ ଅନୁବାଦ ପ୍ରତି ଅଧିକ ଯତ୍ନଶୀଳ ହେଉଥିଲେ । ଆବଶ୍ୟକ ସ୍ଥଳେ ଓଡ଼ିଶା ପାଣି ପବନର ପରିବେଶ ସୃଷ୍ଟି କରି କଥାବସ୍ତୁକୁ ଆଗକୁ ବଢ଼ାଉଥିଲେ । ଫଳସ୍ୱରୂପ ତାଙ୍କ ଦ୍ୱାରା ଅନୁସୃଜିତ ଉପନ୍ୟାସ ପଢ଼ିବା ବେଳେ ଜଣେ ଓଡ଼ିଆ ପାଠକ ଅସ୍ୱାଭାବିକତା ଅନୁଭବ ନକରି, ବରଂ କାହାଣୀର ସାବଲୀଳତା ଯୋଗୁଁ, ପରିବେଶ ଓ ଘଟଣାକ୍ରମ ତଥା ଭାବବସ୍ତୁ ସହିତ ନିଜକୁ ଯୋଡ଼ି ନେଇପାରୁଥିଲା । ସେହି କାରଣରୁ 'ଯୁଦ୍ଧ ଓ ଶାନ୍ତି', 'ଆନାକାରେନିନା', 'ସଂଗମ', 'ଅଳ୍ପବ', 'ବାତାୟୋଲା', 'ବତୀଘର' ପ୍ରମୁଖ କାଳଜୟୀ ଉପନ୍ୟାସ ଗୁଡ଼ିକ ତାଙ୍କ କଲମରେ ଜୀବନ୍ତ ଭାବେ ଓଡ଼ିଆରେ ଅନୁସୃଜିତ ହୋଇ ପାଠକୀୟ ଶ୍ରଦ୍ଧା ଲାଭ କରିଛନ୍ତି । ତେବେ ମୂଳଗ୍ରନ୍ଥର ଚରିତ୍ର ମାନଙ୍କୁ ସେ କେଉଁଠି ହେଲେ ବିକୃତ କରିନାହାନ୍ତି ; ଏପରିକି ସେମାନଙ୍କ ନାମ ମଧ୍ୟ ପରିବର୍ତ୍ତନ କରିନାହାଁନ୍ତି ।

## ଅନୁସୃଜିତ ଗଳ୍ପ :

ଏହାପରେ ଆମେ ତାଙ୍କର ଅନୁସୃଜିତ ଗଳ୍ପ ସମ୍ପର୍କରେ ସାମାନ୍ୟ ଆଲୋଚନା କରିବା ।

ବିଶ୍ୱର ବହୁଭାଷାର ଶ୍ରେଷ୍ଠ ଗଳ୍ପ ମାନଙ୍କୁ ସେ ଓଡ଼ିଆରେ ଅନୁସୃଜିତ କରିଛନ୍ତି । ନୋବେଲ ଲରିଏଟ୍‌ଙ୍କ ଶ୍ରେଷ୍ଠ ଗଳ୍ପ, ଦେଶବିଦେଶର କାହାଣୀ, ଲଢେଇ ସରିଲା ଯେବେ ପରି କେତୋଟି ଗଳ୍ପ ସଂକଳନ ବ୍ୟତୀତ, ପୃଥିବୀର ଶ୍ରେଷ୍ଠ ଗଳ୍ପ ମାଳା ସିରିଜ୍‌ରେ ସେ ରଚନା କରିଛନ୍ତି - 'ଆମେରିକାର ଶ୍ରେଷ୍ଠ ଗଳ୍ପ', 'ଇଂଲଣ୍ଡର ଶ୍ରେଷ୍ଠ ଗଳ୍ପ', 'ସୋଭିଏତ୍‌ର ଶ୍ରେଷ୍ଠ ଗଳ୍ପ', 'ଫ୍ରାନ୍‌ସର ଶ୍ରେଷ୍ଠଗଳ୍ପ', 'ଜର୍ମାନୀର ଶ୍ରେଷ୍ଠ ଗଳ୍ପ', 'ଇଟାଲୀର ଶ୍ରେଷ୍ଠ ଗଳ୍ପ' ଓ 'ଇଉରୋପର ଶ୍ରେଷ୍ଠ ଗଳ୍ପ' ଇତ୍ୟାଦି । ଏହି ଗ୍ରନ୍ଥମାନଙ୍କରେ ଗୋଟିଏ ଗୋଟିଏ ଦେଶର ଏକାଧିକ କାଳଜୟୀ ଗାଳ୍ପିକମାନଙ୍କର ଶ୍ରେଷ୍ଠ ଗଳ୍ପ ଗୁଡ଼ିକ ଅନୁସୃଜିତ ହୋଇଛନ୍ତି ।

ବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଇଉରୋପୀୟ ଗଳ୍ପ କଳା ଭାରତୀୟ ସାହିତ୍ୟକୁ ଗଭୀର ଭାବେ ପ୍ରଭାବିତ କରିସାରିଥିଲା । ଏହି ସମୟରେ ଅନେକ ଗୁଡ଼ିଏ ଇଉରୋପୀୟ ଗଳ୍ପର ଓଡ଼ିଆ ଅନୁସୃଜନ କରି ସେ ଆମ ଗାଳ୍ପିକମାନଙ୍କୁ ପ୍ରଭାବିତ କରିପାରିଥିଲେ । ସେଥିପାଇଁ ତ ଆମ ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗାଳ୍ପିକା ଶ୍ରୀମତୀ ବୀଣାପାଣି ମହାନ୍ତି କହନ୍ତି- "ସେଇ ହିଁ (ଲକ୍ଷ୍ମୀନାରାୟଣ) ଆମକୁ ପ୍ରଥମରେ ଇଂରାଜୀ ଓ ଆମ ପଡ଼ୋଶୀ ଭାଷାର ସାହିତ୍ୟକୁ ଓଡ଼ିଆ ଭାଷାରେ ଅନୁବାଦ କରି, ସେମାନଙ୍କ ଚିନ୍ତା ଚେତନାର ଧାରା ସଂପର୍କରେ ପ୍ରାଞ୍ଜଳ ଜ୍ଞାନ

ବିତରଣ କଲେ । ଓଡ଼ିଶାରେ ଯେତେବେଳେ ସାଧାରଣ ଶିକ୍ଷା ଲୋକମାନସରେ ନ ଥିଲା, ସେତେବେଳେ ଓଡ଼ିଆ ସାହିତ୍ୟ ମଧ୍ୟ ସେମାନଙ୍କ ପାଖରେ ଦୁର୍ବୋଧ ହୋଇପଡୁଥିଲା । ଏସବୁକୁ ଦୃଷ୍ଟିରେ ରଖି ଲକ୍ଷ୍ମୀନାରାୟଣ ବାବୁ ଇଂରାଜୀ ଓ ବିଦେଶୀ ସାହିତ୍ୟକୁ ସରଳ ଭାବରେ ଅନୁବାଦ କରି ଚାଲିଲେ ଏବଂ କ୍ରମଶଃ ତାହା ଓଡ଼ିଆ ପାଠକଙ୍କ ଆଦୃତି ଲାଭ କଲା ।" (ତପୋବନର ତପସ୍ୱୀ - ପୃ. ୪୦)

ଗଳ୍ପ ଅନୁସୃଜନ କ୍ଷେତ୍ରରେ ମଧ୍ୟ ଲକ୍ଷ୍ମୀନାରାୟଣ ଯେ କୌଣସି ଦେଶର ମୂଳ ଭାଷାରେ ଲିଖିତ ଗ୍ରନ୍ଥର ଇଂରାଜୀ ଅନୁବାଦକୁ ମୂଳ ଗ୍ରନ୍ଥ ଭାବେ ଗ୍ରହଣ କରୁଥିଲେ । ତେବେ ଉପନ୍ୟାସ ଅନୁରୂପ ଏଠାରେ ମଧ୍ୟ ଚରିତ୍ର ଓ ଭାବବସ୍ତୁକୁ ଅବିକୃତ ରଖି, ଉପଯୁକ୍ତ ଶବ୍ଦ, ଉପମା ଓ ରୂଢ଼ି ଚୟନ କରି ଆଞ୍ଚଳିକ ପରିବେଶ ସୃଷ୍ଟି କରିବାରେ ସେ ସଫଳ ହୋଇଥିଲେ ।

ତାଙ୍କ ଦ୍ୱାରା ଅନୁସୃଜିତ ଗଳ୍ପ ମାନଙ୍କର ବିସ୍ତାରିତ ଆଲୋଚନା ନ କରି, ତାଙ୍କ ଗଳ୍ପ ସଂକଳନ ଗୁଡ଼ିକ ମଧ୍ୟରୁ ଏହି ଲେଖକ ପଢ଼ିଥିବା ସଂକଳନ ଗୁଡ଼ିକର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦାନ କରାଗଲା । ଏଥିରୁ ତାଙ୍କ ଅନୁସୃଜନକଳାର ରୂପରେଖ ସଂପର୍କରେ ପାଠକ କିଞ୍ଚିତ ସୂଚନା ପାଇବେ ।

## (୧) ନୋବେଲ ଲରିଏଟ୍‌ଙ୍କ ସରସ ଗପ :

ପ୍ରକାଶକ : ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୬୭

ଏହି ପୁସ୍ତକର ଭୂମିକାରେ ଲେଖକ ଲେଖିଛନ୍ତି "ସାହିତ୍ୟାଲୋଚନା ପ୍ରସଙ୍ଗରେ ଦିନେ କେତେବର୍ଷ ତଳେ, ଜଣେ ଦରଦୀ ବନ୍ଧୁ କଟୁ ବକ୍ରୋକ୍ତି କରି କହିଲେ - ହଁ ହେ, ଓଡ଼ିଆ ସାହିତ୍ୟରେ ତ ଆଜିକାଲି ବହୁତ କିଛି ହୋଇଗଲାଣି ବୋଲି ଡିଣ୍ଡିମ ପିଟୁଛ, ମାତ୍ର ଦେଖାଇ ଦିଅତ ପୂରାପୂରି ନୂତନ ଧରଣର କ'ଣ ଗୋଟାଏ ଏଠି ହୋଇଛି ? ସେତେବେଳେ ମୋ ମନକୁ ବିଶେଷ ବାଧିଲା । ମନ କଥା ମନରେ ରହିଲା । ଏଣେ ପୂର୍ଣ୍ଣ ଦମ୍‌ରେ କାମ ଚାଲିଲା । ଆଜି ଯାହା ହେଉ, ସେହି ଲକ୍ଷ୍ୟ କିଞ୍ଚିତ ଫଳବତୀ ହେବାକୁ ଯାଉଛି ।"

ଏହି ପୁସ୍ତକରେ ୧୯୦୩ ମସିହାରୁ ୧୯୬୨ ମସିହା ମଧ୍ୟରେ ନୋବେଲ୍ ପୁରସ୍କାର ପ୍ରାପ୍ତ କେତେଜଣ ମହାନ୍ ଗାଳ୍ପିକଙ୍କ ଗଳ୍ପର ଅନୁସୃଜନ ପ୍ରକାଶିତ ହୋଇଛି । ନିମ୍ନରେ ଏହା ପ୍ରଦାନ କରାଗଲା । (ପ୍ରଥମେ ଲେଖକ, ନୋବେଲ୍ ପୁରସ୍କାର ପାଇଥିବା ବର୍ଷ, ତା ପରେ ସମ୍ପୃକ୍ତ ଦେଶ ଓ ଶେଷରେ ଗଳ୍ପର ନାମ ଦିଆଯାଇଛି ।)

ବିୟର୍ନଷ୍ଟାର୍ନ ବିୟର୍ନ ସନ - ୧୯୦୩-ନରୱେ -ଭାଇ/ ହେନେରିକ୍ ସିୟେନକିୟୁଇଜ- ୧୯୦୫-ପୋଲାଣ୍ଡ-ବତୀଘର ଜଗୁଆଳି/ସେଲମାଲାଗରଲଫ- ୧୯୦୯-ସୁଇଡ଼େନ-ପରାଗ/ ଆନାତେଲା ଫ୍ରାନ୍ସ - ୧୯୨୧-ଫ୍ରାନ୍ସ - ପ୍ରଦକ୍ଷିଣ/ଗ୍ରାଜିଆ ଦେଲେଦା- ୧୯୨୬-ଇଟାଲୀ-

ଆକାଶ ହୃଦୟ/ସିନେକ୍ଲେୟାର ଲୁଇସ-୧୯୩୦-ଆମେରିକା-ବରଗଛ/ନଗଲ୍ସଓୟାର୍ଦି-୧୯୩୨-ଇଂଲଣ୍ଡ-ନିନାଦ/ଇଭାନ ଆଲେକ୍ସିଚ୍ ବୁନିନ୍ -୧୯୩୩- ଋଷିଆ - ସୂର୍ଯ୍ୟ ସ୍ନାନ/ଲୁଇଜିପିରାନ୍‌ଦେଲ୍ଲୋ-୧୯୩୪-ଇଟାଲୀ- ବତୀ ଓ ପତି/ପାର୍ଲ ବକ୍ - ୧୯୩୮-ଆମେରିକା - ନାଚଘର/ଜୋହାନେସ୍‌ଭିଲହେଲମ୍ ଜେନ୍‌ସେନ୍ - ୧୯୪୪-ଡେନ୍‌ମାର୍କ-ମାୟାବନ/ହେର୍‌ମାନ ହେସ୍ - ୧୯୪୬ - ଜର୍ମାନ - ଯାମିନି/ହାଲଡ଼ୋର କିଲ୍‌ଜାନ୍ ଲକ୍‌ସନେସ୍-୧୯୫୫-ଆଓଲାଇସ୍-ଜୀବନ ମରଣ/ଇଭୋ ଆନ୍ଦ୍ରିକ୍ - ୧୯୬୧- ଯୁଗସ୍ଲୋଭିଆ - ଭେପା ପୋଲ/ ଜନ୍ ଷ୍ଟେଇନ୍‌ବେକ୍ - ୧୯୬୨- ଆମେରିକା - ସପ ।

## (୨) ସୋଭିଏତ୍ ଦେଶର ଶ୍ରେଷ୍ଠଗଳ୍ପ:

ପ୍ରକାଶକ: ଓଡ଼ିଶା ବୁକ୍ ଷ୍ଟୋର, ୧୯୭୩, ୧୯୭୫, ୧୯୮୩

ଏହି ପୁସ୍ତକ ନିମନ୍ତେ ଲେଖକଙ୍କୁ ୧୯୭୮ ମସିହାରେ ସୋଭିଏତ୍ ଦେଶ ନେହେରୁ ପୁରସ୍କାରରେ ସମ୍ମାନିତ କରାଯାଇଅଛି । ଏଥିରେ ସନ୍ନିବେଶିତ ଗଳ୍ପ ଓ ଗାଳ୍ପିକ ମାନଙ୍କ ନାମ ନିମ୍ନରେ ପ୍ରଦାନ କରାଗଲା ।

ତୁଷାରଝଡ-ଆଲେକ୍‌ଜାଣ୍ଡାର ପୁଶ୍‌କିନ୍ /ପୁଲଟିଏ-ଆଇଭାନ ସାର୍ଗେଭିଚ ତୁର୍ଗନିଭ୍/ଦୁଇ କୂଳ, ଏକ ସ୍ରୋତ - ଫିଡେର ଡ଼ଷ୍ଟଓୟେଭସ୍କି/ପରମପୁରୁଷ- ନିଓନିକୋଲେଭିଚ୍ ଟଲଷ୍ଟୟ/ସିଦ୍ଧାନ୍ତ-ଆନ୍ତନ ଚେଖଭ / ଏକ ଶରତ ସନ୍ଧ୍ୟା-ମ୍ୟାକ୍‌ସିମ୍ ଗର୍କି/ସୁଖ-ଆଲେକ୍‌ଜାଣ୍ଡାର କୁପ୍‌ରିନ୍ / ନିରକ୍ଷରା-ମିକାଏଲ୍ ଜୋସ୍‌ଚେନ୍‌କୋ/ ମହମବତୀ-କନ୍‌ଷ୍ଟାଣ୍ଟିନ୍ ସିମୋନଭ/ସ୍ୱର୍ଣ୍ଣକେଶୀ-ପ୍ୟାଭେଲ୍ ବାଜଭ/ଅଭିନେତ୍ରୀ-ଇଲିଆଏରେନ୍‌ବୁର୍ଗ/ଘୃଣା-ମିଖାଇଲ୍ ସଲାଖୋଫ/ଛୁରା-ଭାଲାଣ୍ଟିନ୍ କାତାଇୟେଫ/ଚିଠି-ଇଜାକ୍ ବାବେଲ୍/ଥାଳି-କନ୍‌ଷ୍ଟାଣ୍ଟିନ୍ ପାଉସଟ୍ ଫସ୍କି ।

## (୩) ଆମେରିକାର ଶ୍ରେଷ୍ଠ ଗଳ୍ପ :

ପ୍ରକାଶକ: ଓଡ଼ିଶା ବୁକ୍ ଷ୍ଟୋର, ୧୯୬୩, ୧୯୭୨, ୧୯୮୩

ଏହି ପୁସ୍ତକରେ ସ୍ଥାନିତ ଗଳ୍ପ ଓ ଗାଳ୍ପିକ ମାନଙ୍କ ନାମ ନିମ୍ନରେ ପ୍ରଦାନ କରାଗଲା ।

ଯୌବନ ସୁରା-ନ୍ୟାଥ୍‌ନିୟେଲ୍ ହଥର୍ଣ୍ଣ/ଆରୋହଣ-ମାର୍କଟୋୟେନ/ମରଣର ଛଦ୍ମବେଶ-ଏଡ଼୍‌ଗାର୍ ଆଲାନ୍ ପୋ/ପ୍ରେମଲୀଳା-ଓହେନେରୀ/ମରୁଭୂମିରେ ମଦ-ମ୍ୟାକ୍‌ସ ବ୍ରାଣ୍ଡ/ଝଡ଼-ସ୍ୟାଲିବେନ୍‌ସନ/ଅନ୍ଧ-ମ୍ୟାକିନ୍‌ଲେ କ୍ୟାଣ୍ଟର/ପ୍ରଥମ ସନ୍ତାନ-ହାଓୟାର୍ଡ଼ ଫାଷ୍ଟ/ପ୍ରିୟ ନାମ- ଲୁଇବ୍ରୋମ୍‌ଫଲଡ଼/ଏମିଲି ଲାଗି ଗୋଲାପଟିଏ- ଉଇଲିୟମ ଫକ୍‌ନାର୍/ଧଳା କୋକିଳ-ଜନ୍‌ଷ୍ଟେଇନ୍ ବେକ୍/ଯୁଦ୍ଧର ମୂଲ୍ୟ-ଆର୍ନେଷ୍ଟହେମିଙ୍ଗ୍‌ଓୟେ/ଶୟତାନ୍‌ର ଖେଳ- ଷ୍ଟିଫେନ୍ ଭିନ୍‌ସେଣ୍ଟ ବେନେଟ୍/ଘୋଡ଼ା ଚୋର- ଏରାସ୍ କିନ୍ କାଲ୍‌ଡ଼୍‌ଓୟେଲ/ଭୂତ ବର- ୱାସିଙ୍ଗ୍‌ଟନ୍ ଆରଭିଙ୍ଗ୍ ।

## (୪) ଇଉରୋପର ଶ୍ରେଷ୍ଠ ଗଳ୍ପ :

ପ୍ରକାଶକ: ଓଡ଼ିଶା ବୁକ୍ ଷ୍ଟୋର, ୧୯୭୧

ଏହି ପୁସ୍ତକରେ ସ୍ଥାନିତ ଗଳ୍ପ ଓ ଗାଳ୍ପିକ ମାନଙ୍କ ନାମ ନିମ୍ନରେ ପ୍ରଦାନ କରାଗଲା ।

ଦେହମନ-ମରିସ୍ ମେଟାରଲିଙ୍କ/ତମ୍ବୁ-ଲିୟା ଓ ଫ୍ଲାହାର୍ଟି/ଇରଦ୍‌ଗବ-କାପେକ୍ ଶତ୍ରୁ/ ଦିବାଲୋକ-ଜନ୍ ଅଗଷ୍ଟ ଷ୍ଟ୍ରଣ୍ଡବାର୍ଗ/ବୁଢ଼ା ହେଗେଲିର ଶେଷ ନାଚ-ଜ୍ୱୋହାନ୍ ଫକ୍‌ବାର୍ଗେଟ୍/ ଅନୁଶାସନ-ଷ୍ଟେଫାନ୍ ଜେରୋମସ୍କି/ମାଆ-ହ୍ୟାନ୍‌ସ ଏଣ୍ଡାରସନ/କ୍ଷଣ ବସନ୍ତ-ମେରାଶ ଜୋକାଇ/ ଭଉଣୀ-ରାମନ୍ ଡେଲ୍ ଭାଲ୍ ଆଙ୍କଲାନ/ମୁକ୍ତି ସଂଗୀତ-ଜାନ୍ ମାକ୍‌ଗା/ବିଚିତ୍ର ରୀତି- ବୋରାଷ୍ଟାନ୍ କୋଭିଚ୍/ମହାପଣ୍ଡିତ-ଯେଭେଲ୍ ଆରଟି ସୋବୋଝ-ରିଡ୍‌ରିଗୋ ପୈଗାନିନୋ/ହେଟାର ନାଚ-ଜୋନାସ ମେକାସ/ଦାନା-ଏଲିନ ପେଲିନ୍/ଆକାଶର କ୍ରନ୍ଦନ-ନିକୋଲାୟେ ଚସିକ୍ ।

## (୫) ଇଟାଲିର ଶ୍ରେଷ୍ଠ ଗଳ୍ପ :

ପ୍ରକାଶକ: ଓଡ଼ିଶା ବୁକ୍ ଷ୍ଟୋର, ୧୯୬୯

ଏହି ପୁସ୍ତକରେ ସ୍ଥାନିତ ଗଳ୍ପ ଓ ଗାଳ୍ପିକ ମାନଙ୍କ ନାମ ନିମ୍ନରେ ପ୍ରଦାନ କରାଗଲା ।

ଅର୍ଘ୍ୟ-ଗାବ୍ରିୟେଲଦ୍ୟା ଆନୁନ୍‌ସିଓ / ନଗ୍ନସତ୍ୟ-ଲାଇଜି ପିରାନିଦେଲ୍ଲୋ/ବାଘୁଣୀ-ଗିହୋନ୍ନି ଭେରଗା/ଆମ୍ଭର ମୁକ୍ତି-ରବାର୍ଟୋ ବୃକୋ/ଭୁଜଙ୍ଗିନୀ-ଆଲବାର୍ଟୋ ମୋରାଭିୟା/ ଯୁଦ୍ଧକାଳୀନ ଆତ୍ମକଥା-ଏଲିଓ ଭରୋଭିନି/ଆକାଶ ହୃଦୟ-ଗ୍ରାଜିଆ ଦେଲେଦା/ପ୍ରତିଶୋଧ-ମାରୋ ବାନ୍‌ଦେଲ୍ଲୋ/ ଦୁଇ ଶିକ୍ଷକ-ମାରିଓ ସଲଦାତି/ଶୃଗାଳ-ଇଗନତ୍‌ସିଓସିଲୋନ/ଶିକାରୀ ପକ୍ଷୀ-ଗିଓଭାନିବୋକ୍‌କାସିଓ ।

## (୬) ଜର୍ମାନୀର ଶ୍ରେଷ୍ଠ ଗଳ୍ପ :

ପ୍ରକାଶକ : ଓଡ଼ିଶା ବୁକ୍ ଷ୍ଟୋର, ୧୯୬୭

ଏହି ପୁସ୍ତକରେ ସ୍ଥାନିତ ଗଳ୍ପ ଓ ଗାଳ୍ପିକ ମାନଙ୍କ ନାମ ନିମ୍ନରେ ପ୍ରଦାନ କରାଗଲା ।

କାରଣ- ହାରମନିୟ ସୁୟର୍ ମୁଲଲେନ/ବଂଶଧର-ଭିକିବାଉମ୍/ଟଙ୍କା ଅଣା ପାହି-ଷ୍ଟିଫାନ୍ ଜୁଇଗ୍/ସ୍ଥିର ତରଙ୍ଗ-ଫ୍ରାନ୍‌ତ୍‌ସ୍ କାଫ୍‌କା/ବ୍ୟବଚ୍ଛେଦ-ଗେୟର୍ଗ ହାଇମ୍/ଭେଟ-ହାରିସ୍ ଜାସେଙ୍କୋ/ ରାତିରେ ମୂଷା ଖୁଏ-ହଲଫାଗାଙ୍ଗ ବରଶାର୍ଟ/ନବବର୍ଷ ଉପଲକ୍ଷେ ସ୍ୱୀକାରୋକ୍ତି-ହାରମାନ ସୁଡ଼ାରମ୍ୟାନ/ପରଆପଣା-ଟମାସ୍ ମ୍ୟାନ/କଳଙ୍କ- ଓୟଲ୍‌ଟାର କଫ୍‌ମାନ/ଖେଳନା-ନିନୋଆର୍ଣ୍ଣୋ ପ୍ରତିବିମ୍ବ-ଆର୍ଣ୍ଣେଷ୍ଟ ଥି-ଆ ହଫ୍‌ମ୍ୟାନ୍ ।

## (୭) ବାଲାଂଦେଶର ଶ୍ରେଷ୍ଠ ଗଳ୍ପ :

(ଦ୍ୱିତୀୟ ଭାଗ) ପ୍ରକାଶକ: ଜେ ମହାପାତ୍ର ଏଣ୍ଡ କୋ, ୧୯୭୨

ଏହି ସଂକଳନରେ ବୋରହାନଉଦ୍ଦିନ୍ ଜାହାଙ୍ଗିରଙ୍କ 'ଅବିଚ୍ଛିନ୍ନ', ଜ୍ୟୋତିପ୍ରକାଶ ଦତ୍ତଙ୍କ 'ପିତୃଘ୍ନ', ଆବୁଜାୟାସାରଙ୍କ 'କୁମିରମାରିର ଚର', ଜହିର୍ ରାୟହାନ୍‌ଙ୍କ 'କଫିନ୍' ତଳେ ତତଲା ମାଂସ', ଅବଦୁଲ ଗଫାର ଚୌଧୁରୀଙ୍କ 'କେୟା, ମୁଁ ଓ ମେଜର୍', ସିରାଜଉଦ୍ଦିନ୍ ଆହମେଦଙ୍କ 'କାନ୍ନୁ', ଅହମ୍ମଦ ବୁଲ୍ ବୁଲ୍ ଇସଲାମଙ୍କ 'ଦଂଶନ', ଶହୀଦୁଲଙ୍କ 'ବିରାଡ଼ି' ଓ ଶକେତ ଅଲୀଙ୍କର 'ଚଇତିବଉଦ', ଗଳ୍ପ ସଂକଳିତ ହୋଇଛି ।

ଏହି ସଂକଳନରେ 'ଶୁଣନ୍ତୁ ଏବେ' ଶୀର୍ଷକ ପୃଷ୍ଠବନ୍ଧରେ ଲକ୍ଷ୍ମୀନାରାୟଣ ବାଂଲାଦେଶ ସ୍ୱାଧୀନତା ସଂଗ୍ରାମର ଏକ ଅତି ସଂକ୍ଷେପ ଚିତ୍ର ବର୍ଣ୍ଣନା କରିବା ଛଳରେ ଏହାକୁ ଅନୁବାଦ କରିବା ପ୍ରସଙ୍ଗରେ ଲେଖିଛନ୍ତି - 'ସେହି ପଡ଼ୋଶୀ ସ୍ୱାଧୀନ ଦେଶର ପ୍ରତିନିଧି ମୂଳକ କାହାଣୀ ସଞ୍ଚୟନର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଅପରର ବହୁ କଷ୍ଟ ଉପାର୍ଜିତ ଗୌରବରେ ଆହ୍ଲାଦ କୀର୍ତ୍ତନ, ଦ୍ୱିତୀୟତଃ ସାହିତ୍ୟ ରାଖି-ବନ୍ଧନ, ଆଉ ତୃତୀୟତଃ ଆମ ପାଠକଙ୍କୁ ପଡ଼ୋଶୀ ସାହିତ୍ୟ ସମ୍ବନ୍ଧରେ ସମ୍ୟକ ଧାରଣା ଦାନ । ଯାହାହେଉ ଶାଶ୍ୱତ ସାରସ୍ୱତ ମଣ୍ଡପରେ ସୀମା ସରହଦର କୌଣସି ପ୍ରଶ୍ନ ଉଠି ନପାରେ । ନିର୍ବାଚିତ ଗପ ଗୁଡ଼ିକ ଜରିଆରେ ଲେଖକମାନେ ସେହି ଅଙ୍ଗୀକାର ଅତୀବ ଦକ୍ଷତା ସହକାରେ ପାଳନ କରିଛନ୍ତି ।

ଏହି ସଂକଳନକୁ ମଧ୍ୟ ଅନୁସୃଜନ ନ କହି ଅନୁବାଦ ବୋଲି କହିବା ଠିକ୍ ହେବ କାରଣ ଏହା ମୂଳ ବଙ୍ଗଳାରୁ ଅନୂଦିତ ।

ଉପରୋକ୍ତ ସଂକଳନଟି ବାଲାଂଦେଶ ଶ୍ରେଷ୍ଠ ଗଳ୍ପର ଦ୍ୱିତୀୟ ଭାଗ ବୋଲି ଉପଲବ୍ଧ ପୁସ୍ତକରେ ଲେଖାହୋଇଅଛି । ମାତ୍ର ଏହାର ପ୍ରଥମ ଭାଗ ଉପଲବ୍ଧ ନୁହେଁ ।

## (୮) ନଗ୍ନସତ୍ୟ: ମୂଳ ଲେଖକ ଲୁଇଜି ପିରାନ୍‌ଦେଲ୍ଲୋ :

**(ଇଟାଲୀୟ ନୋବେଲ୍ ଲରିଏଟ-୧୯୩୪)**

ପ୍ରକାଶକ: ପ୍ରଫୁଲ୍ଲ ଚନ୍ଦ୍ର ଦାଶ, କଟକ, ୧୯୫୭

ମୂଳ ଲେଖକଙ୍କର ଛଅଗୋଟି କାଳଜୟୀ ଗଳ୍ପ ଯଥା - ନଗ୍ନ ସତ୍ୟ (ଦି ନେକେଡ଼ ଟ୍ରୁଥ୍), ସେ (ହି), ମାଛି (ଦି ଫ୍ଲାଏ), ସେବାର ମହିମା (ଦି ସ୍ପିରିଟ୍ ଅଫ୍ ସର୍ଭିସ), ଧାଈ (ଦି ନର୍ସ) ଏବଂ ବେଶ୍ ଭଲ (ଭା ବେନେ) ସଂକଳିତ ହୋଇଛି । ଏହି ଗଳ୍ପ ଗୁଡ଼ିକ ପିରାନ୍ ଦେଲ୍ଲୋଙ୍କ ଗଳ୍ପ ସମୂହର ଗ୍ରନ୍ଥ "ନଭେଲି ପାର୍ ଅନ୍ ଆନୋ" ରୁ ସଂଗୃହିତ ଓ ଅନୁସୃଜିତ ।

## (୯) ଲଢ଼େଇ ସରିଲା ଯେବେ :

ପ୍ରକାଶକ: ମହୋଦଧି, କଲିକତା - ୧୯୬୯

ଯୁଦ୍ଧୋତ୍ତରର ପଟ୍ଟଭୂମି ଉପରେ ଆଧାରିତ, ଜର୍ମାନ ଦେଶର କେତୋଟି ପ୍ରତିନିଧି ମୂଳକ ଗଳ୍ପର ଓଡ଼ିଆ ଅନୁସୃଜନ ଏଥିରେ ସଙ୍କଳିତ । ଏହି ଗଳ୍ପ ଗୁଡ଼ିକ ବିଖ୍ୟାତ ସ୍ୱିଡ଼ିଶ୍ ଲେଖିକା ସିଗିଦ୍ କାଲେ ନ୍ୟାସ ଭାରତବର୍ଷ ପାଇଁ ଇଂରେଜୀରେ ଅନୁବାଦ କରିଥିଲେ ଏବଂ ଲକ୍ଷ୍ମୀନାରାୟଣ ଉକ୍ତ ଇଂରାଜୀ ଅନୁବାଦକୁ ମୂଳଗ୍ରନ୍ଥ ରୂପେ ଗ୍ରହଣ କରି ଗଳ୍ପ ଗୁଡ଼ିକର ଓଡ଼ିଆ ଅନୁସୃଜନ କରିଛନ୍ତି । ଏଥିରେ ସନ୍ନିବେଶିତ ଗଳ୍ପ ଗୁଡ଼ିକ ହେଲା:

ହାଇନ୍‌ଜରିଚୀଙ୍କର 'ସୌଭାଗ୍ୟ', ଏଲିଜାବେଥ୍ ଲାଙ୍ଗାସେର୍‌ଙ୍କର 'ଅନ୍ତରାଳେ', ମେରୀ ଲୁଇସି କାସ୍‌ନିସ୍‌ଙ୍କ 'ମୋଟୀ ଝିଅ', ଯୋସେଫ୍ ମାର୍ଟିନ ବୟରଙ୍କର 'ଉତ୍ତାପ ସନ୍ଧାନୀ', କାର୍ଲ୍ ଶେଇସାର୍‌ଙ୍କ ସବୁଜ ହରିଣ', ଉଲ୍ ଫଗାଙ୍ଗ୍ ଡେସାଇଷ୍ଟାରଙ୍କ 'ଚିତ୍ର ଶାଳାର ଭୋଜି', ହାଇନରିଖ୍ ବୋଲ୍‌ଙ୍କ 'ଲଢ଼େଇ ସରିଲା ଯେବେ', ରୋଲଫ ସ୍ନୋୟେସିଙ୍କ 'ଗୋଟିଏ ମୁଦ୍ରା', ହାନ୍‌ସ ବେଣ୍ଡାରଙ୍କ 'ତୀର୍ଥ ଯାତ୍ରା', ଉଲ୍‌ଫାଗାଙ୍ଗ ବରସାର୍ଟଙ୍କ 'ସେହି ମଙ୍ଗଳବାର', ଇଲ୍ ସେ ଆଇଖ୍‌ନଗାରଙ୍କ 'ଖୋଲାଚିଠି', ଶେରହାର୍ଡ ଜ୍ୱୟେରେନ୍‌ଟ୍‌ସଙ୍କ 'ଛାତ ଉପରେ', ମାକସ ବନ୍ ଡ଼ର ଗ୍ରୁୟେନ୍‌ଙ୍କ 'କାରଖାନା ପାରିଷଦ', ମାର୍ଟିନ୍ ଭାଲ୍‌ସାର୍‌ଙ୍କ 'ଅଭିଯୋଗ', ହୁବାର୍ଟ ଫିକ୍‌ଟେଙ୍କ 'ମୁକ୍ତ ଅଞ୍ଚଳ', ଜୋହେନସ ବବ୍ରୋସ୍କିଙ୍କ 'ଅନ୍ଧାର ଆଲୁଅ', ଓ ଆନା ସେଘାର୍ସଙ୍କ 'ମୃତ କନ୍ୟାଙ୍କ ଅଭିସାର ।

ଉପରୋକ୍ତ ଗଳ୍ପମାଳା ବାହାରେ ଆହୁରି ଅନେକ ଅନୁସୃଜିତ ଗଳ୍ପ ସଂକଳନ ଅଛି । (ତାଲିକା ପରିଶିଷ୍ଟ-୩ରେ ସନ୍ନିବେଶିତ) । ପ୍ରକାଶିତ ସଂକଳନ ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଆହୁରି ଅନେକ ଅନୁସୃଜିତ ଗଳ୍ପ ପ୍ରକାଶିତ । ସମସ୍ତ ସଂକଳନ ଓ ପତ୍ର ପତ୍ରିକାରେ ପ୍ରକାଶିତ ଗଳ୍ପ ସଂଗ୍ରହ କରି ପଢ଼ି ଆଲୋଚନା କରିବା ଏକ ଗବେଷଣା ସାପେକ୍ଷ କାର୍ଯ୍ୟ । ଯାହା ମନେହୁଏ ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ ସୁଦ୍ଧା ପ୍ରସିଦ୍ଧି ଲାଭ କରିଥିବା ପ୍ରାୟ ସମସ୍ତ କଥାକାରଙ୍କୁ ଅନୁସୃଜନ ମାଧ୍ୟମରେ ସେ ଓଡ଼ିଆ ପାଠକ ମାନଙ୍କ ସହିତ ପରିଚିତ କରାଇଛନ୍ତି ।

## ଅନ୍ୟାନ୍ୟ ଅନୁବାଦ ଓ ଅନୁସୃଜନ :

ଗଳ୍ପ ଓ ଉପନ୍ୟାସକୁ ବାଦ୍ ଦେଲେ ଲକ୍ଷ୍ମୀନାରାୟଣ ଆହୁରି ଅନେକ ଗ୍ରନ୍ଥ ଅନୁବାଦ କରିଛନ୍ତି ।

ତାଙ୍କ ଦ୍ୱରା ଅନୁଦିତ 'ମଣି ମହେଶ' ଭ୍ରମଣ ସାହିତ୍ୟର ଏକ ଅନବଦ୍ୟ କୃତି । ଉମାପ୍ରସାଦ ମୁଖୋପାଧ୍ୟାୟ ବିରଚିତ ଏହାର ମୂଳଗ୍ରନ୍ଥ ଭ୍ରମଣ କାହାଣୀ ଭାବରେ ୧୯୭୧

ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହୋଇଥିଲା । ଏହି ପୁସ୍ତକର ଓଡ଼ିଆ ଅନୁବାଦ ନିମନ୍ତେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କୁ ଚୟନ କରିଥିଲା । ୨୦୦୨ ମସିହାରେ ଏହି ଅନୁଦିତ ଭ୍ରମଣ କାହାଣୀ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇ ବହୁ ପ୍ରଶଂସା ଲାଭ କରିଛି ।

ତାଙ୍କ ଅନୁସୃଜନର ଅନ୍ୟ ଏକ ସଫଳ କୃତି, ବିଜ୍ଞାନ ଆଧାରିତ କିଶୋର ଉପନ୍ୟାସ 'ଅଜବ ହାତୀ' । ଆଲେକଜାଣ୍ଡାର ବଲିୟାୟେଭଙ୍କ ମୂଳଗ୍ରନ୍ଥର ଏହା ଅନୁସୃଜନ, ଯାହା 'ବହିଘର' ବାଲେଶ୍ୱରଙ୍କ ଦ୍ୱାରା ୧୯୯୮ ମସିହାରେ ପ୍ରକାଶିତ ।

ସେହିପରି 'କଳାପିଲା' ଆମେରିକୀୟ ଲେଖକ ରିଚାର୍ଡ଼ ରାଇଟ୍‌ଙ୍କ ଲିଖିତ 'ବ୍ଲାକ ବଏ' ଶିଶୁ ଉପନ୍ୟାସର ସଂକ୍ଷେପିତ ଅନୁସୃଜନ । ୧୯୯୩-୯୪ ମସିହାରେ ଧାରାବାହିକ ଭାବରେ ଏହା ଶିଶୁ ଲେଖା ପତ୍ରିକାରେ ପ୍ରକାଶିତ ହୋଇ ବିପୁଳ ପାଠକୀୟ ଶ୍ରଦ୍ଧା ଲାଭ କରିଥିଲା । 'ବହିଘର" ବାଲେଶ୍ୱରଙ୍କ ଦ୍ୱାରା ଏହା ୧୯୯୬ ମସିହାରେ ପୁସ୍ତିକା ଆକାରରେ ପ୍ରକାଶିତ । 'ଗାନ୍ଧୀ ଅବତାର' ଓ 'ବିବେକାନନ୍ଦ : ଜୀବନ ଓ ବାଣୀ' ତାଙ୍କର ଆଉ ଦୁଇଟି ଅନୁଦିତ ଜୀବନ ଚରିତ ।

ମୋଟାମୋଟି ଲକ୍ଷ୍ମୀନାରାୟଣଙ୍କ ସମଗ୍ର ଅନୁବାଦ ଓ ଅନୁସୃଜନ କୃତିକୁ ଲକ୍ଷ୍ୟ କଲେ, ସେ ଯେ ଓଡ଼ିଆ ଅନୁବାଦ ସାହିତ୍ୟର ଉଦ୍‌ଗାତା ଏହା ସ୍ୱୀକାର କରିବାକୁ ହେବ । ତାଙ୍କର ଅନୁବାଦ/ ଅନୁସୃଜନ ମାଧ୍ୟମରେ ସେ ଓଡ଼ିଆ ପାଠକ ଓ ସାହିତ୍ୟିକ ମାନଙ୍କୁ ଆନ୍ତର୍ଜାତିକ ଚିନ୍ତା ଓ ଚେତନାର ସ୍ତରକୁ ନେଇଯାଇଛନ୍ତି ।

ତାଙ୍କ ଅନୁବାଦ ବା ଅନୁସୃଜନର ପଦ୍ଧତିଟି ହେଲା, ମୂଳ ଲେଖକଙ୍କୁ ପାଠକର ଭାବ ରାଜ୍ୟକୁ ଘେନି ଆସିବା । ଏଥିନିମନ୍ତେ ଏକ ଆଞ୍ଚଳିକ ପରିବେଶ ତିଆରି କରିବା ପାଇଁ ସେ ସମଗ୍ର ପାଠ୍ୟକୁ ଧାଡ଼ି ଧାଡ଼ି ଅନୁବାଦ ନକରି, ଭାବ ବସ୍ତୁ ଓ ଚରିତ୍ର ମାନଙ୍କୁ ଅକ୍ଷୁର୍ଣ୍ଣ ରଖି, ଉପଯୁକ୍ତ ଓଡ଼ିଆ ଶବ୍ଦ ଓ ଢ଼ଗ ଢ଼ମାଳି ପ୍ରୟୋଗ କରୁଥିଲେ । ଏତଦ୍ୱାରା ସେ ଆମ ସାହିତ୍ୟିକ ମାନଙ୍କ ନିମନ୍ତେ ଆଧୁନିକ ପାଶ୍ଚାତ୍ୟ ସାହିତ୍ୟର ଦ୍ୱାର ଉନ୍ମୁକ୍ତ କରିଛନ୍ତି । ଗଳ୍ପ, ଉପନ୍ୟାସ, ଭ୍ରମଣ କାହାଣୀ, ଶିକାର, ଜୀବନ ଚରିତ, ବିଜ୍ଞାନ ଓ ଶିଶୁସାହିତ୍ୟ ଇତ୍ୟାଦି ଅନେକ କ୍ଷେତ୍ରରେ ସେ ଅନୁବାଦର ନାନା ପରୀକ୍ଷା ନିରୀକ୍ଷା କରି ସଫଳ ହୋଇଛନ୍ତି ।

ତାଙ୍କ ଦ୍ୱାରା ଅନୁଦିତ ଓ ପ୍ରକାଶିତ ସମସ୍ତ ରଚନାକୁ ଲକ୍ଷ୍ୟ କଲେ ଜଣାଯାଏ, ସେ ଓଡ଼ିଆ ସାହିତ୍ୟକୁ ଅନ୍ୟ ଭାଷାରେ ଅନୁବାଦ କରିବାର ମହତ୍ କାର୍ଯ୍ୟଟିରେ ଆଦୌ ହାତ ଦେଇନାହାଁନ୍ତି । ତେବେ ଡ଼କ୍ଟର ଭାବଗ୍ରାହୀ ମିଶ୍ରଙ୍କ ସହ ତାଙ୍କର ଚିଠି ପତ୍ରର ଆଦାନ ପ୍ରଦାନରୁ ବୁଝାଯାଏ, ଶେଷ ଜୀବନରେ ସେ ଏଥିରେ ମଧ୍ୟ ହାତ ଦେଇଥିଲେ । କିନ୍ତୁ ତାହା ସାକାର ହୋଇପାରି ନାହିଁ । ଏହି ଚିଠିର ନକଲ ପରିଶିଷ୍ଟ-୬, ଚିଠି ନଂ-୩ ରେ ସନ୍ନିବେଶିତ ହୋଇଛି ।

## ଅନ୍ୟାନ୍ୟ ରଚନା :

ଆଧ୍ୟାତ୍ମିକ ଦର୍ଶନ, ଜୀବନ ଚରିତ, ଶିଶୁସାହିତ୍ୟ ଇତ୍ୟାଦିକୁ ନେଇ ଲକ୍ଷ୍ମୀନାରାୟଣ ପ୍ରାୟ ପନ୍ଦର ଖଣ୍ଡ ପୁସ୍ତକ ରଚନା କରିଛନ୍ତି । (ତାଲିକା, ପରିଶିଷ୍ଟ -୩ରେ ସନ୍ନିବେଶିତ)

ସେ କୌଣସି ଆଧ୍ୟାତ୍ମିକ ସଂଗଠନ ବା ସଂସ୍ଥାର ପ୍ରତ୍ୟକ୍ଷ ସଦସ୍ୟ ନଥିଲେ । ସେ ବିଶ୍ୱାସ କରୁଥିଲେ, ଜଗତର ଏକମାତ୍ର ସତ୍ୟକୁ ଉପଲବ୍ଧି କରିବା ପାଇଁ ଅନେକ ମତ ଓ ଅନେକ ପଥ ରହିଛି । ଲକ୍ଷ୍ୟ କିନ୍ତୁ ଗୋଟିଏ - "ଏକମ୍ ବ୍ରହ୍ମ, ଦ୍ୱିତୀୟ ନାସ୍ତି" । ସମସ୍ତେ ଅମୃତର ସନ୍ତାନ । ସେହି ଅମୃତତ୍ତ୍ୱକୁ ଜାଣିବା ପାଇଁ କୌଣସି ଜାତି ଧର୍ମର ଆବଶ୍ୟକତା ନାହିଁ । ଜାତି ଧର୍ମ ଇତ୍ୟାଦି ଗୋଟାଏ ଶୃଙ୍ଖଳିତ ସାମାଜିକ ବ୍ୟବସ୍ଥା । ସଦସ୍ୟତା ଗ୍ରହଣ ନକରିବା ସତ୍ତ୍ୱେ ସେ ଏକାଧିକ ଆଧ୍ୟାତ୍ମିକ ଅନୁଷ୍ଠାନର ଦର୍ଶନ ଓ ତତ୍ତ୍ୱକୁ ଗଭୀର ଶ୍ରଦ୍ଧାର ସହ ଅଧ୍ୟୟନ ଓ ଅଭ୍ୟାସ କରି ସେ ସବୁର ସାରମର୍ମକୁ ଆଲୋଚନା ଛଳରେ ଆଧ୍ୟାତ୍ମିକ ଦର୍ଶନ ସମ୍ବଳିତ ଜୀବନ ଚରିତ ମାନଙ୍କରେ ଉପସ୍ଥାପିତ କରିଛନ୍ତି । 'ଏକଲା ଚାଲ', 'କୃପା କର ଦୀନ ଜନେ', 'ଯୁଗପୁରୁଷ', 'ଯୀଶୁ', 'ସତ୍‌ସଙ୍ଗ', 'ଯେତେ ମତ ସେତେ ପଥ', 'ଜୟଗୁରୁ' ଇତ୍ୟାଦି ତାଙ୍କର ଏହି ଶ୍ରେଣୀୟ ପୁସ୍ତକାବଳୀ ।

ନିଜେ ପୋଲିସ୍ ବିଭାଗରେ ଦୀର୍ଘ ପ୍ରାୟ ଚାଳିଶ ବର୍ଷ କାମ କରିଥିବା ବେଳେ ଅଭିଜ୍ଞତାକୁ ଆଧାର କରି 'ପୋଲିସ ଦର୍ଶନ' ନାମରେ ସେ ଖଣ୍ଡିଏ ପୁସ୍ତକ ରଚନା କରିଛନ୍ତି । ଆଦର୍ଶ ପୋଲିସ୍‌ର ଜୀବନ ଦର୍ଶନ ଏହି ପୁସ୍ତକରେ ସୂଚିତ ହୋଇଅଛି ।

## ଆତ୍ମଜୀବନୀ : 'ଥକାମନ'

୧୯୯୦ ମସିହା ବେଳକୁ ଲକ୍ଷ୍ମୀନାରାୟଣଙ୍କର ବୟସ ଏକାଅଶି (୮୧) । ସେତେବେଳକୁ ସେ ଅସୁସ୍ଥ ଓ କ୍ଳାନ୍ତ ।

ସେତିକିବେଳେ ତାଙ୍କର ପ୍ରିୟ ବନ୍ଧୁ ବିଶିଷ୍ଟ ସାହିତ୍ୟିକ ତଥା ଓଡ଼ିଶା କଲଚରାଲ୍ ଏକାଡ଼େମୀ, ରାଉରକେଲାର ପ୍ରତିଷ୍ଠାତା ସ୍ୱର୍ଗତ ରଜନୀକାନ୍ତ ଦାଶଙ୍କ ବାରମ୍ବାର ଅନୁରୋଧ କ୍ରମେ ସେ ଆରମ୍ଭ କରିଥିଲେ ଆତ୍ମଜୀବନୀ ରଚନା । ଏହି ଆତ୍ମଜୀବନୀର ଶୀର୍ଷକ ଥିଲା 'ଥକାମନ' । ବାସ୍ତବରେ ସେ ସେତେବେଳକୁ ଥକି ପଡ଼ିଥିଲେ ।

ଏହି ଥକାମନରେ ସେ ୨୮ଟି ଅନୁଚ୍ଛେଦ ପର୍ଯ୍ୟାୟ କ୍ରମେ ଲେଖିଥିଲେ ଓ ରାଉରକେଲାରୁ ରଜନୀକାନ୍ତ ଦାଶଙ୍କ ଦ୍ୱାରା ସଂପାଦିତ ତ୍ରୟମାସିକ ସାହିତ୍ୟ ପତ୍ରିକା 'ନବପତ୍ର'ରେ ତାହା

---

ଏହି ଆତ୍ମଜୀବନୀର ବିସ୍ତାର ଆଲୋଚନା ନକରି ପାଠକ ମାନଙ୍କୁ ଏହି ଇତିହାସ ସଂପର୍କରେ କିଂଚିତ୍ ପରିଚୟ ଦେବା ଅଭିପ୍ରାୟରେ ତହିଁର କିଛି ଉଦ୍ଧୃତାଂଶ ପରିଶିଷ୍ଟ ଆଠ (୮) ରେ ଉପସ୍ଥାପନ କରାଯାଇଅଛି ।

୧୯୯୦ ରୁ ୧୯୯୩ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା । ବାରମ୍ୱାର ଅସୁସ୍ଥତା କାରଣରୁ ୨୮ଟି ଅନୁଚ୍ଛେଦ ପରେ ସେ ଏହା ଆଉ ଲେଖି ପାରିନାହାନ୍ତି । ତାଙ୍କର ଆତ୍ମ ଜୀବନୀ ଅସମ୍ପୂର୍ଣ୍ଣ ରହିଯାଇଛି ।

'ସ୍ମୃତି ଓ ସୃଜନୀ' ସ୍ତମ୍ଭରେ ଧାରାବାହିକ ପ୍ରକାଶିତ ହୋଇଥିଲା 'ନବପତ୍ର'ରେ । ପ୍ରଥମ ପରିଚ୍ଛେଦର ଉପକ୍ରମଣିକାରେ ସମ୍ପାଦକ ଲେଖିଥିଲେ -

"ସ୍ମୃତି ଓ ସୃଜନୀ ବିଗତ ଷାଠିଏ ବର୍ଷର । ସାହିତ୍ୟିକ ଲକ୍ଷ୍ମୀନାରାୟଣ ମହାନ୍ତି ବ୍ୟକ୍ତି ନୁହଁନ୍ତି, ଆମ ସମୟର ଏକ ଅନୁଷ୍ଠାନ ।

ତାଙ୍କ ଭଳି ଜଣେ ସ୍ୱାବଲମ୍ବନଶୀଳ ଏବଂ ନିରଭିମାନୀ ସାହିତ୍ୟ ସ୍ରଷ୍ଟାଙ୍କ ସ୍ମୃତି ମନ୍ଥନରୁ ଏପରି ଅନେକ ଉପାଦାନ ଉପଲବ୍ଧ, ଯାହାକୁ ଗୋଟିଏ ପୁରୁଷ ପାଇଁ ସମଗ୍ର ଓଡ଼ିଆ ସାହିତ୍ୟ ଜଗତର ଇତିହାସ ସଂପଦ ବି କୁହାଯାଇପାର ।" (ନବପତ୍ର- ୧ମ ସଂଖ୍ୟା- ୧୧୯୦- ପୃ.୩୩)

ଏହି ଅସମ୍ପୂର୍ଣ୍ଣ ଆତ୍ମଜୀବନୀରୁ ସତରେ ଅତି ସାବଲୀଳ ଢ଼ଙ୍ଗରେ ଲକ୍ଷ୍ମୀନାରାୟଣ ଆମ ସମସ୍ତଙ୍କ ପାଇଁ ଅନେକ ଉପାଦାନ ଛାଡ଼ି ଯାଇଛନ୍ତି । କିନ୍ତୁ ସମୁଦାୟ ୨୮ଟି ଅଧ୍ୟାୟ ଭିତରେ ସେ କୁତ୍ରାପି ନିଜର ବା ନିଜ ସାହିତ୍ୟ କୃତୀର ଜୟଗାନ କରିନାହାଁନ୍ତି । ବରଂ ଏଥି ଭିତରେ ସେ ନିଜ ଜନ୍ମମାଟିର ଜୟଗାନ କରିବା ସହିତ ସେ ସମୟର ଅନେକ ବିଶିଷ୍ଟ ବ୍ୟକ୍ତି, ପରମ୍ପରା ଓ ପର୍ବପର୍ବାଣୀ ତଥା ନାଟକ ଅଭିନୟ ପରମ୍ପରା ସଂପର୍କରେ ସ୍ମୃତି ଚାରଣ କରିଛନ୍ତି, ଯାହା ବାସ୍ତବରେ ଆମ ପାଇଁ ଇତିହାସ ସମ୍ପଦ ପାଲଟି ଯାଇଛି ।

## ସମ୍ପାଦନା :

ଲକ୍ଷ୍ମୀନାରାୟଣ ବିଭିନ୍ନ ପତ୍ର ପତ୍ରିକା ସମ୍ପାଦନା କ୍ଷେତ୍ରରେ ମଧ୍ୟ ନିଜର ଯୋଗ୍ୟତା ପ୍ରମାଣିତ କରିଯାଇଛନ୍ତି ।

୧୯୪୬ ମସିହାରେ 'ଓଡ଼ିଶା ଲେଖକ ସହଯୋଗ ସମିତି ଲିଃ' ପ୍ରତିଷ୍ଠିତ ହେବାପରେ ଏହି ଅନୁଷ୍ଠାନର ମୁଖପତ୍ର ତ୍ରୟମାସିକ ପତ୍ରିକା 'ଉଦୟ' ତାଙ୍କର ଦ୍ୱାରା ସମ୍ପାଦିତ ହୋଇ ସେତେବେଳେ ଓଡ଼ିଶାର ଅନ୍ୟତମ ସମ୍ଭ୍ରାନ୍ତ ପତ୍ରିକା ଭାବରେ ମାନ୍ୟତା ପାଇଥିଲା । ୧୯୪୭ ମସିହାରୁ ୧୯୫୦ ମସିହା ପର୍ଯ୍ୟନ୍ତ ଏହା ନିୟମିତ ତ୍ରୟମାସିକ ପତ୍ରିକା ଭାବରେ ପ୍ରକାଶିତ ହେଉଥିଲା । ତତ୍‌କାଳୀନ ସମସ୍ତ ପ୍ରତିଷ୍ଠିତ ଲେଖକମାନଙ୍କ ସହିତ ପ୍ରତିଭାଦୀପ୍ତ ତରୁଣ ଲେଖକମାନଙ୍କୁ ସାମିଲ୍ କରି ଲକ୍ଷ୍ମୀନାରାୟଣ ଏହି ପତ୍ରିକାର ମାନ ବୃଦ୍ଧି କରିବା ସହିତ ସମ୍ପାଦନା କ୍ଷେତ୍ରରେ ନିଜକୁ ଯୋଗ୍ୟ ପ୍ରମାଣିତ କରିଥିଲେ ।

ଅବସର ପରେ ଭଦ୍ରକରେ ଅବସ୍ଥାନ କଲା ଉତ୍ତାରୁ ଭଦ୍ରକରୁ ପ୍ରକାଶିତ 'ଗଳ୍ପଘର' ପତ୍ରିକାର ସମ୍ପାଦନା ଦାୟିତ୍ୱ (୧୯୮୦-୧୯୮୨) ନେଇ ସେ ଏହି ପତ୍ରିକାକୁ ଏକ ଅଗ୍ରଣୀ କଥା ସାହିତ୍ୟର ପତ୍ରିକା ଭାବେ ପ୍ରତିଷ୍ଠିତ କରାଇ ପାରିଥିଲେ ।

ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମିଳନୀର ମୁଖପତ୍ର ସମ୍ପାଦନା କ୍ଷେତ୍ରରେ ତାଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା, ଯଦିଓ ବୟସାଧିକ୍ୟ କାରଣରୁ ସେ ନିଜେ ଏହାର ପ୍ରତ୍ୟକ୍ଷ ସମ୍ପାଦନାର ଦାୟିତ୍ୱ ନେଇ ନଥିଲେ ।

ତାଙ୍କରି ସମ୍ପାଦନାରେ ୧୯୭୯ ମସିହାରେ କବି ଗୁରୁ ଉପେନ୍ଦ୍ର ପ୍ରସାଦ ମହାନ୍ତିଙ୍କ ଉଦ୍ଦେଶ୍ୟରେ ଏକ ସମ୍ବର୍ଦ୍ଧନା ପୁସ୍ତକ ମଧ ପ୍ରକାଶିତ ହୋଇଥିଲା । 'ଉପେନ୍ଦ୍ର ପ୍ରସାଦ: ଜୀବନ ଓ ସାହିତ୍ୟ' ଶୀର୍ଷକର ଏହି ସଂକଳନ ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ଅତି ଦକ୍ଷତାର ସହିତ ସମ୍ପାଦିତ ହୋଇଥିଲା । ୧୯୮୩ ମସିହାରେ ଭଦ୍ରକର ଜନପ୍ରିୟ ଆଇନଜୀବୀ ସ୍ୱର୍ଗତ ଚିନ୍ତାମଣି ମହାନ୍ତିଙ୍କ ସ୍ମରଣରେ ପ୍ରକାଶିତ ସ୍ମରଣିକା 'ଜୟ ତୁ ଚିନ୍ତାମଣି'ର ସମ୍ପାଦନା ମଧ ଲକ୍ଷ୍ମୀନାରାୟଣ କରିଥିଲେ ।

ଭଦ୍ରକର ସାହିତ୍ୟ ସଂସ୍କୃତିପ୍ରେମୀ ଜନ ସାଧାରଣ ଏହି ଦୁଇଖଣ୍ଡ ସ୍ମରଣିକାକୁ ନିଜ ଜନ୍ମମାଟିର ସାଂସ୍କୃତିକ ଦସ୍ତାବିଜ୍ ଭାବରେ ସାଇତି ରଖିଛନ୍ତି ।

## ସାରସ୍ୱତ ସଂଗଠନ :

ଲକ୍ଷ୍ମୀନାରାୟଣ ଥିଲେ ଜଣେ ସାରସ୍ୱତ ସାଧକ । ତାଙ୍କର ସାଧନା କେବଳ ସାହିତ୍ୟ ସୃଜନ କର୍ମ ଭିତରେ ସୀମାବଦ୍ଧ ନଥିଲା । ସାରସ୍ୱତ ସଂଗଠନ କ୍ଷେତ୍ରରେ ମଧ ତାଙ୍କର ଅବଦାନ ଅବିସ୍ମରଣୀୟ । ବିଦ୍ୟାଳୟରେ ଅଧ୍ୟୟନ ସମୟରୁ ସାହିତ୍ୟ ପ୍ରତି ତାଙ୍କର ଯେତିକି ଶ୍ରଦ୍ଧା ଥିଲା, ସାହିତ୍ୟ ସଂଗଠନ ପ୍ରତି ମଧ ସେତିକି ଆଗ୍ରହ ଥିଲା ।

ନବମ ଶ୍ରେଣୀରେ ପଢୁଥିବା ବେଳେ ସହପାଠୀ ଗୌର ମହାପାତ୍ରଙ୍କୁ ସାଥୀରେ ଧରି ସେ ଆରମ୍ଭ କରିଥିଲେ 'ରଶ୍ମିରେଖା' ନାମକ ଏକ ହାତଲେଖା ପତ୍ରିକା – ଏ ସଂପର୍କରେ ପୂର୍ବରୁ ବର୍ଣ୍ଣନା କରାଯାଇଛି ।

୧୯୩୬ ମସିହାରେ ସେ ନିଜ ଗ୍ରାମ ଜଗନ୍ନାଥପୁରରେ ଆରମ୍ଭ କରିଥିଲେ 'ଜଗନ୍ନାଥ ସାହିତ୍ୟ ସମିତି' । ସେତେବେଳେ ତାଙ୍କୁ ମାତ୍ର ସତର ବର୍ଷ ବୟସ । ଏହି ତରୁଣ ବୟସରେ ସେ ଗ୍ରାମର ଯୁବକ ମାନଙ୍କୁ ଏକାଠି କରି ଏହି ଅନୁଷ୍ଠାନ ଗଢ଼ିଥିଲେ । ଏହି ଯୁବଗୋଷ୍ଠୀକୁ ସାହିତ୍ୟମନସ୍କ କରାଇବା ଓ ଦୂର ଦୂରାନ୍ତର ସାହିତ୍ୟିକ ମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ତାଙ୍କ ଭିତରେ ଅପୂରନ୍ତ ଉତ୍ସାହ ଭରି ରହିଥିଲା । ଅନୁଷ୍ଠାନର ପ୍ରାଥମିକ କାର୍ଯ୍ୟ ସ୍ୱରୂପ ଆରମ୍ଭ ହୋଇଥିଲା ଏହାର ନିଜସ୍ୱ ପାଠାଗାର । ସମିତିର ସଭ୍ୟମାନେ ବିଭିନ୍ନ ବଦାନ୍ୟ ବ୍ୟକ୍ତି ମାନଙ୍କ ଠାରୁ ପୁସ୍ତକ ସଂଗ୍ରହ କରୁଥିଲେ । ଲକ୍ଷ୍ମୀନାରାୟଣ ନିଜେ ପକେଟ୍ ଖର୍ଚ୍ଚ ବଂଚାଇ ପ୍ରତିମାସ କିଛି କିଛି ପୁରୁଣା ବହି କିଣୁଥିଲେ ।

ସମିତିର ପରବର୍ତ୍ତୀ ପଦକ୍ଷେପ ହେଲା ନୂତନ ସାହିତ୍ୟିକ ମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ସେମାନଙ୍କ ପୁସ୍ତକ ପ୍ରକାଶନର ଦାୟିତ୍ୱ ନେବା । ସେତେବେଳର ଯୁବ ବିପ୍ଳବୀ କବି ରଜନୀକାନ୍ତ ଦାସଙ୍କ କବିତା ଗୁଚ୍ଛ 'ସଂଘର୍ଷ' ଅନୁଷ୍ଠାନ ତରଫରୁ ପ୍ରକାଶିତ ହେଲା ୧୯୪୦

ମସିହାରେ । ଏହି କବିତା ଗୁଚ୍ଛ ଗୋପୀନାଥ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା ଓ ଏହାର ମୂଲ୍ୟଥିଲା ଆଠଅଣା ମାତ୍ର । ଏହି ପୁସ୍ତକରେ ଅନୁଷ୍ଠାନର ସମ୍ପାଦକ ଚକ୍ରଧର ମହାନ୍ତି ଅନୁଷ୍ଠାନର ନିଜସ୍ୱ କଥା ବାଢ଼ିଥିବା ବେଳେ କାନ୍ତକବି ଲକ୍ଷ୍ମୀକାନ୍ତ ଓ ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ନିଜ ନିଜ ଅଭିମତରେ କବିଙ୍କର ଓ ଅନୁଷ୍ଠାନର ଭୂୟସୀ ପ୍ରଶଂସା କରିଛନ୍ତି । ସୂଚନାଯୋଗ୍ୟଯେ ଏହି କବିତା ଗୁଚ୍ଛର କବିତାଗୁଡ଼ିକ ବିପ୍ଳବାତ୍ମକ ହୋଇଥିବା ଦୃଷ୍ଟିରୁ ସେତେବେଳେ ଏହାକୁ ବାଜ୍ୟାପ୍ତ କରାଯାଇଥିଲା ।

ଅନୁଷ୍ଠାନର ଦ୍ୱିତୀୟ ଅର୍ଘ୍ୟ ଥିଲା ଲକ୍ଷ୍ମୀନାରାୟଣଙ୍କ ପ୍ରଥମ ଗଳ୍ପଗୁଚ୍ଛ 'ନୈବେଦ୍ୟ' (୧୯୪୧) । ଏହି ଗଳ୍ପଗୁଚ୍ଛଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଏପରିକି ଲକ୍ଷ୍ମୀନାରାୟଣଙ୍କ ନିଜ ପାଖରେ ଏହି ଗଳ୍ପଗୁଚ୍ଛ ନ ଥିବା କଥା ସେ ଏହି ଲେଖକ ନିକଟରେ ପ୍ରକାଶ କରିଥିଲେ ।

୧୯୩୬ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଅନୁଷ୍ଠାନଟି ଲକ୍ଷ୍ମୀନାରାୟଣଙ୍କ ତତ୍ତ୍ୱାବଧାନରେ ସଫଳତାର ସହ କାର୍ଯ୍ୟ କରୁଥିଲା । ୧୯୩୯ ମସିହାରେ ଚାକିରୀ ପାଇ ଲକ୍ଷ୍ମୀନାରାୟଣ କୋରାପୁଟ ଚାଲିଯିବା ପରେ ମଧ୍ୟ ଦୁଇ ତିନି ବର୍ଷ ପର୍ଯ୍ୟନ୍ତ କର୍ମକର୍ତ୍ତା ମାନଙ୍କ ସହ ଯୋଗସୂତ୍ର ରକ୍ଷାକରି ଅନୁଷ୍ଠାନଟିକୁ ବଞ୍ଚାଇ ରଖିଥିଲେ । ଏହି ସମୟ ମଧ୍ୟରେ ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରମଣି ଦାସ, ରାଜକିଶୋର ପଟ୍ଟନାୟକ, କାହ୍ନୁଚରଣ ଓ ଗୋପୀନାଥଙ୍କ ପରି ପ୍ରତିଷ୍ଠିତ ଲେଖକମାନେ ସଦସ୍ୟତା ଗ୍ରହଣ କରି ଅନୁଷ୍ଠାନର ଶ୍ରୀବୃଦ୍ଧି କରିଥିଲେ । ଅନୁଷ୍ଠାନର ପରବର୍ତ୍ତୀ ପ୍ରକାଶନ ଭାବେ ରାଜକିଶୋର ପଟ୍ଟନାୟକଙ୍କ 'ଭସାମେଘ' ଉପନ୍ୟାସ ପ୍ରକାଶିତ ହେବାର ଘୋଷଣା କରାଯାଇଥିଲା । ତେବେ ଲକ୍ଷ୍ମୀନାରାୟଣଙ୍କ ଅନୁପସ୍ଥିତି ପରେ ସମ୍ପାଦକ ଚକ୍ରଧର ମହାନ୍ତି ମଧ୍ୟ ଚାକିରୀ କରି ଅନ୍ୟତ୍ର ଚାଲିଗଲେ ଓ ଧୀରେ ଧୀରେ ଅନୁଷ୍ଠାନଟି ବନ୍ଦ ହୋଇଗଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ଲକ୍ଷ୍ମୀନାରାୟଣ କଟକରେ ପ୍ରତିଷ୍ଠା କରିଥିଲେ 'ଲେଖକ ସହଯୋଗ ସମିତି ଲିଃ' । ଏକ ଲିମିଟେଡ୍ ସଂସ୍ଥା ଭାବରେ ଏହା ପଞ୍ଜିକୃତ ହୋଇଥିଲା । ଏହାର ପୃଷ୍ଠପୋଷକ ଥିଲେ ବିଶିଷ୍ଟ ଗାଳ୍ପିକ ଅନନ୍ତ ପ୍ରସାଦ ପଣ୍ଡା, ସଭାପତି - ଲକ୍ଷ୍ମୀନାରାୟଣ ସାହୁ (ପଦ୍ମଶ୍ରୀ) ଓ ସମ୍ପାଦକ - ଲକ୍ଷ୍ମୀନାରାୟଣ ମହାନ୍ତି ନିଜେ ।

'ଉଦୟ' ନାମରେ ଅନୁଷ୍ଠାନର ତ୍ରୈମାସିକ ମୁଖପତ୍ର ନିୟମିତ ପ୍ରକାଶିତ ହେଉଥିଲା । ଏହାର ସମ୍ପାଦନା କରୁଥିଲେ ଲକ୍ଷ୍ମୀନାରାୟଣ ମହାନ୍ତି । ସୂଚନା ଯୋଗ୍ୟ ଯେ ଏହି ପତ୍ରିକାରେ ଅଂଶ ଗ୍ରହଣ କରୁଥିବା ସ୍ରଷ୍ଟାମାନଙ୍କୁ ଅନୁଷ୍ଠାନ ତରଫରୁ ଯଥାସମ୍ଭବ ପାରିତୋଷିକ ପ୍ରଦାନ କରାଯାଉଥିଲା ।

ଏହି ଅନୁଷ୍ଠାନର ଆଭିମୁଖ୍ୟ ଥିଲା - ସଭ୍ୟ ମାନଙ୍କ ସାହିତ୍ୟ କୃତିକୁ ସ୍ୱୀକୃତି ପ୍ରଦାନ କରି ପ୍ରକାଶନର ଦାୟିତ୍ୱ ନେବା, ପାଠକମାନଙ୍କୁ ସୁଲଭ ମୂଲ୍ୟରେ ପୁସ୍ତକ ଯୋଗାଇଦେବା ଏବଂ ଓଡ଼ିଶାରେ ସାହିତ୍ୟ ପଠନର ଏକ ସୁସ୍ଥ ବାତାବରଣ ସୃଷ୍ଟି କରିବା ।

ଏଥି ନିମନ୍ତେ ବାଲୁବଜାରରେ ଏକ ପୁସ୍ତକ ବିକ୍ରୟ କେନ୍ଦ୍ରର ବ୍ୟବସ୍ଥା କରାଯାଇଥିଲା । ଅନୁଷ୍ଠାନ ତରଫରୁ କେତୋଟି ପୁସ୍ତକ ମଧ୍ୟ ସୁଲଭ ମୂଲ୍ୟରେ ପ୍ରକାଶିତ ହୋଇଥିଲା, ଯଥା- ନିହାରିକା (କାବ୍ୟ- ଅନନ୍ତ ପଣ୍ଡା), ପ୍ରଥମ ପ୍ରେମ (ଉପନ୍ୟାସ-ଲକ୍ଷ୍ମୀନାରାୟଣ ମହାନ୍ତି), ମଲିମଣିଷ କଥା କହେ (ଉପନ୍ୟାସ-ଲକ୍ଷ୍ମୀନାରାୟଣ ମହାନ୍ତି), ମରୀଚିକା (ଉପନ୍ୟାସ- ରସାନନ୍ଦ ସାହୁ), ଦୃଷ୍ଟିକୋଣ (ଗଳ୍ପଗୁଚ୍ଛ- ଦେବ ମହାପାତ୍ର), ଧର୍ମର ଦୁଆ (ଗଳ୍ପ ଗୁଚ୍ଛ- ରତ୍ନାକର ନାୟକ), ବୀଣା (ଉପନ୍ୟାସ- ଲକ୍ଷ୍ମୀନାରାୟଣ ସାହୁ), ସବ୍‌ଡ଼େପୁଟୀ (ଉପନ୍ୟାସ-ବାଉରୀବନ୍ଧୁ ଦାସ), କଲେଜ ରୋମାନ୍‌ସ (ଗଳ୍ପ ଗୁଚ୍ଛ- ସତ୍ୟନାରାୟଣ ପାଢ଼ୀ), ତୀର୍ଥବାସୀ (ଭ୍ରମଣ- କ୍ଷେତ୍ରମୋହନ ମହାନ୍ତି), ଅଭିଶପ୍ତା (ନାଟକ- ନୀଳକଣ୍ଠ ପଟ୍ଟନାୟକ), ଅବିଶ୍ୱାସୀ (ନାଟକ- ବେଣୀମାଧବ ପାଢ଼ୀ), ପ୍ରଦୀପିକା (ପ୍ରବନ୍ଧ- ସିଦ୍ଧେଶ୍ୱର ହୋତା), ଉତ୍କଳଗୀତି (କବିତା- ଦେବହୂତୀ), ସଂଗୀତାବଳି (ରାମକୃଷ୍ଣ ପଟ୍ଟନାୟକ), ଗାନ୍ଧର୍ବିକା ଶତଦଳ (ଉପନ୍ୟାସ- ଲକ୍ଷ୍ମୀନାରାୟଣ ସାହୁ), ଗୀତାପାଠ (ଗୀତାର ଓଡ଼ିଆ ଗଦ୍ୟାନୁବାଦ), ପ୍ରଣୟ ମାଧୁରୀ (ଉପନ୍ୟାସ- କିଶୋର ଚନ୍ଦ୍ର ଦାସ), ହରଣଚାଳ (ଉପନ୍ୟାସ-ଲକ୍ଷ୍ମୀନାରାୟଣ ମହାନ୍ତି) ।

ସୂଚନା ଯୋଗ୍ୟ ଯେ ଉପରୋକ୍ତ ଲେଖକମାନେ ସମସ୍ତେ ସମିତିର ସଦସ୍ୟ ଥିଲେ ଓ ତ୍ରୈମାସିକ 'ଉଦୟ' ପତ୍ରିକାରେ ନିୟମିତ ଲେଖାଲେଖି କରୁଥିଲେ । ସେତେବେଳେ ଓଡ଼ିଶାରେ ଯଥେଷ୍ଟ ପରିମାଣରେ ପୁସ୍ତକ ପ୍ରକାଶକ ନଥିବା ଦୃଷ୍ଟିରୁ ଲେଖକ ମାନଙ୍କ ନିମନ୍ତେ ଏହି ଅନୁଷ୍ଠାନ ସମ୍ଭାବନାର ଆଲୋକ ବର୍ତ୍ତିକା ସଦୃଶ ଥିଲା ।

ସମୟ କ୍ରମେ ଲକ୍ଷ୍ମୀନାରାୟଣଙ୍କର ଅନ୍ୟତ୍ର ବଦଳି ହେଲା, ଅନୁଷ୍ଠାନର ଅନେକ ସଦସ୍ୟ ବି ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ ହୋଇ ଅନ୍ୟତ୍ର ଚାଲିଗଲେ ଏବଂ ଧୀରେ ଧୀରେ ଅନୁଷ୍ଠାନଟି ବନ୍ଦ ହୋଇଗଲା । ଏହି ଅନୁଷ୍ଠାନଟି କେବଳ ଲେଖକ ମାନଙ୍କ ପାଇଁ ଉତ୍ସାହର ପ୍ରାଣକେନ୍ଦ୍ର ନଥିଲା, ସ୍ୱର୍ଗତ ଶୁକଦେବ ସାହୁଙ୍କ ପରି କେତେଜଣ ଉଦୀୟମାନ ପ୍ରକାଶକଙ୍କ ନିମନ୍ତେ ମଧ୍ୟ ପ୍ରେରଣାର ଉତ୍ସ ଥିଲା ।

"ଜଗନ୍ନାଥ ସାହିତ୍ୟ ସମିତି", ଭଦ୍ରକ ଓ "ଲେଖକ ସହଯୋଗ ସମିତି ଲିଃ", କଟକ ଲକ୍ଷ୍ମୀନାରାୟଣଙ୍କ ଦ୍ୱରା ପ୍ରତିଷ୍ଠିତ ଦୁଇଟି ଅମର କୀର୍ତ୍ତି । ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ଏହି ଦୁଇଟି ଅନୁଷ୍ଠାନର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଦୁଇଟି ଯାକ ଅନୁଷ୍ଠାନର 'ଅନୁଷ୍ଠାନ ପତ୍ର'ରୁ ସେମାନଙ୍କ ଆଭିମୁଖ୍ୟର ପରାକାଷ୍ଠା ଅନୁମାନ କରାଯାଇପାରେ । ଏହି ଅନୁଷ୍ଠାନ ପତ୍ର ଦୁଇଟି ପରିଶିଷ୍ଟ ୧୦ରେ ସନ୍ନିବେଶିତ କରାଯାଇଅଛି ।

ଏଠାରେ ଅଧ୍ୟାପକ ବିଶ୍ୱରଞ୍ଜନଙ୍କର ଏହି ଦୁଇ ଅନୁଷ୍ଠାନ ସମ୍ପର୍କୀୟ ଅଭିବ୍ୟକ୍ତି ପ୍ରଣିଧାନ ଯୋଗ୍ୟ ।

"ନିଜର ପ୍ରଚାର ଓ ପ୍ରତିଷ୍ଠା ନୁହେଁ - ଅନ୍ୟ ସମଧର୍ମୀ ଲେଖକ ମାନଙ୍କ ସୃଷ୍ଟିକୁ ଆଲୋକିତ କରିବାର ସତ୍ ଉଦ୍ୟମ ଏବଂ ସେମାନଙ୍କ ଶ୍ରମ ଓ ସୃଜନଶୀଳତାକୁ ଯଥୋଚିତ ମୂଲ୍ୟ ପ୍ରଦାନ ଭଳି ମହତ୍ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ଲକ୍ଷ୍ମୀନାରାୟଣ ।

ଓଡ଼ିଆ ସାହିତ୍ୟର ବିକାଶ ଧାରାରେ 'ଜଗନ୍ନାଥ ସାହିତ୍ୟ ସମିତି' ଭଳି ଅନୁଷ୍ଠାନ ଓ 'ଉଦୟ' ପତ୍ରିକାର ଅବଦାନ ସମ୍ପର୍କରେ ଆମେ କେହି ସଚେତନ ଅଛୁ କି ? ଇତିହାସରେ ଏହାର ଆଲୋଚନା ଅଛି କି ?" (ରବିବାର ଚିଠି - ଧ୍ୱନି ପ୍ରତିଧ୍ୱନି-୦୬।୦୫।୨୦୦୭)

ଏହି ଦୁଇଟି ଅକ୍ଷୟ କୀର୍ତ୍ତି ବ୍ୟତୀତ ଲକ୍ଷ୍ମୀନାରାୟଣ ଆହୁରି କିଛି ଅନୁଷ୍ଠାନ ସହିତ ନିଜକୁ ସାମିଲ୍ କରି ଆଜୀବନ ସାହିତ୍ୟର ସେବା କରିଛନ୍ତି ।

ସେ ଗୁଡ଼ିକ ମଧ୍ୟରେ ଉତ୍ତର ଓଡ଼ିଶା ସାହିତ୍ୟ ସମ୍ମେଳନ, ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ର ଭଦ୍ରକ ସାହିତ୍ୟ ସଂସ୍କୃତି ପରିଷଦ ଇତ୍ୟାଦି ଅନ୍ୟତମ । ରାଜ୍ୟ ସରକାରୀ ଭାଷା କମିଟିରେ ମଧ୍ୟ ମନୋନୀତ ସଦସ୍ୟ ଭାବରେ ସେ ଅନେକ ଦିନ କାର୍ଯ୍ୟ କରିଥିଲେ ।

ଏତଦ୍ ବ୍ୟତୀତ ତାଙ୍କର ସବୁଠାରୁ ଅଧିକ ଉଲ୍ଲେଖନୀୟ କୀର୍ତ୍ତି ହେଲା (PEN) ର ସଦସ୍ୟତା । PEN ହେଉଛି ଏକ ଆନ୍ତର୍ଜାତିକ ଲେଖକ ସଂସ୍ଥା, ଯେଉଁଥିରେ ୧୯୪୬ ମସିହାରୁ ଲକ୍ଷ୍ମୀନାରାୟଣ ଜଣେ ଆଜୀବନ ସଦସ୍ୟ ରୂପେ ମନୋନୀତ ହୋଇ ସମଗ୍ର ବିଶ୍ୱ ସାହିତ୍ୟର ସେବା କରୁଥିଲେ । ତାଙ୍କ ପରେ ଏହି ଆନ୍ତର୍ଜାତିକ ଲେଖକ ସଂସ୍ଥା ଚରଘ ରେ କୌଣସି ଓଡ଼ିଆ ସଦସ୍ୟ ନାହାଁନ୍ତି ।



## ଚତୁର୍ଥ ପରିଚ୍ଛେଦ

# ଉପସଂହାର

ଆଧୁନିକ ଓଡ଼ିଆ ସାହିତ୍ୟରେ ଲକ୍ଷ୍ମୀନାରାୟଣଙ୍କ ସ୍ଥାନ ସ୍ୱତନ୍ତ୍ର । ତାଙ୍କର ଆତ୍ମ ପ୍ରତିଷ୍ଠାର ମୋହ ନଥିଲା ଏବଂ ସେଥିପାଇଁ ଆତ୍ମ ପ୍ରଚାର ବି ନଥିଲା । ଲବି ନଥିଲା କି ଗୋଷ୍ଠୀ ନଥିଲା । କେବଳ ନିରଳସ ନିର୍ଭେଜାଲ ସାହିତ୍ୟ ସାଧନା ହିଁ ଥିଲା ତାଙ୍କ ଜୀବନର ଲକ୍ଷ୍ୟ ।

ଏପରିକି ଜୀବନର ଅନ୍ତିମ କାଳ ପର୍ଯ୍ୟନ୍ତ 'ତପୋବନ'ରେ ତପଚାରୀ ପରି ବୟସର ଚାପ, ନିସଙ୍ଗତାର ଆକ୍ରୋଶ ଏବଂ ବାର୍ଦ୍ଧକ୍ୟ ଜନିତ ବ୍ୟାଧିର ଭୀତିକୁ ଆଗ୍ରହ୍ୟ କରି ବାଲ୍ମୀକୀର ନିଷ୍ଠାରେ ସେ ଆତ୍ମମଗ୍ନ ରହିଥିଲେ । ତାଙ୍କର ସାହିତ୍ୟ ସାଧନା ଭିତରେ ଥିଲା ଗଭୀର ଆତ୍ମ ସନ୍ତୋଷ । ଦେଶ, କାଳ, ପାତ୍ରକୁ ଜାଣିବା ଓ ଜଣାଇବାର ଅସୀମ ଆଗ୍ରହ ଏବଂ ନିଷ୍ଠା ଯୋଗୁଁ ସେ ଲେଖୁଥିଲେ ଯେତିକି, ପଢୁଥିଲେ ତାର ଦ୍ୱିଗୁଣରୁ ଅଧିକ ।

ଜୀବନ ସଂଗ୍ରାମର ଆଦ୍ୟ କାଳରେ ସେ ପିତୃହରା ହୋଇଛନ୍ତି । ମଧ୍ୟ ବୟସରେ ପତ୍ନୀ ବିୟୋଗ ଜନିତ ଦୁଃଖକୁ ସହିଛନ୍ତି । କିନ୍ତୁ ପୁର୍ନର୍ବିବାହ କରିନାହାନ୍ତି । ଅନେକ ଅଭାବ ଅସୁବିଧା ଭିତରେ ସେ ଜୀବନ ଜୀଇଁଛନ୍ତି କିନ୍ତୁ ଧନ ପ୍ରାପ୍ତି ନିମନ୍ତେ ମୋହଗ୍ରସ୍ତ ହୋଇନାହାଁନ୍ତି, ବରଂ ଛାତ୍ର ଜୀବନରେ ଅନେକ ସାରସ୍ୱତ ପୁରୁଷଙ୍କ ଅମୃତ ସ୍ପର୍ଶ ପାଇ ତାଙ୍କ ଭିତରେ ସାହିତ୍ୟ ପ୍ରୀତି ଉଜ୍ଜିବୀତ ହୋଇଛି । ନୈତିକତା ଓ ଆଦର୍ଶକୁ ବ୍ରତ କରି ସେ ଆପଣାର ବ୍ୟକ୍ତିତ୍ୱକୁ ଗଢ଼ିଛନ୍ତି । ସାରସ୍ୱତ ସାଧନା ହିଁ ତାଙ୍କ ଜୀବନର ବ୍ରତ ପାଲଟି ଯାଇଛି । ଏହି ସାଧନା ଭିତରେ ହିଁ ସେ ଜୀବନର ସମସ୍ତ ଜଟିଳତା ଓ ଗ୍ଲାନିକୁ ସମାହିତ କରିଛନ୍ତି ।

ଲେଖକ ହିସାବରେ ସେ ରଚନା କରିଛନ୍ତି ଅନେକ ଗଳ୍ପ, ଉପନ୍ୟାସ ଏବଂ ଆଧାତ୍ମିକ ଦର୍ଶନବାଦୀ ଜୀବନ ଚରିତ ଇତ୍ୟାଦି । ଅଧିକନ୍ତୁ ବିଶ୍ୱ ଏବଂ ଅବଶିଷ୍ଟ ଭାରତୀୟ ଭାଷାର କ୍ଲାସିକ୍ ଠାରୁ ପପୁଲାର ଏବଂ ଦର୍ଶନ ଠାରୁ ଧର୍ମ, ଭ୍ରମଣ ଠାରୁ ଶିକାର, ଏପରିକି ବିଜ୍ଞାନ ସାହିତ୍ୟ ଯାଏ ବହୁବିଧ ପୁସ୍ତକର ଅନୁବାଦ ବା ଅନୁସୃଜନ କରି ସେ ତାଙ୍କ ସାରସ୍ୱତ ଦକ୍ଷତାର ଦିଗ୍‌ବଳୟ କେତେ ବିସ୍ତୃତ ତାହା ପ୍ରମାଣ କରିଯାଇଛନ୍ତି ।

ବିଂଶ ଶତାବ୍ଦୀର ଚାଳିଶ ଦଶକରୁ ବିଧିବଦ୍ଧ ଭାବରେ ଓଡ଼ିଆ ସାହିତ୍ୟରେ ନିଜକୁ ପ୍ରବେଶ କରାଇ, ଦୁଇ ଦଶନ୍ଧି ଅର୍ଥାତ୍ ଷାଠିଏ ଦଶକ ପର୍ଯ୍ୟନ୍ତ ନିଜକୁ ଜଣେ କଥାକାର ଭାବେ ସେ ପ୍ରତିଷ୍ଠିତ କରାଇ ପାରିଛନ୍ତି ।

ଗଳ୍ପ ରଚନାରୁ ତାଙ୍କର ସୃଜନକର୍ମ ଆରମ୍ଭ । ମିନିଗଳ୍ପର ସ୍ୱତଃସ୍ଫୁର୍ତ ଧାରାଟିଏ ତାଙ୍କ ଠାରୁ ପ୍ରବାହିତ ହୋଇଆସିଛି । ସମୟ କ୍ରମେ ଏହି ଧାରାଟି ତତ୍‌କାଳୀନ ବହୁ ଗାଳ୍ପିକଙ୍କର ଆଦର୍ଶ ପାଲଟି ଯାଇ, ମିନିଗଳ୍ପ, ଅଣୁଗଳ୍ପ, ଆଭାସ ଗଳ୍ପ ଏମିତି କେତେ ଢ଼ଙ୍ଗରେ ଉଭା ହୋଇଛି । ମିନିଗଳ୍ପ ବ୍ୟତୀତ ସେ ଆହୁରି ଅନେକ ଗଳ୍ପ ରଚନା କରିଛନ୍ତି । ଗଳ୍ପଗୁଡ଼ିକର ପରିବେଷଣ ଶୈଳୀ ଓ ଭଙ୍ଗୀ ଗତାନୁଗତିକ ଅଥଚ ହୃଦୟସ୍ପର୍ଶୀ । ଘଟଣା ବିନ୍ୟାସ ଓ ଚରିତ୍ରାୟନ ବେଶ୍ ରୋଚକ । ସୁନିର୍ବାଚିତ ଶବ୍ଦ ଓ ଭାବନା ବ୍ୟଞ୍ଜକ କ୍ଷୁଦ୍ର ପଦ ବିଶିଷ୍ଟ ତାଙ୍କର କଳାତ୍ମକ ଗଳ୍ପଗୁଡ଼ିକ ନିଜ ଭିତରେ ନିଜେ ଶିଶିର ବିନ୍ଦୁ ପରି ଘନୀଭୂତ ।

କେବଳ ଓଡ଼ିଆ ନୁହେଁ, ସେ ଇଂରାଜୀରେ ମଧ୍ୟ ଲେଖୁଥିଲେ । ତାଙ୍କ ରଚନା କଣ୍ଟେମ୍ପୋରାରି ଲିଟିରେଚର, ଟେରିଅଟ୍, କଟକ ଟାଇମ୍‌ସ୍, ଇଣ୍ଡିଆନ ପି.ଇ.ଏନ୍. ପ୍ରଭୃତିରେ ମଧ୍ୟ ପ୍ରକାଶ ପାଇଥିଲା । (ତପୋବନର ତପସ୍ୱୀ: ଏକା ଏକା ଅଶ୍ୱାରୋହୀ - ଡ. ଶିରିଷ ଚନ୍ଦ୍ର ଜେନା - ଗପବହି - ସେପ୍ଟେମ୍ବର - ୨୦୦୩- ପୃ. ୭) ।

ତାଙ୍କର ନିଜର ମୌଳିକ ଗଳ୍ପ କେତୋଟି ମଧ୍ୟ ଅନ୍ୟ ପ୍ରାନ୍ତୀୟ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି ।

ଉପନ୍ୟାସ କ୍ଷେତ୍ରରେ ମଧ୍ୟ ତାଙ୍କର ପ୍ରତିଭା ଅନସ୍ୱୀକାର୍ଯ୍ୟ । ଚମତ୍କାର ଗଦ୍ୟ ଶୈଳୀ ଓ ମାର୍ମିକ ଭାଷାର ସମନ୍ୱୟରେ ତାଙ୍କ ଉପନ୍ୟାସଗୁଡ଼ିକ ମନକୁ ଛୁଇଁ ଯାଆନ୍ତି । ବୈଚିତ୍ର୍ୟମୟ ମାନବ ଚରିତ୍ର ଚିତ୍ରଣ ସହିତ ଧରାର ଧୂଳି ମାଟିରୁ ବିଚିତ୍ର ଜୀବ ମାନଙ୍କୁ ଟାଣି ଆଣି ସେ ଛିଡ଼ା କରାଇ ଦିଅନ୍ତି ରାଜରାସ୍ତାରେ ।  ଏହି ଚରିତ୍ର ମାନଙ୍କ ମାଧ୍ୟମରେ ଅନ୍ୟାୟ ଅତ୍ୟାଚାର ଓ ଶୋଷଣ ବିରୋଧରେ ସେ ତୀବ୍ର ସ୍ୱର ଉତ୍ତୋଳନ କରନ୍ତି । ନିଜେ ଜଣେ ନିମ୍ନବିତ୍ତ ଶ୍ରେଣୀର ମଣିଷ ଭାବରେ ସେ ସମାଜର ତଳ ଶ୍ରେଣୀ ମଣିଷ ମାନଙ୍କ ଦୁଃଖ ଦୁର୍ଦ୍ଦଶା ଓ ମାନସିକ ଦ୍ୱନ୍ଦ୍ୱକୁ ଠଉରାଇବାରେ ସଫଳ ହୋଇଛନ୍ତି । ସେମାନଙ୍କ ଉପରେ ହେଉଥିବା ଶୋଷଣର କାରଣମାନ ଦର୍ଶାଇ ସେ ସାଧାରଣ ମଣିଷର ସୁପ୍ତ ଚେତନାକୁ  ଜାଗ୍ରତ କରାଇ ପାରିଛନ୍ତି । ତାଙ୍କ ଉପନ୍ୟାସରେ 'ପ୍ରେମ' ଦେହାତୀତ ଓ ନୈସର୍ଗିକ ପାଲଟି ଯାଇଛି । ଏପରିକି ରହସ୍ୟଧର୍ମୀ ଉପନ୍ୟାସ ମାନଙ୍କରେ ତାଙ୍କର ସଂଳାପ ଧର୍ମୀ ଭାଷା ଓ ଶୈଳୀ, କାହାଣୀର ରହସ୍ୟ ଓ ଉତ୍କଣ୍ଠାକୁ ବହୁ ଗୁଣିତ କରିବାରେ ସଫଳ ହୋଇଛି ।

ଭାଷା ପ୍ରୟୋଗରେ ଅତ୍ୟନ୍ତ ସରଳ ଓ ସତର୍କ ଲକ୍ଷ୍ମୀନାରାୟଣଙ୍କ କଥା ସାହିତ୍ୟ (ଉଭୟ ଗଳ୍ପ ଓ ଉପନ୍ୟାସ) ସରଳ ଓ ସୁବୋଧ୍ୟ । କଥାବାର୍ତ୍ତା କରିବା ଭଳି ଭାଷା ସେ ପ୍ରୟୋଗ କରନ୍ତି । ମୂଲ୍ୟବୋଧ ଉପରେ ବିଶେଷ ଗୁରୁତ୍ୱ ଦେଇ କଥା ସାହିତ୍ୟର ଏହି ରଚନାକାର ସେତେବେଳର ପ୍ରମୁଖ କଥାକାର କାହ୍ନୁଚରଣ, ଗୋପୀନାଥ, ସୁରେନ୍ଦ୍ର, ନିତ୍ୟାନନ୍ଦ, ରାଜକିଶୋର ପଟ୍ଟନାୟକ, ଚନ୍ଦ୍ରମଣି ଦାଶ, ବ୍ରହ୍ମାନନ୍ଦ ପଣ୍ଡା ଏବଂ ଅନନ୍ତ ପଣ୍ଡା ଇତ୍ୟାଦିଙ୍କ ଗହଣରେ ନିଜ ପାଇଁ ସ୍ୱତନ୍ତ୍ର ଆସନଟିଏ ସୁରକ୍ଷିତ କରିପାରିଥିଲେ ।

କିନ୍ତୁ ଅନୁବାଦ ସାହିତ୍ୟରେ ମଗ୍ନ ହୋଇଯିବା ଉତ୍ତାରୁ ଏବଂ ରାଶି ରାଶି ଅନୁବାଦ ଜରିଆରେ ଅଧିକ ପରିଚିତ ଏବଂ ସ୍ୱୀକୃତ ହେବାଯୋଗୁଁ ଲକ୍ଷ୍ମୀନାରାୟଣଙ୍କ ମୌଳିକ ଗଳ୍ପ ଓ ଉପନ୍ୟାସର ସଫଳତା ଧୀରେ ଧୀରେ ବିସ୍ମରିତ ହୋଇଯାଇଛି ।

ବିଶ୍ୱ ସାହିତ୍ୟର ଅନେକ ବହୁ ଚର୍ଚ୍ଚିତ ଓ ପ୍ରତିଷ୍ଠିତ ଗଳ୍ପ ଓ ଉପନ୍ୟାସର ସେ ଅନୁବାଦକ ବା ଅନୁସୃଜକ । ଅସଂଖ୍ୟ ଅନୁବାଦ ମଧ୍ୟରେ ସେ କେବଳ ପାଠକମାନଙ୍କୁ ନୁହେଁ, ଓଡ଼ିଆ ଲେଖକ ମାନଙ୍କୁ ମଧ୍ୟ ବିଶ୍ୱ ସାହିତ୍ୟ ସହିତ ପରିଚିତ କରାଇବା ସହ ଏକ ସୁମଧୁର ସମନ୍ୱୟ ଆଣି ପାରିଛନ୍ତି । ତେଣୁ ଲକ୍ଷ୍ମୀନାରାୟଣ ହେଉଛନ୍ତି ଧରାବନ୍ଧା ଗତରୁ ଓଡ଼ିଆ ସାହିତ୍ୟକୁ କୋଳାଇ ନେଇ ରାଜପଥରେ ଛିଡ଼ା କରାଇବାର ଅଗ୍ର ନାୟକ ।

ଇଂରାଜୀ, ବଙ୍ଗଳା ଏବଂ ହିନ୍ଦୀ ଭାଷାରେ ଲିଖିତ ମୂଳଗ୍ରନ୍ଥ ମାନଙ୍କର ସେ ଓଡ଼ିଆ ଅନୁବାଦ କରୁଥିବା ବେଳେ ଏହି ତିନୋଟି ଭାଷାର ବାହାରେ ବିଶ୍ୱର ଅନେକ ଭାଷାର ବଛା ବଛା କୃତି ମାନଙ୍କର ଇଂରାଜୀ (ଅଥବା ବଙ୍ଗଳା କିମ୍ବା ହିନ୍ଦୀ) ଅନୂଦିତ ଗ୍ରନ୍ଥକୁ ମୂଳକରି ସେ ଓଡ଼ିଆରେ ଭାଷାନ୍ତର କରୁଥିଲେ, ଏହାକୁ ସେ କହୁଥିଲେ 'ଅନୁସୃଜନ' । ଏପରି ଖଣ୍ଡିଏ ଦିଖଣ୍ଡ ନୁହେଁ, ଶତାଧିକ ପୁସ୍ତକ ସେ ରଚନା କରିଛନ୍ତି ।

ବହି ବାଟ ଦେଇ ସେ ତମାମ ବିଶ୍ୱକୁ ଭେଟିଛନ୍ତି ମାନସ ଚକ୍ଷୁରେ । ପରିପୂର୍ଣ୍ଣ ଓ ନିଛକ ଅଭିଜ୍ଞତା ସବୁ ସେ ସାଉଁଟି ଆଣନ୍ତି ଜନ୍ମମାଟିରୁ, ପୁଣି ଦରିଆ ପାରିର ଅଚିହ୍ନା ଆକାଶକୁ ଚିହ୍ନାଇ ଦିଅନ୍ତି ନିଜ କଲମ ମୁନରେ ଓଡ଼ିଆ ମାନଙ୍କୁ । ମୂଳରଚନା (ବା ତାହାର ଇଂରାଜୀ, ବଙ୍ଗଳା ବା ହିନ୍ଦୀ ଅନୁବାଦ) କୁ ବାରମ୍ବାର ପାଠକରି, ତାର ନିର୍ଯ୍ୟାସକୁ ବୁଝିବାପରେ, ଚରିତ୍ର ମାନଙ୍କର ବୈଶିଷ୍ଟ୍ୟକୁ ହେଜି ସେ ନିଜସ୍ୱ ଭାଷାରେ ତାର ଅନୁବାଦ କରନ୍ତି । କିନ୍ତୁ ନିଜ ମନକୁ ସନ୍ତୁଷ୍ଟ ନ କରିବା ପର୍ଯ୍ୟନ୍ତ, ନିଜ ମାଟି, ପାଣି, ପବନକୁ ନ ସୁହାଇବା ପର୍ଯ୍ୟନ୍ତ ସେ ବାରମ୍ବାର ତାହା ସଂଶୋଧନ କରନ୍ତି ଏବଂ ତା ପରେ ଯାଇ ପ୍ରକାଶିତ ହୁଏ ଶିଳ୍ପୀର ଅନୁପମ ସ୍ପର୍ଶ ନେଇ ଅନୁବାଦ କଳା । ତାଙ୍କ ଅନୁବାଦ ଗ୍ରନ୍ଥଗୁଡ଼ିକରେ ନିଜସ୍ୱ ମୌଳିକ ଗଳ୍ପ କଳାର କୁଳୀନ କଣ୍ଠସ୍ୱର ଆପଣା ଛାଏଁ ବାରି ହୋଇପଡ଼େ ।

ଅନୁବାଦ ପାଇଁ ଗ୍ରନ୍ଥ ନିର୍ବାଚନରେ ମଧ୍ୟ ସେ ଅତି ସତର୍କ । ତାଙ୍କ ବିବେକାନୁମୋଦିତ ଦାୟବଦ୍ଧତା ଅଧିକାଂଶ କୃତିରେ ଉପଲବ୍ଧ । ମାନବାତ୍ମାର ଦୀର୍ଘକାଳ ବ୍ୟାପୀ ସ୍ୱଚ୍ଛ ଓ ସ୍ୱଉଚ୍ଚାରିତ ସ୍ୱର ସେ ଯେଉଁ ଗ୍ରନ୍ଥରେ ଲକ୍ଷ୍ୟ କରିଛନ୍ତି ତାହାକୁ ଅନୁବାଦ ପାଇଁ ଗ୍ରହଣ କରିଛନ୍ତି ଏବଂ ନିଜସ୍ୱ ଢ଼ଙ୍ଗରେ ଅଭିଜ୍ଞତାର ରଙ୍ଗରେ ଓ ବିପୁଳ ଅନୁଭୂତିର ସ୍ପର୍ଶରେ ସେ ସବୁକୁ ସେ ଓଡ଼ିଆ ଭାଷାରେ ଜୀବନ୍ୟାସ ଦେଇଛନ୍ତି । ତାଙ୍କର ପ୍ରତ୍ୟେକ ଗ୍ରନ୍ଥର ଅଗ୍ରଲେଖ ବା ପୃଷ୍ଠ ବନ୍ଧରେ ସେ ମୂଳ ଲେଖକକୁ ବିନମ୍ର ସମ୍ମାନ ଜଣାଇବା ସହିତ ତାଙ୍କ ସାରସ୍ୱତ କୃତିର ସବିଶେଷ ବିବରଣୀ ପ୍ରଦାନ କରିଛନ୍ତି ।

ଅନୁବାଦ ହେଉ ବା ଅନୁସୃଜନ, ସବୁଠି ସେ ନିଜ ଢ଼ଙ୍ଗରେ ନାନା ପରୀକ୍ଷା ନିରୀକ୍ଷା କରି ମଧ୍ୟ ସଫଳ ହୋଇଛନ୍ତି ।

ବିଶ୍ୱପ୍ରସିଦ୍ଧ ଉପନ୍ୟାସମାନଙ୍କର ସଂକ୍ଷିପ୍ତକରଣ ଓ ଅନୁସୃଜନ ତାଙ୍କର ଏକ ଅଭିନବ ପରୀକ୍ଷା ଥିଲା । ଯାହା ଅଶେଷ ପାଠକୀୟ ଶ୍ରଦ୍ଧା ଲାଭ କଲା । ଏ ସଂପର୍କରେ ତାଙ୍କର ନିଜସ୍ୱ ବକ୍ତବ୍ୟ ହେଲା- 'ଅନୁବାଦ କର୍ମରେ ତିନିପ୍ରକାର ପଦ୍ଧତି ଅବଲମ୍ବନ କରାଯାଏ । ପ୍ରଥମତଃ ଆକ୍ଷରିକ ଅନୁବାଦ, ଅର୍ଥାତ୍ ପୂର୍ଣ୍ଣାଙ୍ଗ, ଦ୍ୱିତୀୟତଃ ସରଳ ଓ ସାବଲୀଳ ଢ଼ଙ୍ଗରେ ସହଜରେ ପାଠକ ବୁଝି ପାରିଲା ଭଳି, ଓ ତୃତୀୟତଃ ଛାୟାରେ କାହାଣୀ ଓ ଭାବକୁ ଅତୁଟ ରଖି ।'

ଲକ୍ଷ୍ମୀନାରାୟଣ ଦ୍ୱିତୀୟ ପଦ୍ଧତିଟିର ଅନୁସରଣରେ ଅନୁବାଦ/ଅନୁସୃଜନ କର୍ମ ଆରମ୍ଭ କରିଥିଲେ । ପୃଥିବୀର ଅନେକ ଦେଶର ବଛା ବଛା ଗଳ୍ପ ମାନଙ୍କୁ ଏବଂ ଅନେକ କାଳଜୟୀ ଉପନ୍ୟାସ ମାନଙ୍କୁ ସେ ଅନୁବାଦ/ଅନୁସୃଜନ କରିଛନ୍ତି ସରଳ ଓ ସାବଲୀଳ ଢ଼ଙ୍ଗରେ ପାଠକ ବୁଝିପାରିବା ଭଳି । ତେବେ ଏହି ଗ୍ରନ୍ଥଗୁଡ଼ିକର ପୃଥୁଳ କଳେବର ଏବଂ ପ୍ରକାଶନ ନିମନ୍ତେ ଅଧିକ ଅର୍ଥବଳ ଓ ସମୟର ଆବଶ୍ୟକତା ଦୃଷ୍ଟିରୁ ଏହା ସାଧାରଣ ପାଠକ ପାଖରେ ପହଞ୍ଚି ପାରୁନଥିଲା ।

ତେଣୁ ସେ ତୃତୀୟ ପଦ୍ଧତି ବା ସଂକ୍ଷିପ୍ତ କରଣ ଅନୁବାଦ ପ୍ରତି ଆଗ୍ରହ ପ୍ରକାଶ କରି ଅନେକ ଉପନ୍ୟାସର ଅନୁସୃଜନ କରିଛନ୍ତି । ତାଙ୍କରି ଭାଷାରେ - 'ସଂକ୍ଷିପ୍ତ-ପ୍ରକରଣ ଏକ ଦୁରୁହ କର୍ମ ହେଲେ ମଧ୍ୟ ଏବର ବ୍ୟସ୍ତ ସମୟରେ ପାଠକ ମାନେ ଉପନ୍ୟାସର ମୂଳ ରଚନାକୁ କମ୍ ସମୟରେ ପଢ଼ିବାର ସୁଯୋଗ ପାଇଛନ୍ତି ।'

ଏଥି ନିମନ୍ତେ ତାଙ୍କର ଏକ ଯୋଜନା ଥିଲା । ପୃଥିବୀ ଉପନ୍ୟାସ ମାଳା ସିରିଜ୍‌ରେ ସେ ଏହି ପ୍ରକାର ଶହେଖଣ୍ଡ ଉପନ୍ୟାସ ଓଡ଼ିଆ ପାଠକ ମାନଙ୍କୁ ଦେବାର ଯୋଜନା କରିଥିଲେ । ସେ ସମୟର ବିଶିଷ୍ଟ ପ୍ରକାଶକ ଜେ. ମହାପାତ୍ର ଏଣ୍ଡ କୋ ଏହାର ପ୍ରକାଶନ ଦାୟିତ୍ୱ ନେଇଥିଲେ । ଆମ ଜାଣିବାରେ ଏହି ଯୋଜନା ୧୯୭୦ମସିହାରୁ କାର୍ଯ୍ୟକାରୀ ହୋଇ ୧୯୭୪ ମସିହା ସୁଦ୍ଧା ସିରିଜ୍ -୧ରୁ ସିରିଜ୍ -୧୨ ପର୍ଯ୍ୟନ୍ତ ପ୍ରକାଶିତ ହୋଇସାରିଥିଲା ଓ ପ୍ରତି ସିରିଜ୍‌ରେ ଦୁଇରୁ ପାଞ୍ଚ ଖଣ୍ଡ ପର୍ଯ୍ୟନ୍ତ ବିଶ୍ୱ ପ୍ରସିଦ୍ଧ ଉପନ୍ୟାସର ସଂକ୍ଷିପ୍ତିକୃତ ଅନୁସୃଜନ ସ୍ଥାନିତ ହୋଇଥିଲା । ତେବେ ସିରିଜ୍ - ୧୨ ପରେ କୋଡ଼ିଏ ପର୍ଯ୍ୟନ୍ତ ପ୍ରତି ସିରିଜ୍‌ର ନାମକରଣ ହୋଇସାରିଥିଲେ ମଧ୍ୟ (ସିରିଜ୍‌ର ପ୍ରଥମ ଉପନ୍ୟାସ ଅନୁସାରେ ଏହାର ନାମକରଣ କରାଯାଇଥିଲା) ସେଗୁଡ଼ିକ ମଧ୍ୟରୁ କେତେ ପ୍ରକାଶିତ ହୋଇନାହିଁ ବା ଆଦୌ ପ୍ରକାଶିତ ହୋଇନାହିଁ ତାହା ଜଣାପଡୁନାହିଁ । ଏପରିକି ପ୍ରକାଶକ ଜେ. ମହାପାତ୍ର ଏଣ୍ଡ କୋ ସଂପ୍ରତି ପ୍ରକାଶନ ବ୍ୟବସାୟ ବନ୍ଦ କରିଦେବାପରେ ଏ ସଂପର୍କରେ କିଛି କହିପାରୁନାହାଁନ୍ତି । ଏହି ସିରିଜ୍ ବାହାରେ ସେ ବତୀଘର, କଳାପିଲା ଇତ୍ୟାଦି ପରି ଆହୁରି କେତେଖଣ୍ଡ ଉପନ୍ୟାସର ସଂକ୍ଷିପ୍ତିକୃତ ଅନୁସୃଜନ କରିଛନ୍ତି ।

ଶହେ ଖଣ୍ଡ ଉପନ୍ୟାସ କରିପାରିଲେ ନାହିଁ ବୋଲି ତାଙ୍କର ଅନୁଶୋଚନା କମ୍ ନଥିଲା । ଏକ ସାକ୍ଷାତକାରରେ ଏ ସଂପର୍କରେ ସେ କହିଛନ୍ତି - "ମଣିଷ ଯାହା ଚାହେଁ ତାହା ସମ୍ଭବ ହୋଇପାରେ ନାହିଁ । ମୋର ମଧ୍ୟ ସେଇଆ ହୋଇଛି । ସମାଜ ପାଇଁ କାମ କରିବାକୁ ଇଚ୍ଛା,

ଶହେ ଖଣ୍ଡ ବହି ଲେଖିବାର ଇଚ୍ଛା, ହେଲେ ଆଉ ସମ୍ଭବ ନୁହେଁ।" (ଆଇନା- ୧୩ ମାର୍ଚ୍ଚ ୨୦୦୫) ।

ଲକ୍ଷ୍ମୀନାରାୟଣଙ୍କ ଦ୍ୱାରା ବିରଚିତ ସମସ୍ତ ପୁସ୍ତକକୁ ହିସାବ କଲେ ତାହା ଶହେ ଟପିଯିବ । ତେଣୁ ଏଠାରେ ସେ ଶହେ ଖଣ୍ଡ ଉପନ୍ୟାସର ସଂକ୍ଷିପ୍ତିକରଣ ଓ ଅନୁସୃଜନ କଥା ହିଁ ଉଲ୍ଲେଖ କରିଛନ୍ତି । ଉପନ୍ୟାସ ମାଳା ସିରିଜ୍ ନଂ -୨ର (ଆନନ୍ଦ ମଠ) ମୁଖବନ୍ଧ (ଦ୍ୱିତୀୟ କୋଠରୀ)ରେ ସେ ଏହାକୁ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ମୁଁ ସ୍ଥିର କଲି ଯେ, ପୃଥିବୀର ନାନା ଦେଶରୁ ସଂଗୃହୀତ ବିଭିନ୍ନ ସ୍ୱାଦର ଶତାଧିକ ଚିରନ୍ତନ ତଥା ଜନପ୍ରିୟ ଉପନ୍ୟାସର ସଂକ୍ଷିପ୍ତ ରୂପ ମୋର ଗରିବ ପାଠକ ମାନଙ୍କ ନିକଟରେ ଉପସ୍ଥାପିତ କରିବି ।"*

ଆମ ଅନୁବାଦ ସାହିତ୍ୟ ତାଙ୍କ ଦ୍ୱାରା ବହୁ ଭାବରେ ଋଦ୍ଧିମନ୍ତ ହୋଇଛି, ଏହା ସ୍ୱୀକାର କରିବାକୁ ହେବ । ଯଦି ସାହିତ୍ୟ ଏକାଡ଼େମୀରେ ବିଦେଶୀ ସାହିତ୍ୟର ଅନୁବାଦ ବା ଅନୁସୃଜନ ପାଇଁ ପୁରସ୍କାରର ବ୍ୟବସ୍ଥା ଥାଆନ୍ତା, ତେବେ ଲକ୍ଷ୍ମୀନାରାୟଣ ହିଁ ଏହି ପୁରସ୍କାରର ପ୍ରଥମ ଦାବିଦାର ହୋଇଥାଆନ୍ତେ । ଏତେ ବିପୁଳ ପରିମାଣର ଅନୁବାଦ ଗଳ୍ପ ଓ ଉପନ୍ୟାସର ରଚନା ସହିତ ସମ୍ପାଦନା ଓ ସଂଗଠନ କ୍ଷେତ୍ରରେ ମଧ୍ୟ ତାଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ଯୋଗଦାନ ପ୍ରାୟ ସାତ ଦଶନ୍ଧିର । ତାଙ୍କ ଜୀବନ ଚରିତ 'ଥକାମନ' ସେ ପୂର୍ଣ୍ଣ କରିପାରିଲେ ନାହିଁ । ତାହା ଯଦି ପୂର୍ଣ୍ଣ ହୋଇଥାନ୍ତା ତେବେ ଆମ ସାହିତ୍ୟର ତତ୍କାଳୀନ ଅନେକ ଅନାଲୋଚିତ ତଥ୍ୟ ଆମ ନଜରକୁ ଆସିପାରିଥାଆନ୍ତା ।

ଅନୁବାଦ ସାହିତ୍ୟ ନିମନ୍ତେ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ (୧୯୯୦) ଓ ସୋଭିଏତ୍ ଦେଶ ନେହେରୁ ପୁରସ୍କାର (୧୯୭୮) ଦ୍ୱାରା ସମ୍ମାନିତ ହେଇଛନ୍ତି । ରାଜ୍ୟ ସାହିତ୍ୟ ଏକାଡ଼େମୀ ମଧ୍ୟ ତାଙ୍କୁ ସମ୍ମାନିତ କରିଛି । (୧୯୮୨ )କେବଳ 'ପ୍ରଜାତନ୍ତ୍ର' ତାଙ୍କୁ ସାତଥର ସମ୍ବର୍ଦ୍ଧିତ କରିଛି । ତାଙ୍କୁ ସମ୍ବର୍ଦ୍ଧିତ କରିଥିବା ଅନ୍ୟାନ୍ୟ ଅନୁଷ୍ଠାନ ମାନଙ୍କ ତାଲିକା ଅନେକ ଲମ୍ବା । (ଦ୍ରଷ୍ଟବ୍ୟ ପରିଶିଷ୍ଟ - ୪) । ଏତେ ସବୁ ସମ୍ମାନର ଅଧିକାରୀ ଏହି ଯଶସ୍ୱୀ ସାଧକ ନିଜ ସଂପର୍କରେ କହନ୍ତି- "ମୁଁ ବିଶାଳ ବେଳାଭୂମିରୁ ରେଣୁଟିଏ ସଂଗ୍ରହ କରିଛି ମାତ୍ର । ମୋ ପାଇଁ ଆହୁରି ଅନେକ କାମ ବାକିଅଛି । (ତପୋବନର ତପସ୍ୱୀ-ପୃ. ୨୮)

ତଥାପି ମନେହୁଏ ଏହି ସାରସ୍ୱତ ସାଧକଙ୍କୁ ଆମେ ଯଥୋଚିତ ଭାବରେ ସମ୍ମାନିତ କରିପାରିନାହୁଁ । ଓଡ଼ିଆ ଅନୁବାଦ ସାହିତ୍ୟ ସମ୍ପର୍କରେ ଏବଂ ଲକ୍ଷ୍ମୀନାରାୟଣଙ୍କ କୃତି ସମ୍ପର୍କରେ ଅଧିକ ଆଲୋଚନା ଓ ଗବେଷଣା ପାଇଁ ଯଦି ତରୁଣ ପୀଢ଼ିର ଗବେଷକ ମାନେ ଆଗେଇ ଆସନ୍ତେ, ତେବେ ତାହା ହିଁ ବୋଧହୁଏ ତାଙ୍କ ପ୍ରତି ଯଥୋଚିତ ସମ୍ମାନ ହୁଅନ୍ତା । ❒

---

*ଏହି ଲେଖକ ମଧ୍ୟ ତାଙ୍କ ମୁହଁରୁ ଶୁଣିଛି ଯେ ଏହି ପ୍ରକାର ତାଙ୍କର କିଛି ପାଣ୍ଡୁଲିପି ପ୍ରକାଶକ ମାନଙ୍କ ନିକଟରେ ପଡ଼ିଛି । ଚାକିରିରୁ ଅବସର ପରେ ସେ ଭଦ୍ରକରେ ଅବସ୍ଥାନ କରିବା ଦୃଷ୍ଟିରୁ ପ୍ରକାଶକ ମାନେ ଏ ଦିଗରେ ଅଣଦେଖା କରିଛନ୍ତି ।

# ପରିଶିଷ୍ଟ

## ପରିଶିଷ୍ଟ-୧



## ପରିଶିଷ୍ଟ-୨

# ଜୀବନ ପଞ୍ଜିକା

| | | |
|---|---|---|
| ଡ଼ାକନାମ | - | ବାବାଜୀ, ଛଦ୍ମନାମ - କୁମାର |
| ରାଶି | - | ମୀନ |
| ଜନ୍ମ | - | ୧ ୯ ୧ ୯ ମସିହା, ଜାନୁଆରୀ ୧ ୦ ତାରିଖ, ଗୁରୁବାର |
| ପିତୃ ବିୟୋଗ | - | ୧ ୯ ୨ ୭ ମସିହା (ସେତେବେଳେ ତାଙ୍କର ବୟସ ମାତ୍ର ଆଠ) |
| ୧ ୯୩୪ | - | ହାତଲେଖା ସାହିତ୍ୟ ପତ୍ରିକା 'ରଶ୍ମିରେଖା' (ସଂପାଦକ, ସହପାଠୀ ବନ୍ଧୁ ଶ୍ରୀ ଗୌରଚନ୍ଦ୍ର ମହାପାତ୍ର) । |
| ୧ ୯୩୫ | - | ବ୍ରିଟିଶ ସମ୍ରାଟ 'ପଞ୍ଚମ ଜର୍ଜ'ଙ୍କର ରଜତ ଜୟନ୍ତୀ ଉତ୍ସବରେ ଭଦ୍ରକ ହାଇସ୍କୁଲରେ 'ରାଜା ଓ ସମ୍ରାଟ ପଞ୍ଚମ ଜର୍ଜଙ୍କ କାର୍ଯ୍ୟାବଳୀ' ବିଷୟକ ପ୍ରବନ୍ଧ ଲେଖି ତୃତୀୟ ସ୍ଥାନ ଅଧିକାର । ସେହିବର୍ଷ ଭଦ୍ରକ ହାଇସ୍କୁଲର ମୁଖପତ୍ର 'ସାନନ୍ଦୀ'ରେ 'ଟିଟ୍ ପର ଟେଟ୍' ଇଂରାଜୀ ଲେଖା ପ୍ରକାଶିତ। |
| ୧ ୯୩୬ | - | ଭଦ୍ରକର ଜଗନ୍ନାଥପୁର ଗ୍ରାମରେ 'ଜଗନ୍ନାଥ ସାହିତ୍ୟ ସମିତି' ଗଠନ |
| ୧ ୯୩୭ | - | ମେଟ୍ରିକ ପାଶ୍ । ପଢ଼ା ଶେଷ । ଅଳ୍ପଦିନ ପାଇଁ 'ଡ଼ଗର' କାର୍ଯ୍ୟାଳୟ ଭଦ୍ରକରେ କର୍ମରତ । ପରେ କଲିକତାରେ ସର୍ଟହ୍ୟାଣ୍ଡ ଓ ଟାଇପ୍ ଶିକ୍ଷା । |
| ୧ ୯୩୮ | - | ପ୍ରଥମ ଗଳ୍ପ 'ଶିଳ୍ପୀ' ଡ଼ଗର ପତ୍ରିକାରେ ପ୍ରକାଶିତ । |
| ୧ ୯୩୯ | - | ପୋଲିସ ବିଭାଗରେ ଚାକିରି ଜୀବନ ଆରମ୍ଭ । |
| ୧ ୯୪୧ | - | ପ୍ରଥମ ମୌଳିକ କାହାଣୀ ସଂଚୟନ- 'ନୈବେଦ୍ୟ', 'ଜଗନ୍ନାଥ ସାହିତ୍ୟ ସମିତି' ପକ୍ଷରୁ ପ୍ରକାଶିତ । ସେହିବର୍ଷ 'ସହକାର'ରେ ଗଳ୍ପ 'ଅଗ୍ନିଉକ୍ତି' ପ୍ରକାଶିତ । (ସଂପାଦକ- ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ) |

| | | |
|---|---|---|
| ୧୯୪୫ | - | ଅଣ୍ଡରାଜରେ ଶ୍ରୀ ଗୌରହରି ଦାସଙ୍କ ଦୁହିତା ପ୍ରମଦାଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ । (ପୋଲିସ୍ ଭିଜିଲାନ୍ସ ବିଭାଗକୁ ବଦଳି ) |
| ୧୯୪୬ | - | ଆନ୍ତଃର୍ଜାତିକ ସାହିତ୍ୟ ସଂଘ - PEN ର ଆଜୀବନ ସଦସ୍ୟ । ସେହିବର୍ଷ 'ଓଡ଼ିଆ ଲେଖକ ସହଯୋଗ ସମିତି' ପ୍ରତିଷ୍ଠା କରି ଏହାର ମୁଖପତ୍ର 'ଉଦୟ'ର ସଂପାଦନା । |
| ୧୯୫୪ | - | ପ୍ରଜାତନ୍ତ୍ର ବିଷୁବ ସମ୍ମାନ (ପ୍ରଥମଥର- ପ୍ରଜାତନ୍ତ୍ର ଓ ଝଙ୍କାର ପକ୍ଷରୁ ତାଙ୍କୁ ୭ଥର ସମ୍ମାନିତ କରାଯାଇଛି ।) |
| ୧୯୬୧ | - | ଧର୍ମପତ୍ନୀ ପ୍ରମଦାଙ୍କର ବିୟୋଗ । |
| ୧୯୭୮ | - | ସୋଭିଏତ୍ ଦେଶ ନେହେରୁ ପୁରସ୍କାର, (ସୋଭିଏତର ଶ୍ରେଷ୍ଠଗଳ୍ପ ପାଇଁ) ଚାକିରି ଜୀବନରୁ ଅବସର ଗ୍ରହଣ ଓ ନିଜ ଗାଁ ର ପୈତୃକ ଘର 'ତପୋବନ'ରେ ସାହିତ୍ୟ ସାଧନାରତ । |
| ୧୯୮୨ | - | ରାଜ୍ୟ ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ । |
| ୧୯୮୪ | - | ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ରର ଆଜୀବନ ସଭାପତି । |
| ୧୯୮୭ | - | ମାତା ମହୁଡ଼ମଣିଙ୍କ ସ୍ୱର୍ଗାରୋହଣ । |
| ୧୯୯୦ | - | ଅନୁବାଦ ଉପନ୍ୟାସ 'ବନଚାରୀ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର । |
| ୧୯୯୧ | - | 'ଥକାମନ' (ଆତ୍ମଜୀବନ ଚରିତ) ରାଉରକେଲା କଲଚରାଲ ଏକାଡ଼େମୀର ମୁଖପତ୍ର 'ନବପତ୍ର'ରେ ଧାରାବାହିକ ଭାବରେ ପ୍ରକାଶ ଆରମ୍ଭ (୨୮ଟି ଅନୁଚ୍ଛେଦ ପରେ ଅସମାପ୍ତ ରହିଛି ) । |
| ୧୯୯୨ | - | ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମିଳନୀର କାର୍ଯ୍ୟକାରୀ ସଭାପତି । ସାହିତ୍ୟ - ସଂସ୍କୃତି ପରିଷଦ, ଭଦ୍ରକର ସଭାପତି । |
| ୨୦୦୫ | - | ଜାନୁଆରୀ- ୨୭ ତାରିଖ, ଗୁରୁବାର - ସ୍ୱର୍ଗାରୋହଣ (ଗୋପାଳ ଗାଁ ବାଲେଶ୍ୱର) |

# ପରିଶିଷ୍ଟ-୩

## ଗ୍ରନ୍ଥସୂଚୀ

### (କ) ମୌଳିକ ଗଳ୍ପ

| କ୍ର.ନଂ. | ବହିର ନାମ | ପ୍ରକାଶକ | ପ୍ରକାଶନ ସମୟ |
|---|---|---|---|
| ୧. | ନୈବେଦ୍ୟ | ଜଗନ୍ନାଥ ସାହିତ୍ୟ ସମିତି, ଭଦ୍ରକ | ୧୯୪୧ |
| ୨. | ମଳୟ ବହିଲାଣି | ନାରାୟଣ ପୁସ୍ତକାଳୟ, କଟକ | ୧୯୪୫ |
| ୩. | ଉଡ଼ନ୍ତା ବୋମା | ଅରୁଣୋଦୟ ପ୍ରେସ୍, କଟକ | ୧୯୪୬ |
| ୪. | ଓଢ଼ଣାଖୋଲ | ସାରସ୍ୱତ ପୁସ୍ତକ ଭଣ୍ଡାର, କଟକ | ୧୯୪୬ |
| ୫. | ଗୋଟିଏ ସନ୍ଧ୍ୟା | ମନମୋହନ ପୁସ୍ତକାଳୟ, କଟକ | ୧୯୫୧ |
| ୬. | ଅନ୍ଧ ଦେଶକୁ ଗଲି | ପ୍ରଗତି ସାହିତ୍ୟ ମନ୍ଦିର, କଟକ | ୧୯୫୭ |
| ୭. | ଦେହ ନିଲାମ ହେଉଛି | ମନମୋହନ ପୁସ୍ତକାଳୟ, କଟକ | ୧୯୫୯ |
| *୮. | ଅଣୁ ପରମାଣୁ | | |
| *୯. | ସୁନା କଳସ | | |
| *୧୦. | ଗରଳେ କଲୁ ଅଧିକାରୀ- | | |
| *୧୧. | ମାଟି ଘଟ ମଳ | | |
| *୧୨. | ଉତ୍ସବ | | |

| କ୍ର.ନଂ. | ବହିର ନାମ | ପ୍ରକାଶକ | ପ୍ରକାଶନ ସମୟ |
|---|---|---|---|
| (ଖ) | ମୌଳିକ ଉପନ୍ୟାସ | | |
| ୧. | ହାତକଡ଼ି | ୟୁନାଇଟେଡ଼୍ ବୁକ୍ ହାଉସ୍, କଟକ | ୧୯୪୬ |
| ୨. | ମାୟାପୁରୀ (କୁମାର ଛଦ୍ମନାମରେ) | ଅରୁଣୋଦୟ ପ୍ରେସ୍, କଟକ | ୧୯୪୬ |
| ୩. | ପିଶାଚ | ନେସ୍‌ନାଲ ବୁକ୍ସ, କଟକ | ୧୯୪୭ |
| ୪. | ପ୍ରଥମ ପ୍ରେମ | ଓଡ଼ିଆ ଲେଖକ ସହଯୋଗ ସମିତି, କଟକ | ୧୯୪୮ |
| ୫. | ମଲା ମଣିଷ କଥା କହେ | ଓଡ଼ିଆ ଲେଖକ ସହଯୋଗ ସମିତି, କଟକ | ୧୯୪୯ |
| ୬. | ହରଣଚାଲ | ଓଡ଼ିଆ ଲେଖକ ସହଯୋଗ ସମିତି, କଟକ | ୧୯୫୦ |
| ୭. | ଚକ୍ରବ୍ୟୂହ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୫୩ |
| ୮. | କପଟ ପାଶା | ଚକ୍ରାନ୍ତ ପ୍ରକାଶନୀ, କଟକ | ୧୯୭୧ |
| (ଗ) | ଅନୁସୃଜିତ ଗଳ୍ପ | | |
| ୧. | ନୋବେଲ୍ ଲରିଏଟ୍‌ଙ୍କ ସରସ ଗପ | ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ | ୧୯୬୭ |
| ୨. | ଲଢ଼େଇ ସରିଲା ଯେବେ | ମହୋଦଧି, କଲିକତା | ୧୯୬୮ |
| ୩. | ଆମେରିକାର ଶ୍ରେଷ୍ଠ ଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୬୩ |
| ୪. | ସୋଭିଏତ୍ ଦେଶର ଶ୍ରେଷ୍ଠ ଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୭୩ |
| | | | ୧୯୭୫ |
| | | | ୧୯୮୩ |

| କ୍ର.ନଂ. | ବହିର ନାମ | ପ୍ରକାଶକ | ପ୍ରକାଶନ ସମୟ |
|---|---|---|---|
| ୫. | ଇଉରୋପର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର | ୧୯୭୧ |
| ୬. | ଇଟାଲିର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର | ୧୯୬୯ |
| ୭. | ଜର୍ମାନୀର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର | ୧୯୬୭ |
| ୮. | ବାଂଲାଦେଶର ଶେଷ୍ଠଗଳ୍ପ | ଜେ. ମହାପାତ୍ର ଏଣ୍ଡ କୋ | ୧୯୭୨ |
| ୯. | ନଗ୍ନସତ୍ୟ | ପ୍ରଫୁଲ୍ଲ ଦାସ, କଟକ | ୧୯୫୭ |
| ୧୦. | ଫ୍ରାନ୍ସର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୧. | ଏସିଆର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୨. | ଭାରତର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୩. | ଦେଶ ବିଦେଶର କାହାଣୀ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୪. | ଜାପାନର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୫. | ଚୀନର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| ୧୬. | ଆଫ୍ରିକାର ଶ୍ରେଷ୍ଠଗଳ୍ପ | ଓଡ଼ିଶା ବୁକ୍ଷ୍ଟୋର, କଟକ | |
| * ୧୭. | ଜମ୍ବୁଦ୍ୱୀପେ ବାଜିଲା ଭେରୀ | | |
| * ୧୮. | ହିମାଳୟରୁ କୁମାରୀକା କ୍ରାଇମ୍ ମେସିନ୍ | | |
| * ୧୯. | ଧୂସର କାକଳୀ | | |
| * ୨୦. | ସୌଖିନ୍ ଗୋଇନ୍ଦା | | |
| * ୨୧. | ସାର ଲକ୍ ହୋମ୍ସ ଫେରିଲେ | | |

| କ.ନଂ. | ବହି | ପ୍ରକାଶକ/ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|
| **(ଘ)** | **ଅନୁବାଦ ଉପନ୍ୟାସ** | | | |
| ୧. | ଅଚ୍ଛବ | ପ୍ରଫୁଲ୍ଲ ଦାସ / ୧୯୫୬ | ମୂଲକ ରାଜ୍ ଆନନ୍ଦ (ହିନ୍ଦି) | ଅଚ୍ଛୁତ୍ |
| ୨. | ଧଳାରକତ | ନେସ୍‌ନାଲ ବୁକ୍ ଟ୍ରଷ୍ଟ / ୨୦୦୪ | ନାନକ ସିଂହ (ପଞ୍ଜାବୀ) | ଚିଟ୍ଟା ଲହୁ |
| ୩. | ଆତ୍ମପ୍ରକାଶ | ନେସ୍‌ନାଲ ବୁକ୍ ଟ୍ରଷ୍ଟ / ୨୦୦୪ | ସୁନୀଲ୍ ଗଙ୍ଗୋପାଧ୍ୟାୟ (ବଙ୍ଗଳା) | ଆତ୍ମପ୍ରକାଶ |
| ୪. | ଗୋରା | କେନ୍ଦ୍ର ସାହିତ୍ୟ ଏକାଡ଼େମୀ / ୧୯୯୬ | ରବୀନ୍ଦ୍ର ନାଥ ଠାକୁର (ବଙ୍ଗଳା) | ଗୋରା |
| ୫. | ବନଚାରୀ | କେନ୍ଦ୍ର ସାହିତ୍ୟ ଏକାଡ଼େମୀ / ୧୯୫୭ | ବିଭୂତି ବନ୍ଦୋପାଧ୍ୟାୟ (ବଙ୍ଗଳା) | ଆରଣ୍ୟକ |
| **(ଙ)** | **ଅନୁବାଦ ଭ୍ରମଣ କାହାଣୀ** | | | |
| ୧. | ମଣିମହେଶ | କେନ୍ଦ୍ର ସାହିତ୍ୟ ଏକାଡ଼େମୀ / ୨୦୦୨ | ଉମା ପ୍ରସାଦ ମୁଖୋପାଧ୍ୟାୟ (ବଙ୍ଗଳା) | ମଣିମହେଶ |
| **(ଚ)** | **ଅନୁସୃଜିତ ଉପନ୍ୟାସ** | | | |
| ୧. | ସଙ୍ଗମ | ଜଗନ୍ନାଥ ରଥ, କଟକ / ୧୯୬୬ | ଭଲ୍‌ଟେୟାର (ଫ୍ରାନ୍ସ) | କେଣ୍ଡିଡ଼୍ |
| ୨. | ଦୁଇଟି ନଗରୀର କାହାଣୀ | ୧୯୫୫ | ଚାର୍ଲସ୍ ଡ଼ିକେନ୍‌ସ | ଏ.ଟେଲ୍ ଅଫ୍ ଟୁ ସିଟିଜ୍ |
| ୩. | ଅପରିଚିତାର ପତ୍ର | ଲିପିକାଳୟ / ୧୯୮୩ | ଷ୍ଟିଫେନ ଜୁଇଗ୍ (ଜର୍ମାନ) | ଅନ୍‌ନୋନ୍ ଓମେନ |
| ୪. | ମା ଓ ପୁଅ | ପ୍ରଫୁଲ୍ଲ ଚନ୍ଦ୍ର ଦାସ / ୧୯୫୪ | ଲୁଇଜି ପିରାନ୍‌ଦେଲ୍ଲୋ | ଦି ମଦର ଆଣ୍ଡ ହର ସନ୍ |
| ୫. | ଆନାକାରେନିନା | ଜନଶକ୍ତି ପୁସ୍ତକାଳୟ / ୧୯୬୫ | ଲିଓ ଟଲଷ୍ଟୟ (ସୋଭିଏତ ଋଷ) | ଆନାକା-ରେନିନା |

Digitized by srujanika@gmail.com

| କ.ନଂ. | ବହି | ପ୍ରକାଶକ/ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|
| ୬. | କାଳାନ୍ତକ | ଦାସ ବ୍ରଦର୍ସ, କଟକ / ୧୯୬୫ | ସାର୍‌ଆର୍ଥର କୋନାୟନ୍ ନାଏଲ୍ | |
| ୭. | ରମଣୀମନ | ଜଗନ୍ନାଥ ରଥ, କଟକ / ୧୯୬୭ | ହେରମାନ ଲିନୋର୍ଡ଼ ଫ୍ରାଙ୍କ୍ କାର୍ଲ ଓ ଆନା | |
| ୮. | ବାତାୟୋଲା | ୧୯୫୪ | ରେନେମୋରାଁ | |
| ୯. | ବିଦାୟ ଗୁରୁଦେବ | | ଜେମ୍ସ ହିଲ୍‌ଟନ୍ | |
| ୧୦. | ଆନନ୍ଦ କୁମାର | | ଅସ୍କା ଓ ୟାଲ୍‌ଡ଼ି | |
| ୧୧. | ଖୁନ୍ ପରେ ଖୁନ୍ | | | |
| ୧୨. | ଦୁଇଟି ନାରୀ | ଇଉନାଇଟେଡ୍ ବୁକ୍ ହାଉସ୍ / ୧୯୫୩ | ଷ୍ଟିଫେନ୍ ଜୁଇଗ୍ | |

(ଦୁଇଟି ନାରୀ ପୁସ୍ତକରେ ଷ୍ଟିଫେନ୍ ଜୁଇଗ୍‌ଙ୍କର ୨ଟି ଉପନ୍ୟାସିକା 'ଅଙ୍ଗୀକାର' ଓ 'ଅଧିକାର' ସଙ୍କଳିତ ହୋଇଛନ୍ତି । ଉପନ୍ୟାସ ଦ୍ୱୟରେ ପରସ୍ପର ଭିନ୍ନ ସ୍ୱାଦର ମୁଖ୍ୟନାରୀ ଚରିତ୍ରଙ୍କ ଉପଲକ୍ଷରେ ଉପନ୍ୟାସର ନାମକରଣ ଦୁଇଟି ନାରୀ ରଖାଯାଇଛି ।)

**(ଛ) ସଂକ୍ଷେପିତ ଓ ଅନୁସୃଜିତ ପୃଥିବୀର ଶ୍ରେଷ୍ଠ ଉପନ୍ୟାସମାଳା:**

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| ୧. | କାଦମ୍ବରୀ | | ଜେ. ମହାପାତ୍ର, ୧୯୭୦ | | |
| ୨. | ଆନନ୍ଦ ମଠ | ଆନନ୍ଦମଠ | ଜେ. ମହାପାତ୍ର, ୧୯୭୦ | ବଙ୍କିମ୍ ଚନ୍ଦ୍ର (ବଙ୍ଗଳା) | ଆନନ୍ଦ ମଠ |
| | | ଚକ୍ଷୁଦାନ | | ଶାର୍ଲଟ ବ୍ରଣ୍ଟି (ଇଂଲଣ୍ଡ) | ଜେ ଆୟାର |
| | | କାମିନୀ | | ନ୍ୟୁଟ୍ ହାମ୍‌ସୁ (ନରୱେ) | ଭିକ୍ଟୋରିଆ |
| | | ପ୍ରତିଧ୍ୱନୀ | | ଆର୍ନେଷ୍ଟ ହେମିଂୱେ (ଆମେରିକା) | ଫର୍ ହୁମ୍ ଦି ବେଲ୍ ଟୋଲ୍‌ସ |
| ୩. | ଜନନୀ | ଜନନୀ | ଜେ. ମହାପାତ୍ର | ମାକ୍‌ସିମ୍ ଗର୍କି | ମଦର |
| | | ବହ୍ନିବଳୟ | | ହେନେରୀ ରାଇଡ଼ର ହାଗାର୍ଡ଼ | ରିଟର୍ଣ୍ଣ ଅଫ୍ ସି |
| | | ତିନିପୁରୁଷ | | ଟମାସମେନ | |
| ୪. | ଅଦୃଶ୍ୟ ମାନବ | ଅଦୃଶ୍ୟ ମାନବ | ଜେ. ମହାପାତ୍ର, ୧୯୭୧ | ହାରବର୍ଟ ଜର୍ଜ ୱେଲସ (ଇଂଲଣ୍ଡ) | ଇନ୍‌ଭିଜିବ୍‌ଲ ମେନ୍ |
| | | ବାଳଲୀଳା | | ମାର୍କଟୋୟେନ୍ (ଆମେରିକା) | ଟମ୍‌ସୟାରର୍ |
| | | ସ୍ୱପ୍ନସମ୍ଭବ | | ଆରକୃଷ୍ଣମୂର୍ତ୍ତି (ଛଦ୍ମନାମ କଳ୍କି) | ସ୍ୱପ୍ନ |

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| | | ଆତ୍ମ ପ୍ରତ୍ୟୟ | | ସେଲ୍‌ମା ଲାଗର୍‌ଲଫ୍ (ସୁଇଡ଼େନ୍) | କୋରକାରଲେନ୍ |
| ୫. | ବସୁଧା | ବସୁଧା | ଜେ. ମହାପାତ୍ର / ୧୯୭୧ | ପାର୍ଲବକ୍ | ଗୁଡ୍ ଆର୍ଥ |
| | | ମଧୁମନ | | ଗୁଡ଼ିୟାର୍କଲିଜ୍ | |
| | | ଫଟାକପାଳ | | ଭିକ୍ଟରହ୍ୟୁଗୋ | |
| | | ବାପୁର ସଂସାର | | ଶ୍ରୀପଦ ନାରାୟଣ ପେଣ୍ଡେସେ | |
| ୬. | ଯୁଦ୍ଧ ଓ ଶାନ୍ତି | ଯୁଦ୍ଧ ଓ ଶାନ୍ତି | ଜେ. ମହାପାତ୍ର / ୧୯୭୨ | ଲିଓ ଟଲଷ୍ଟୟ (ଋଷିଆ) | ୱାର ଏଣ୍ଡ ପିସ୍ |
| | | ଅକ୍ଷମ ଜୀବନ | | ତ୍ରିପୁରା ନେନି ଗୋପିଚାନ୍ଦ | ଅକ୍ଷମ ଜୀବନ ଯାତ୍ରା |
| | | ମାନବ ତନୟ | | ଲିଓ ଓୟାଲେସ୍ (ଆମେରିକା) | ବେନ୍‌ହୁର୍ |
| ୭. | ସୂର୍ଯ୍ୟାସ୍ତ | ସୂର୍ଯ୍ୟାସ୍ତ | ଜେ. ମହାପାତ୍ର / ୧୯୭୨ | ସୋମୁଜାଦାଇ (ଜାପାନ) | ଦି ସେଟିଂସନ୍ |
| | | ରେଖା | | ସୁନ୍ଦରୀ ଆସାନ ଦାସ | |
| | | | | ଉତ୍ତମ ଚାନ୍ଦିନୀ (ସନ୍ଧି) | ନାୟିକାଙ୍କ ନାମ୍ ରେଖା |
| | | ଦୀର୍ଘଯାତ୍ରା | | ଜୋହାନ୍ ଭିଲ୍‌ହେମ୍ ଜେନ୍‌ସନ୍ (ଡ଼େନ୍‌ମାର୍କ) | ଦି ଲଙ୍ଗ୍ ଜର୍ଣ୍ଣି |

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| ୮. | ଲଳିତା | ଲଳିତା | ଜେ. ମହାପାତ୍ର / ୧୯୭୨ | ଭୁଦିମିର ନବେକଭ ଲୁଇଗି ପିରାନ୍ ଦେଲ୍ଲୋ | |
| | | ପୌରୁଷ | | | |
| ୯. | ସିଦ୍ଧାର୍ଥ | ସିଦ୍ଧାର୍ଥ- | ଜେ. ମହାପାତ୍ର / ୧୯୭୨ | ହେର୍ମନ୍‌ହେସ୍ | ସିଦ୍ଧାର୍ଥ |
| | | ପ୍ରାୟଶ୍ଚିତ | | ଯଜ୍ଞଦତ୍ତ ଶର୍ମା (ମିରଟ୍ ହିନ୍ଦି) | ପ୍ରାୟଶ୍ଚିତ |
| | | ଟମକକା | | ହାରିଅଟ୍ ଏଲିଜାବେତ୍ | |
| | | | | (ଆମେରିକା) | ଅଙ୍କଲ ଟମ୍‌ସ କେବିନ୍ |
| ୧୦. | ଦୂରନ୍ତ ଅଭିଳାଷ | | | | |
| ୧୧. | ନରମେଧ | ନରମେଧ | ଜେ. ମହାପାତ୍ର / ୧୯୭୨ | ହେନେରି ସିନି କୁଇକ୍ | |
| | | | | (ଆମେରିକା) | କୁଇଓ ଭାଦିସ୍ |
| | | ନାରୀର କପାଳ | | ଗିଦ୍ୟ ମୋପାଁସା (ଫରାସୀ) | ୟୁ ନୋ ଭାଏ |
| | | ମରଣର ବିଜୟ | | ଗ୍ରାବିଏଲ୍ ଦ୍ୟ ଅନୁନ୍‌ସିୟା | ଦି ଟ୍ରମ୍ଫ ଅଫ୍ ଡେଥ୍ |
| ୧୨. | ଅନୁରାଗିଣୀ | ଅନୁରାଗିଣୀ | ଜେ. ମହାପାତ୍ର / ୧୯୭୪ | ଏମିଲି ବ୍ରଣ୍ଟି (ଇଂଲଣ୍ଡ) | ୱେଦରିଂ ହାଇଟ୍‌ସ |
| | | ତରୁଣୀ ଧରଣୀ | | ଆଇଭାନ୍ ସର୍ଗୋଭିଚ୍ ତୁର୍ଗେନିଭ | |
| | | | | (ଋଷିଆ) | ଭର୍ଜିନ୍ ସଏଲ୍ |

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| *୧୩. | ବୋଧ ଦାୟ | | | | |
| *୧୪. | ରତି | | | | |
| *୧୫. | ଦକ୍ଷିଣାପବନ | | | | |
| *୧୬. | ତିମିଙ୍ଗିଳା | | | | |
| *୧୭. | ଅପରାଧ | | | | |
| *୧୮. | ଭଙ୍ଗାଗଡ଼ା | | | | |
| *୧୯. | କର୍କଟକ୍ରାନ୍ତି | | | | |
| | ଏହି ସିରିଜ୍ ବାହାରେ ଆହୁରି କେତେଖଣ୍ଡ ସଂକ୍ଷିପ୍ତିକୃତ ଅନୁସୃଜନ । | | | | |
| ୧. | କଳାପିଲା | କଳାପିଲା | ବହିଘର ୧୯୯୬ | ରିଚାର୍ଡ୍ ରାଇଟ (ଆମେରିକା) | ବ୍ଲାକ୍ ବଏ |
| ୨. | ଯାଦୁକର | | କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର / ୧୯୫୪ | ଲିମାନ୍ ଫ୍ରାଙ୍କ୍ ବମ୍ (ଆମେରିକା) | |
| ୩. | ବତୀଘର | | ପ୍ରଫୁଲ୍ଲ ପ୍ରେସ୍ ୧୯୫୭ | ଯୁଲିସ୍ ଭର୍ନେ | ଦି ଲାଇଟ୍ ହାଉସ୍ ଆଟ୍ ଦି ଏଣ୍ଡ ଅଫ୍ ଓ୍ୱାର୍ଲଡ଼ |

(ଜ) ଅନ୍ୟାନ୍ୟ ପୁସ୍ତକ

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| ୧. | ଏକଲା ଚାଲ | (ଜୀବନୀ) | ୧୯୭୫ | | |
| ୨. | କୃପାକର ଦୀନଜନେ | (ଜୀବନୀ) | ୧୯୯୭ | | |
| ୩. | ଯୁଗ ପୁରୁଷ | (ଜୀବନୀ) | ୧୯୯୦ | | |
| ୪. | ଯେ ନଦୀ ମରୁ ପଥେ ଗଲା ହଜି | (ଜୀବନୀ) | ୧୯୯୯ | | |
| ୫. | ପାଖ ନଦୀ ଦୂର ପାହାଡ଼ | (ଜୀବନୀ) | ୧୯୯୯ | | |
| ୬. | ଯେତେ ମତ ସେତେ ପଥ | (ଆଧ୍ୟାତ୍ମିକ) | ବହିଘର, ବାଲେଶ୍ୱର / ୧୯୯୯ | | |
| ୭. | ଯୀଶୁ | (ଶିଶୁ- ସାହିତ୍ୟ, ଜୀବନୀ) | ୨୦୦୦ | | |
| *୮. | କଲ୍ୟାଣମୟୀ ଜନନୀ | (ଜୀବନୀ) | ୨୦୦୦ | | |
| *୯. | ସତ୍‌ସଙ୍ଗ | (ଆଧ୍ୟାତ୍ମିକ) | | | |
| *୧୦. | ସପନ ସଫଳ | (ଆଧ୍ୟାତ୍ମିକ) | | | |
| *୧୧. | ଜୟଗୁରୁ | (ଆଧ୍ୟାତ୍ମିକ) | | | |
| *୧୨. | ଦେବ, ଦାନବ, ମାନବ | (ଆଧ୍ୟାତ୍ମିକ) | | | |

| କ୍ର.ନଂ. | ବହିର ନାମ | ଏଥିରେ ଥିବା ଉପନ୍ୟାସ | ପ୍ରକାଶକ/ ମସିହା | ମୂଳ ଲେଖକ | ମୂଳ ବହି |
|---|---|---|---|---|---|
| *୧୩. | ବିବେକାନନ୍ଦ ଜୀବନ ଓ ଦର୍ଶନ | (ଆଧ୍ୟାତ୍ମିକ, ଅନୁବାଦ) | | ରେମାଁ ରୋଲାଁ | |
| *୧୪. | ପୋଲିସ୍ ଦର୍ଶନ | (ଉପଦେଶାତ୍ମକ) | | | |
| ୧୫. | ଅଜବ ହାତୀ | (ଅନୁବାଦ-ଶିଶୁ ସାହିତ୍ୟ,) ୧୯୯୮ | ବହିଘର, ବାଲେଶ୍ୱର | | |
| ୧୬. | ଶଙ୍କାର କାହାଣୀ | | ବହିଘର, ବାଲେଶ୍ୱର / ୧୯୯୮ | | |

ଦ୍ରଷ୍ଟବ୍ୟ: ୧- ତାରକା ଚିହ୍ନିତ (*) ପୁସ୍ତକ ମାନଙ୍କ ପ୍ରକାଶନ ସମୟ ଓ ପ୍ରକାଶକଙ୍କ ନାମ ସଂଗ୍ରହ ହୋଇପାରିନାହିଁ । ଲକ୍ଷ୍ମୀନାରାୟଣକୃତ କେତେକ ବହିରେ ମୁଦ୍ରିତ ବିଜ୍ଞାପନରୁ ଏହି ପୁସ୍ତକ ଗୁଡ଼ିକର ନାମ ସଂଗ୍ରହ କରାଯାଇଛି ।

୨- ୧୯୭୪ ମସିହା ସୁଦ୍ଧା ସଂକ୍ଷେପିତ ଓ ଅନୁସୂଚିତ ଉପନ୍ୟାସ ମାନଙ୍କ ତାଲିକାରୁ ସିରିଜ୍ ନଂ-୧୨ ପର୍ଯ୍ୟନ୍ତ ପ୍ରକାଶିତ ହୋଇସାରିଥିଲା । ସିରିଜ୍ ନଂ ୧୩ ରୁ ୧୯ ପର୍ଯ୍ୟନ୍ତ ପୁସ୍ତକର ନାମକରଣ ହୋଇସାରିଥିଲେ ସୁଦ୍ଧା ତାହା ପ୍ରକାଶିତ ହୋଇଛି କି ନାହିଁ ତାହା ଅଧିକ ଅନୁସନ୍ଧାନ ସାପେକ୍ଷ । ସିରିଜ୍ ନଂ-୧୨ ପୁସ୍ତକରେ ମୁଦ୍ରିତ ବିଜ୍ଞାପନକୁ ଭିତ୍ତିକରି ଏହି ତାଲିକା କରାଯାଇଛି । ବିଜ୍ଞାପିତ ତାଲିକା ମାନଙ୍କ ମଧ୍ୟରୁ ନିମ୍ନୋକ୍ତ ଉପନ୍ୟାସ ଗୁଡ଼ିକ ସେହି ସିରିଜ୍ ମାନଙ୍କରେ ସ୍ଥାନିତ ହୋଇଥିବାର ଅନୁମାନ କରାଯାଏ ।

'ନୀଳନୟନା', 'ଅପଛାୟା', 'ଘଡ଼ଘଡ଼ି', 'ମୃଷାଜନ୍ତା', 'ଜଳତରଙ୍ଗ', 'ବାରବନିତା', 'ପ୍ରଶାନ୍ତ', 'ପଶ୍ଚିମ ସୀମାନ୍ତ', 'ଚିତ୍ରଗ୍ରୀବ', 'ମାଧୁକରୀ, 'ଗାଥା ସନାତନୀ' ଓ 'ସ୍ୱୟଂବୃତ୍ତ' ଇତ୍ୟାଦି ।

## ପରିଶିଷ୍ଟ-୪

# ଲକ୍ଷ୍ମୀନାରାୟଣଙ୍କର ସାହିତ୍ୟ ସଂଗଠନ ସଂପୃକ୍ତି

| | | |
|---|---|---|
| ୧. | ପ୍ରତିଷ୍ଠାତା | ଜଗନ୍ନାଥ ସାହିତ୍ୟ ସମିତି, ଜଗନ୍ନାଥପୁର, ଭଦ୍ରକ (୧୯୩୬) |
| ୨. | ପ୍ରତିଷ୍ଠାତା | ଓଡ଼ିଆ ଲେଖକ ସହଯୋଗ ସମିତି ଲିମିଟେଡ୍, ବାଲୁବଜାର, ସଂପାଦକ ଚାନ୍ଦିନିଚୌକ, କଟକ (୧୯୪୬) |
| ୩. | ସଂପାଦକ | ଓଡ଼ିଆ ଲେଖକ ସହଯୋଗ ସମିତି ଲିମିଟେଡ୍‌ର ମୁଖପତ୍ର 'ଉଦୟ' (୧୯୪୬-୫୦) |
| ୪. | ସଂପାଦକ | ଗାନ୍ଧୀ ଅବତାର (୧୯୪୮) |
| ୫. | ସଂପାଦକ | ଉପେନ୍ଦ୍ର ପ୍ରସାଦ : ଜୀବନ ଓ ସାହିତ୍ୟ (୧୯୭୯) |
| ୬. | ସଂପାଦକ | ଜୟତୁ ଚିନ୍ତାମଣି (୧୯୮୩) |
| ୭. | ସଭାପତି | ଭଦ୍ରକ ରବିବାସରୀୟ ସାହିତ୍ୟଚକ୍ର (୧୯୮୪ ରୁ ୨୦୦୫) |
| ୮. | ସଦସ୍ୟ | ରାଜ୍ୟ ସରକାରୀ ଭାଷା କମିଟି |
| ୯. | କାର୍ଯ୍ୟକାରୀ | ଉତ୍ତର ଓଡ଼ିଶା ସାହିତ୍ୟ - ସଂସ୍କୃତି ସମ୍ମିଳନୀ, ବାଲେଶ୍ୱର ସଭାପତି (୧୯୯୨-୯୩) |
| ୧୦. | ସଭାପତି | ଭଦ୍ରକ ସାହିତ୍ୟ ସଂସ୍କୃତି ପରିଷଦ (୧୯୯୨-୯୩) |
| ୧୧. | ଆଜୀବନ ସଦସ୍ୟ | PEN (୧୯୪୬-୨୦୦୫) |
| ୧୨. | ସଂପାଦକ | ଗଳ୍ପଘର (୧୯୮୦-୮୨) |

## ପରିଶିଷ୍ଟ-୫

# ପୁରସ୍କାର ଓ ସମ୍ବର୍ଦ୍ଧନା

| | | | |
|---|---|---|---|
| ୧. | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ | - | ୧୯୫୫, ୧୯୫୮, ୧୯୬୦, ୧୯୬୨, ୧୯୭୬, ୧୯୯୧, ୧୯୯୮ (୯ଥର ପୁରସ୍କାର) |
| ୨. | ସୋଭିଏଟ୍ ଦେଶ ନେହେରୁ ପୁରସ୍କାର | - | ୧୯୭୮ |

୩. ଜୀବନ ରଂଗ, କଟକ - ୧୯୭୫
୪. ଯଦୁମଣି ସାହିତ୍ୟ ସଂସଦ, ଉଦୟପୁର - ୧୯୭୯
୫. ଭଦ୍ରକ ମହାବିଦ୍ୟାଳୟ ଛାତ୍ର ସଂସଦ - ୧୯୮୦, ୧୯୯୧
୬. ବାର୍ତ୍ତା ପ୍ରତିଷ୍ଠାନ, ବାଲେଶ୍ୱର - ୧୯୮୧
୭. ଓଡ଼ିଶା ସାହିତ୍ୟ ଏକାଡେମୀ
(ରଜତ ଜୟନ୍ତୀ ତାମ୍ରଫଳକ ସନନ୍ଦ ପ୍ରାପ୍ତ) - ୧୯୮୨
୮. ଦୀନକୃଷ୍ଣ ସ୍ମୃତି ପରିଷଦ, ଜଳେଶ୍ୱର - ୧୯୮୭
୯. ସାହିତ୍ୟ ସଂସଦ, କଟକ - ୧୯୮୮
୧୦. ନବରାଗ, ଆନନ୍ଦପୁର - ୧୯୮୮
୧୧. ପୂର୍ବ୍ୟପୂଜା ସଂସଦ, କଟକ - ୧୯୯୦
୧୨. ରାଧାନାଥ ପାଠାଗାର, ସୋର - ୧୯୯୦
୧୩. କେନ୍ଦ୍ର ସାହିତ୍ୟ ଏକାଡେମୀ, ଦିଲ୍ଲୀ - ୧୯୯୦
୧୪. ଅଭିନନ୍ଦନିକା - ଶିମୁଳିଆ - ୧୯୯୦
୧୫. ରବିବାସରୀୟ ସାହିତ୍ୟ ଚକ୍ର - ୧୯୯୧
୧୬. ଉଆଁସ ମଜଲିସ୍, ଭଦ୍ରକ - ୧୯୯୧
୧୭. ଫକୀରମୋହନ ସାହିତ୍ୟ ପରିଷଦ,
ବାଲେଶ୍ୱର - ୧୯୯୧
୧୮. ଜଗନ୍ନାଥ ପାଣି ସ୍ମୃତି ସଂସଦ,
ଭୁବନେଶ୍ୱର - ୧୯୯୩
୧୯. ସ୍ୱାଗତିକା, କଟକ - ୧୯୯୫
୨୦. ଲେଖକ ସାମ୍ମୁଖ୍ୟ, ଭୁବନେଶ୍ୱର - ୧୯୯୮
୨୧. ସାରଦା ବିହାର ଟ୍ରଷ୍ଟ, ଭଦ୍ରକ - ୧୯୯୯
୨୨. ଚନ୍ଦ୍ରଭାଗା, ବାଲେଶ୍ୱର - ୧୯୯୯
୨୩. ଚରମ୍ପା ସାହିତ୍ୟ ସଂସ୍କୃତି ମଞ୍ଚ - ୨୦୦୦
୨୪. ପୁନର୍ନବା ସାହିତ୍ୟ ସଂସଦ
ଚାନ୍ଦୋଳ, କେନ୍ଦ୍ରାପଡ଼ା - ୨୦୦୩
୨୫. 'ଶିତଭିକ୍ଷା' ସମ୍ମାନ - ଭୁବନେଶ୍ୱର - ୨୦୦୪

## ପରିଶିଷ୍ଟ-୬

# ଚିଠିପତ୍ର

ଭାବଗତ ସଂପର୍କ ସ୍ଥାପନ କରିବାରେ ଚିଠିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଚିଠିର ପ୍ରେରକ ବା ଲେଖକ ଓ ପ୍ରାପକ ମଧ୍ୟରେ ଏହା ସଂପର୍କର ସେତୁଟିଏ ତିଆରି କରେ । କୌଣସି ଚିଠିର ପ୍ରେରକ ବା ପାଠକ ଯଦି ପ୍ରତିଭାଧର ହୋଇଥାନ୍ତି, ତେବେ ଭବିଷ୍ୟତରେ ସେହି ଚିଠି ଏକ ଦସ୍ତାବିଜ୍ ପାଲଟି ଯାଇପାରେ । ଏହି ଦସ୍ତାବିଜ୍‌ର ପଠନ ମାଧ୍ୟମରେ ପାଠକ ମଧ୍ୟ ଲେଖକ ଓ ପ୍ରାପକଙ୍କ ସହିତ ଭାଗବତ ସୂତ୍ରରେ ବାନ୍ଧି ହୋଇଯାନ୍ତି । ପୁସ୍ତକ ପଠନ ଠାରୁ ଏହି ପ୍ରକାର ପତ୍ର ପଠନ ଅଧିକ ପ୍ରଭାବଶାଳୀ ।

ଲକ୍ଷ୍ମୀନାରାୟଣଙ୍କ ଅଳ୍ପ କେତେଖଣ୍ଡ ସଂଗୃହୀତ ପତ୍ର ମଧ୍ୟରୁ ଦୁଇଖଣ୍ଡ ପତ୍ର ସେ ନିଜର ପତ୍ନୀ ପ୍ରମଦାଙ୍କୁ ଲେଖିଥିଲେ । ଚାଳିଶ ପଚାଶ ଦଶକରେ ଲିଖିତ (ବିଂଶ ଶତାବ୍ଦୀ) ଏହି ପତ୍ରରୁ ସେ ସମୟରେ ତାଙ୍କର ଆର୍ଥିକ ସଂକଟ, ବୃତ୍ତିଗତ ଜୀବନର ବ୍ୟସ୍ତତା ଓ ତତ୍ପରତା ସହିତ ପତ୍ନୀ ପ୍ରମଦାଙ୍କ ସହଯୋଗିତାର ସୂଚନା ମିଳେ ଏବଂ ପ୍ରମଦାଙ୍କ ସାହିତ୍ୟପ୍ରାଣର ମଧ୍ୟ ପ୍ରମାଣ ମିଳେ । ଆଉ ଦୁଇଖଣ୍ଡ ଚିଠି ସେ ଲେଖିଥିଲେ ସାହିତ୍ୟିକ ଡ଼କ୍ଟର ଭାବଗ୍ରାହୀ ମିଶ୍ର ଓ ପ୍ରଫେସର ପଠାଣି ପଟ୍ଟନାୟକଙ୍କୁ - ଯେଉଁଥିରୁ ତାଙ୍କ ସାହିତ୍ୟ ପ୍ରାଣ ଓ ସ୍ନେହଶୀଳ ଭାବର ପରିଚୟ ମିଳେ ।

ଏହି ସଂଗୃହୀତ ଚିଠି ଗୁଡ଼ିକ ପରପୃଷ୍ଠାରେ ଉଦ୍ଧାର କରିବା ବେଳେ ଲକ୍ଷ୍ମୀନାରାୟଣଙ୍କ ହସ୍ତାକ୍ଷରର ନମୁନା ସ୍ୱରୂପ ପତ୍ନୀଙ୍କୁ ଲିଖିତ ଚିଠି ଦୁଇଖଣ୍ଡର ଅବିକଳ ନକଲ ମଧ୍ୟ ପ୍ରଦତ୍ତ କରାଯାଇଛି ।

## ଚିଠି ନଂ -୧

କଟକ

୨୫।୦୩।୧୯୪୭

ଶ୍ରଦ୍ଧେୟା,

ତୁମ ଗପଟି ପାଇଲି - ଚିଠି ନାହିଁ । ଭାରି ଖୁସି ହେଲି । ଯଦି ଓ ଏହା ତୁମର ପ୍ରଥମ ପ୍ରଚେଷ୍ଟା, ଚେଷ୍ଟାକଲେ ତୁମେ ଅଚିରେ ଜଣେ ସିଦ୍ଧହସ୍ତା ଲେଖିକା ହୋଇପାରିବ ବୋଲି ମୋର ବିଶ୍ୱାସ । ତୁମେ ଆସିଲେ ତୁମ ସାମନାରେ ମୁଁ ଏ ଗପଟିର ତାତ୍ପର୍ଯ୍ୟ ଇତ୍ୟାଦି ବିଷୟରେ ଆଲୋଚନା କରିବି । ଏଥର 'ଉଦୟ' ପାଇଁ ତୁମର 'ଉର୍ଦ୍ଧ୍ୱବାହୁ' ଦେଇଛି । ବହି ଛପା ଚାଲିଛି । ଏବଂ ଏପ୍ରିଲ୍ ମାସର ପ୍ରଥମ ସପ୍ତାହରେ ପ୍ରକାଶ ପାଇବ । ସେଥିପାଇଁ ବ୍ୟସ୍ତ ଅଛି । ତା ଛଡ଼ା ମୋର 'ଓଢ଼ଣା ଖୋଲ' ବହିଟା ମଧ୍ୟ ଛପା ଚାଲିଛି ।

ଭୂଆ (ବଡ଼ପୁଅ) କଥା ଅଫିସରୁ ଆସିଲେ ମନେ ପଡୁଛି । ତାକୁ ଶୀଘ୍ର ଏଠାକୁ ପଠାଇଦିଅ । ତୁମେ କେବେ ଆସିବ ? ବୋଉର ଆସିବା ଯଦି ଡେରି ହୁଏ, ତୁମେ ଶୀଘ୍ର ଚାଲିଆସ । ମୁଁ କ୍ଲବରେ ଖାଉଛି ଏବଂ ମେନି ଘର ପାନ ଦେଉଛନ୍ତି । ସେମାନେ ସମସ୍ତେ ଖାଲି କଥାରେ ଆପଣା ରୂପରେ ଦେଖନ୍ତି । ଘରଛିଆ ଆଜି ସରିବ । ତାପରେ ଘର ତିଆରି ହେବ ।

ନାଥିଆ କାହିଁକି ଏଯାଏ ଆସିଲା ନାହିଁ । ତାକୁ କହିବ, ଏ ଚିଠି ପାଇବା ପରେ ସେ ଚାଲିଆସୁ । ତୁମେ ନ ଆସିଲେ ମଧ୍ୟ ତାକୁ ପଠାଇଦିଅ । ଏହା ଭାରି ଜରୁରୀ । ସେ ମୋତେ ବାଲେଶ୍ୱରରୁ ଆସିବ ବୋଲି ଚିଠି ଦେଇଥିଲା । କାହିଁକି ଆସିଲା ନାହିଁ ବୁଝି ପାରୁନାହିଁ ।

ଏପ୍ରିଲ୍ ୨ତା: ରୁ ସକାଳୁଆ ହେବ । ତା ପୂର୍ବରୁ ତୁମେ ଚାଲିଆସିବ । କିନ୍ତୁ ନାଥିଆକୁ ଏହିକ୍ଷଣି ପଠାଇ ଦିଅ । ଆଶା ସୁସ୍ଥ ଥିବ । ଏହା ଭିତରେ ଆଦୌ କିଛି ଲେଖିପାରିନାହିଁ । ଦେଖାଯାଉ କ'ଣ ହେଉଛି । ଶେଷରେ ମୋର ଶ୍ରଦ୍ଧାପୂର୍ଣ୍ଣ ଶୁଭେଚ୍ଛା ।

ତୁମର ମୁଁ ।

# ଚିଠି ନଂ - ୨

ଠିକଣା:-

C/o- S.I. of Pollice — ପଟ୍ଟାମୁଣ୍ଡାଇ

Patamundai — ୧୩।୦୧।୫୦

ଶ୍ରଦ୍ଧେୟା,

ନାଥିଆ ପାଖକୁ ଏଠାକୁ ଆସି ଚିଠି ଦେଇଥିଲି । ପାଇଥିବ । କିନ୍ତୁ ଏଯାଏ କୌଣସି ଜବାବ ପାଇଲି ନାହିଁ ।

ଏଠାରେ ନିର୍ବାଚନ କାମରେ ବଡ଼ ବ୍ୟସ୍ତ ଅଛି । ମଫସଲର ଗାଁ ଗହଳରେ ବୁଲିବାକୁ ପଡୁଛି । ପ୍ରତିଦିନ ପ୍ରାୟ ତିରିଶ ମାଇଲ୍ ସାଇକେଲ୍‌ରେ ଓ ଚାଲିକରି ଯିବାକୁ ପଡୁଛି । ରହିବାରେ ଯଦିଓ ଅସୁବିଧା ନାହିଁ, ଖାଇବାରେ ଯଥେଷ୍ଟ ଅଛି । ପ୍ରଥମେ ହୋଟେଲ୍‌ରେ ଖାଉଥିଲୁ କିନ୍ତୁ ସେଠାରେ ଅସୁବିଧା ହେବାରୁ, ଏକ୍ଷଣି ଆମେ ଏଠାରେ ରୋଷେଇ କରିବାର ବ୍ୟବସ୍ଥା କରିଛୁ । ଈଶ୍ୱରଙ୍କ କୃପାରୁ ଯେ କୌଣସି ମତେ ଦିନ କଟିଯାଉଛି । ପ୍ରଥମେ ମୋତେ ଜଣାଥିଲା ସାତଦିନ ପରେ ଏଠୁ ଚାଲିଯିବି । ସେହି ଅନୁସାରେ ଟଙ୍କା ଆଣିଥିଲି । କିନ୍ତୁ ବର୍ତ୍ତମାନ ଦେଖୁଛି ନିର୍ବାଚନ ସରିବାଯାଏଁ ଅର୍ଥାତ୍ ୨୦ ତା: ପର୍ଯ୍ୟନ୍ତ ଏଠାରେ ରହିବାକୁ ପଡ଼ିବ କିମ୍ବା ୨୨ରେ ଫେରିବି । ଲୁଗାପଟା ମଧ୍ୟ ଆଣି ପାରିଲି ନାହିଁ । ତଥାପି ଯେକୌଣସି ମତେ ଚଳାଇ ନେବାକୁ ପଡ଼ିବ ।

ଭୂଆ ଓ କୁଆ (ଦୁଇ ପୁଅ)ଙ୍କ କଥା ଆସିଲା ବେଳେ ମନେପଡୁଛି । ସକାଳେ ବୋଉକୁ ନ ଦେଖିଲେ ମନ ଗୁଡ଼ାଇ ହେଉଛି ଏବଂ ତୁମେ ଆଦୌ ମନେ ପଡୁନାହଁ ।

ନାଥିଆକୁ କହିବ ମୁଁ ଯାହା କହିଆସିଥିଲି ଓ ଚିଠିରେ ଯାହା ଲେଖିଛି ସବୁ କରିଦେଉଥିବ ।

ଚିଠି ଦେବ । ତୁମେମାନେ ସୁସ୍ଥରେ ରୁହ, ମୋର ଆନ୍ତରିକ କାମନା । ଅନ୍ୟାନ୍ୟ ପଚେ ।

ତୁମର ମୁଁ ।

---

ମୋତେ ଦଶଟଙ୍କା ପଠାଇବ । କାରଣ ମୋ ପାଖରେ ଆଉ ପଇସା ନାହିଁ ଏବଂ ଏଠାରେ ଅନେକ ଦିନ ରହିବାକୁ ପଡ଼ିବ । କାଲି (୧୪ ତା:) ମନିଅର୍ଡ଼ର ନିଶ୍ଚେ କରିବ ।

## ଚିଠି ନଂ - ୩
(ଡ଼କ୍ଟର ଭାବଗ୍ରାହୀ ମିଶ୍ରଙ୍କୁ)

Sri L.N. Mohanty
Progressive Writer,
Orissa

ଭଦ୍ରକ/୧୫ ଅକ୍ଟୋବର, ୧୯୭୯

ବନ୍ଧୁବରେଷୁ,

ବିଷୟ - ବଛାବଛା ଓଡ଼ିଆ ଗପ

ଆପଣ ମୋତେ ବରାଦ କରିଥିଲେ, ଓଡ଼ିଆ ଲେଖକ ମାନଙ୍କର କେତୋଟି ବଛାବଛା ଗପକୁ ଇଂରାଜୀରେ ଅନୁବାଦ କଲେ ତାହାକୁ ଭାରତୀୟ ବିଦ୍ୟାଭବନ ଦ୍ୱାରା ପ୍ରକାଶ କରାଇଦେବେ । ତଦନୁଯାୟୀ ମୁଁ କାମରେ ଲାଗିଛି । କେତେକ ଗପ ସଂଗ୍ରହ କରିଛି, ଯାହାର ଅନୁବାଦ ହୋଇଛି । ଆପଣଙ୍କର କେତୋଟି ଗପ ଦରକାର ଜଣାଇବେ - ୧୫ କି ୧୦ । ମୁଁ ପାଣ୍ଡୁଲିପି ନେଇ ଆପଣଙ୍କୁ ଦେଲେ, ଆପଣ ଅଫିସ୍‌ରେ ସେ ସବୁ ଟାଇପ୍ କରାଇଦେବେ ତ ? ଟାଇପ୍‌ବେଳେ ମୋର ଉପସ୍ଥିତି ସେଠାରେ ଦରକାର କି ? ଯଦି ସେଠାରେ ୪/୬ଦିନ ରହିବାକୁ ପଡ଼େ, ରହିବାର ବ୍ୟବସ୍ଥା ହୋଇ ପାରିବ କି ? ମୋତେ ସବୁ କଥା ଜଣାଇଲେ, ମୁଁ ଗପସବୁ ନେଇକରି ଯିବି । ସଂକଳନର ସମ୍ପାଦକ ଆପଣ ରହିବେ । ମୁଁ ଆନୁଷଙ୍ଗିକ କାମସବୁ କରିଦେବି । ଜବାବ୍ ଅପେକ୍ଷାରେ ରହିଲି ।

ନମସ୍କାରାନ୍ତେ । ଇତି ।

ସୌଜନ୍ୟମୁଗ୍ଧ

ଲକ୍ଷ୍ମୀନାରାୟଣ

# ଚିଠି - ୪
## (ପ୍ରଫେସର ପଠାଣି ପଟ୍ଟନାୟକଙ୍କୁ)

ଜଗନ୍ନାଥପୁର, ଭଦ୍ରକ - ୭୫୬୧୦୦
୨୨ ଡ଼ିସେମ୍ବର ୧୯୯୦

ବନ୍ଧୁବରେଷୁ,

ଆପଣଙ୍କ ଆନ୍ତରିକ ଅଭିବାଦନ ସାଦରେ ଗ୍ରହଣ କଲି । ମୋର ବି ପ୍ରତ୍ୟାଭିବାଦନ ଘେନିବେ ।

ଆଜିର ସମ୍ମାନ, ସର୍ବଭାରତୀୟ ସ୍ତରରେ, ବ୍ୟକ୍ତିଗତ ଭାବରେ ମୋର ନୁହେଁ, ପ୍ରାପ୍ୟ ଓଡ଼ିଆ ସାହିତ୍ୟ ତଥା ସାରସ୍ୱତ ସାଧକଙ୍କର । ମୁଁ ସରସ୍ୱତୀଙ୍କର ଜଣେ ଏକନିଷ୍ଠ ସେବକ ମାତ୍ର ।

ଆପଣଙ୍କ ଅନୁପ୍ରେରଣା, ପରମହିତୈଷୀ ଭାବରେ, ନିଶ୍ଚୟ ମୋତେ ଲକ୍ଷ୍ୟ-ସ୍ଥଳକୁ ଆଗେଇବାରେ ସହାୟକ ହେବ ।

ଠାକୁରେ ଆପଣଙ୍କୁ ସପରିବାର ସର୍ବକୁଶଳରେ ରଖନ୍ତୁ । ନମସ୍କାରାନ୍ତେ ।ଇତି।

ସ୍ନେହାନୁବନ୍ଧ

ଲକ୍ଷ୍ମୀନାରାୟଣ

"ଦ୍ର:- ମୋ ଆତ୍ମଜୀବନୀ "ଥଳାମନ" ରାଉରକେଲାରୁ ପ୍ରକାଶିତ, ରଜନୀକାନ୍ତ ଦାସଙ୍କ ସଂପାଦନାରେ 'ନବପତ୍ର'ରେ ଧାରାବାହିକ ଭାବରେ ବାହାରିବ । ପ୍ରଥମ କିସ୍ତି ଚଳିତବର୍ଷର ୧ମ ସଂଖ୍ୟାରେ ବାହାରିଛି । ବେଳ ମିଳିଲେ, ଦେଖିବେ ।'

(କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି ପରେ ଲକ୍ଷ୍ମୀନାରାୟଣଙ୍କୁ ପ୍ରଫେସର ପଠାଣି ପଟ୍ଟନାୟକଙ୍କ ଅଭିନନ୍ଦନ ପତ୍ରର ଉତ୍ତରରେ ସେ ଏହି ଚିଠିଟି ଲେଖିଥିଲେ । )

## ପରିଶିଷ୍ଟ-୭

# ଲକ୍ଷ୍ମୀନାରାୟଣଙ୍କ ରୁଚି

| | | |
|---|---|---|
| ପ୍ରିୟ ଖାଦ୍ୟ | - | ଓଡ଼ିଆ ଘରର ଯାବତୀୟ ପିଠାପଣା |
| ପ୍ରିୟ ରଙ୍ଗ | - | ଧଳା |
| ପ୍ରିୟ ପୋଷାକ | - | ଧୋତି, ପଞ୍ଜାବୀ |
| ପ୍ରିୟ ସ୍ୱପ୍ନ | - | ଗୋଟେ ସୁନ୍ଦର ମୃତ୍ୟୁ ଓ ମୃତ୍ୟୁପରେ ଜୀଇଁ ରହିବ ତାଙ୍କ ସୃଷ୍ଟି |
| ପ୍ରିୟ ଋତୁ | - | ଶୀତ |
| ପ୍ରିୟ ଲେଖକ | - | କାନ୍ତକବି, କାଳିଚରଣ ପଟ୍ଟନାୟକ, ମାୟାଧର ମାନସିଂ, କାଳିନ୍ଦୀ ଚରଣ ପାଣିଗ୍ରାହୀ, କାହ୍ନୁଚରଣ, ଚନ୍ଦ୍ରମଣି ଦାସ, ନିତ୍ୟାନନ୍ଦ ମହାପାତ୍ର ଓ ସଚ୍ଚି ରାଉତରାୟ । |
| ପ୍ରିୟ ମୁହୂର୍ତ୍ତ | - | ସଂଧ୍ୟା ସମୟ, ପାଠକ ମାନଙ୍କ ସ୍ନେହ, ଶ୍ରଦ୍ଧା |
| ପ୍ରିୟ ସ୍ଥାନ | - | ତପୋବନ |
| ପ୍ରିୟ ଅନୁବାଦକ | - | ଅସିତ ମହାନ୍ତି ଓ ବସନ୍ତ କୁମାରୀ ଦେବୀ |
| ଦୁଃଖଦ ମୁହୂର୍ତ୍ତ | - | ପିତୃ ବିୟୋଗ, ପତ୍ନୀ ବିୟୋଗ ଓ ମାତୃ ବିୟୋଗ |

## ପରିଶିଷ୍ଟ-୮

# ଆତ୍ମଚରିତ

(ଅସଂପୂର୍ଣ୍ଣ 'ଥକାମନ'ର କିଛି ଉଦ୍ଧୃତାଂଶ)

୧ । "୧୩୨୬ ସାଲ ପୌଷ ମାସ ୨୬ଦିନ (୧୯୧୯ ମସିହା ଜାନୁଆରୀ ୧୦ତାରିଖ) ଗୁରୁବାର ଅପରାହ୍ଣରେ ଧାନକଟା ବେଳ । ମହି ସାହିରେ ସମ୍ଭ୍ରାନ୍ତ କରଣ ବଂଶରେ ମହୁଡ଼ମଣିଙ୍କ ଗର୍ଭରୁ ଜାତ ହେଲା ପିଲାଟିଏ । ତା' ବାବା ଭାବଗ୍ରାହୀ ମହାନ୍ତି ଖବର ପାଇ କଚେରୀରୁ ମୋହରିର କାମ ଛାଡ଼ି ଧାଇଁ ଆସିଲେ ।" ××× "ଗୁରୁବାରରେ ଜନମ ହୋଇଥିବାରୁ ପାଞ୍ଜି ଦେଖି ପୁଅଟିର ନାମକରଣ କଲେ ଲକ୍ଷ୍ମୀନାରାୟଣ ।

ତେବେ ଅତି ସରାଗରେ ସଭିଏଁ ତାହାଙ୍କୁ ଡ଼ାକିଲେ 'ବାବାଜୀ' ବୋଲି ।" (୧୯୯୦/ ୧ମ ଖଣ୍ଡ/ପୃ. ୩୬)

୨। "ମାଇନର ପାସକଲା ଉତ୍ତାରୁ, ଆମ ଘରେ ଭାବେଣି ପଡ଼ିଲା, କିପରି ମୋତେ ଭଦ୍ରକ ଉଚ୍ଚ ବିଦ୍ୟାଳୟରେ ପଢ଼ାଇବେ । ବାବା କହିଲେ, ମୋର ତ କଚେରୀରେ ସେତେ ବେଶୀ ରୋଜଗାର ହେଉନାହିଁ, ଯାହା ବି କିଛି ମିଳୁଛି, ସେଥିରେ ଘରେ ପାଞ୍ଚୋଟି ପ୍ରାଣୀଙ୍କର ପେଟ ପୋଷିବା ବଡ଼ କଠିନ । × × × ସେତେବେଳେ ମୋର ଜଣେ ଦାଦା ବଂଶୀଧର କେନ୍ଦ୍ରାପଡ଼ାରେ ପୋଲିସ୍ ସବ୍‌ଇନ୍‌ସପେକ୍ଟର ଚାକିରୀ କରିଥିଲେ । ବୋଉ ତାହାଙ୍କୁ ଆକୁତି ମିନତି କରି କରଣୀ ଛଟା ଅକ୍ଷରରେ ଚିଠି ଲେଖିଲା, କିଛି ଆର୍ଥିକ ସାହାଯ୍ୟ ସକାଶେ । ଦୈବ ଯୋଗକୁ ସେ ଚାରୋଟି ବରଷ ମୋ ପାଠପଢ଼ା ପାଇଁ ମାସିକ ପାଞ୍ଚଟଙ୍କା ଲେଖାଏଁ ଦେବାକୁ ରାଜି ହେଲେ ।' (୧୯୯୦/୨ୟ ଖଣ୍ଡ/ ପୃ. ୮୦-୮୧)

୩। 'କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସାନପୁଅ ଗୌରଚନ୍ଦ୍ର ମୋ ସହିତ ପଢୁଥିଲେ । ତାଙ୍କ ସହିତ ମିଶି ଆମ ଶ୍ରେଣୀରୁ 'ରଶ୍ମିରେଖା' ନାମରେ ଖଣ୍ଡିଏ ହାତଲେଖା ପତ୍ରିକା କାଢ଼ିଲୁ । ଗୌର ଭାଇ ହେଲେ ସଂପାଦକ । ଅନ୍ୟ ଭାର ସବୁ ମୋ ଉପରେ ପଡ଼ିଲା । ମୁଁ ଗୋଲଗୋଲ ଅକ୍ଷରରେ ଲେଖାଗୁଡ଼ିକ ସଜାଇ ପତ୍ରିକାକୁ ଶୋଭନୀୟ କଲି । ××× ପ୍ରଥମେ ତାହା ଦେଖି ଆମର ରକ୍ଷଣଶୀଳ ପ୍ରଧାନଶିକ୍ଷକ ଗୋକୁଳାନନ୍ଦ ନାୟକ ଅବଶ୍ୟ ଟିକିଏ ନାକ ଟେକିଥିଲେ । କିନ୍ତୁ ପରେ ସେ ତଥା ବିଶିଷ୍ଟ ସାହିତ୍ୟିକ ଉପେନ୍ଦ୍ର ପ୍ରସାଦ ମହାନ୍ତି ଓ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସମେତ ଅନ୍ୟ ଶିକ୍ଷକମାନେ ଓ ଛାତ୍ରଗଣ ବିଦ୍ୟାଳୟର ସାରସ୍ୱତ ଇତିହାସରେ ଆମର ଏତାଦୃଶ ସର୍ବପ୍ରଥମ ଅଭିନବ ଉଦ୍ୟମକୁ ଉଚ୍ଛ୍ୱସିତ ପ୍ରଶଂସା କଲେ ।" (ପୃ. ୮୧)

୪। 'ଭଦ୍ରକ ଉଚ୍ଚ ବିଦ୍ୟାଳୟରେ ପଢୁଥିଲାବେଳେ ଲକ୍ଷ୍ୟ କଲି ବାହାର ବହି ଓ ପତ୍ରିକା ପଢୁ ନଥିବାରୁ ପିଲାମାନେ ସାଧାରଣ ଜ୍ଞାନରେ ଖୁବ୍ ଦୁର୍ବଳ ହେଉଛନ୍ତି । ସେହି ସମସ୍ୟାର ଦୂରୀକରଣ ଦିଗରେ ମୁଁ କାମ କରିବାକୁ ଲାଗିଲି ।' ××× ଏକକ ଉଦ୍ୟମରେ ଗୋଟିଏ ପାଠାଗାର ସ୍ଥାପନ କରିବା ସମ୍ଭବ ନୁହେଁ । ତେଣୁ ୧୯୩୬ ମସିହାରେ ଗ୍ରାମବାସୀଙ୍କର ଏକ ବୈଠକରେ 'ଜଗନ୍ନାଥ ସାହିତ୍ୟ ସମିତି' ନାମରେ ସାରସ୍ୱତ ଅନୁଷ୍ଠାନଟିଏ ପ୍ରତିଷ୍ଠା କରିବାକୁ ସ୍ଥିର ହେଲା । ଏଥିରେ ସଭାପତି ରହିଲେ ସର୍ବାନନ୍ଦ ମହାନ୍ତି ଏବଂ ସମ୍ପାଦକ ଚକ୍ରଧର ମହାନ୍ତି ।' ××× ପାଠାଗାରରେ କାଳକ୍ରମେ ଦିଶହ ଓଡ଼ିଆ, ପଚାଶ ବଙ୍ଗାଳୀ ଓ ପଚାଶ ଇଂରାଜୀ ପୁସ୍ତକ ଗଚ୍ଛିତ ହେଲା । ସଭ୍ୟମାନେ ୧୯୩୭ ମସିହା ୫ ଜାନୁଆରୀ ଠାରୁ ୧୯୪୦ ଅକ୍ଟୋବର ଯାଏ ବରାବର ବହି ସବୁ ପଢ଼ିବାକୁ ନେଉଥିଲେ ।

୫। ଭଦ୍ରକାଳୀ ନାମରୁ ଯେ ଭଦ୍ରକର ଉତ୍ପତ୍ତି, ଏହା ଏକ ପ୍ରାମାଣିକ ତଥ୍ୟ । ଏଥିରେ କୌଣସି ସନ୍ଦେହ ନାହିଁ । 'ଭଦ୍ର' ଶବ୍ଦର ଅର୍ଥ ହେଉଛି ସୌଭାଗ୍ୟ, କୁଶଳ, କଲ୍ୟାଣ ବା ଶୁଭ ଆଉ 'କ'ର ଅର୍ଥ ଦିପ୍ତି ପାଇବା ।' × × × ମା' ଭଦ୍ରକାଳୀଙ୍କର ପାଞ୍ଚୋଟି ପ୍ରଧାନ ପର୍ବ ଭିତରୁ ରଜୋତ୍ସବ ଅନ୍ୟତମ ।' (୧୯୯୦/୩ୟ ଖଣ୍ଡ/ପୃ. ୩୦-୩୨)

୬। 'ଯାହାହେଉ, ମାଟ୍ରିକ ପରୀକ୍ଷା ପରେ, ମୋ ସାଙ୍ଗସାଥୀଏ ଥରେ ଠାକୁର ଦାଣ୍ଡରେ 'ଲକ୍ଷ୍ମଣ ବର୍ଜ୍ଜନ' ନାଟକ ମଞ୍ଚସ୍ଥ କରିଥିଲୁ । ଅଜାଙ୍କର ବେଶି ସାହାଯ୍ୟ ଅବଶ୍ୟ ନେଇ ନଥିଲୁ । ତେବେ ଆମ ସହିତ କେତେଜଣ ବୟସ୍କ ଲୋକ ମଧ୍ୟ ଅଭିନୟରେ ଭାଗ ନେଇଥିଲେ । ଉପା ଓ ମୁଁ ଯଥାକ୍ରମେ ଲବ, କୁଶ ଭୂମିକାରେ ଅଭିନୟ କରିଥିଲୁ ।' (୧୯୯୦/୪ର୍ଥ ଖଣ୍ଡ / ପୃ. ୧୭୬)

୭। 'ରଘୁର ନଜର (ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା) ମୋ ଉପରେ ପଡ଼ିଲାକ୍ଷଣି ସେ ତରବରରେ ଉଠିଆସି ମୋତେ ହସିହସି କୁଣ୍ଢାଇ ପକାଇଲା । ଅନ୍ୟ ସାଥୀମାନଙ୍କୁ ବି କତିକି ଭିଡ଼ିନେଲା ।

ମୁଁ ତାହାକୁ ଅଭିମାନିଆ ଗଳାରେ କହି ପକାଇଲି - ତୁ ତ ଆମକୁ ଛାଡ଼ି କୁଆଡ଼େ ପଳେଇଗଲୁ ? ତୋ ସାଂଗରେ ଆଉ କି କଥା ? ତୋତେ ମନେମନେ କେତେ ଖୋଜୁଛି । ଯାହାହେଉ, ତୁ ବଡ଼ କପାଳିଆ । ନାଁ କମେଇଲୁ, ଯଶ ଅରଜିଲୁ । ଆମେ ଅଭାଗା, ପାଠ - ବହି ଘୋଷିବାରେ ଲାଗିଛୁଁ ।

ରଘୁ ମୋ କାନ୍ଧରେ ହାତ ପକାଇ ଖେଦୋକ୍ତି କଲା- ନା ରେ, ତୁମେ ସବୁ କପାଳିଆ, ଦିନେ ବଡ଼ ଅଫିସର ହବ, ମୋଟା ଦରମା ପାଇବ, କୋଠାବାଡ଼ି କରିବ । ମୁଁ ବେହିଆଟାଏ, ନାଚି ଗାଇ ବେଳେବେଳେ ଲୋକଙ୍କ ମନ ହରଣ କରୁଛି । ମୋତେ କିଏ ପଇସାଟାକୁ ପଚାରେ ? ମୁଁ କ'ଣ ଜଣେ ମଣିଷରେ ଲେଖା ?' (୧୯୯୨/ ପ୍ରଥମ ଖଣ୍ଡ/ପୃ. ୪୫)

୮। 'ମୋ ମନ ସକସକ ହେଉଥାଏ, କେମିତି ଆଶୁକବି ଗାୟକଙ୍କୁ (ଜାତୀୟକବି ବାଞ୍ଛାନିଧି ମହାନ୍ତି) ଥରେ ନିରୋଳାରେ ଭେଟନ୍ତି, ମୋ ଅନ୍ତର ବାରତା ଥରେ ହେଲେ ଜଣାନ୍ତି । ପରଦିନ ଭଦ୍ରକ ଉଚ୍ଚ ବିଦ୍ୟାଳୟରେ ଖେଳଛୁଟି ଘଣ୍ଟା ପଡ଼ିଲା। ମୋ ମନ ତ ସେହି ଅମୃତ ପୁରୁଷଙ୍କଠି ଲାଖି ରହିଥାଏ । ସାତେସାତ୍ କେତେଜଣ ସାଥୀଙ୍କୁ ଧରି ଚାଲିଲି ପାଖ ଚାଳ ଘରଟି ଆଡ଼କୁ । ଖାଲି ନାଳଟା ଟପିଲାରୁ, ଦାଣ୍ଡ ଦୁଆରେ ଉଙ୍କି ମାରି ଦେଖିଲି, କବି ଛିଡ଼ା ସପ ଖଣ୍ଡିକରେ ବସି ହାରମୋନିୟମ ବଜାଇ ଜଣେ ପିଲାକୁ ଗୀତ ଶିଖାଉଛନ୍ତି । ଆମ ଉପରେ ନଜର ପଡ଼ିଲାକ୍ଷଣି ସେ ଭିତରକୁ ଯିବାକୁ ଠାରିଲେ, ଅତି ଆଦରରେ କହିଲେ - ବସ । ହାରମୋନିୟମ ଉପରେ ହାତରଖି ମଥା ଟେକି ପଚାରିଲେ - କୁଆଡ଼େ ? କିଛି କାମ ଅଛି ? ମୁଁ ଅକପଟରେ କହିପକାଇଲି - କାଲି

ରାତିରେ ରଙ୍ଗମଞ୍ଚରୁ ଜାଣିଲୁ, ଆପଣ ଏତେବଡ଼ ଲୋକ, ଆମରି ପାଖରେ ଅଛନ୍ତି, ଅଥଚ ଆମେ ଆପଣଙ୍କୁ ଥରେ ହେଲେ ଦେଖି ନାହୁଁ । ସେଥିପାଇଁ ଆମେ ଆପଣଙ୍କୁ ଟିକିଏ ଦେଖିବାକୁ ଚାଲି ଆସିଲୁ । ସେ ହସିହସି ଆମକୁ ସାବାସି ଦେଲେ । କହିଲେ - ବାଃ, ଭଲ କଲ । ହେଉ ଟିକିଏ ବସ, ଗୀତଟା ସରୁ, ଆଜି ରାତିରେ ପରା ସେ ଗୀତଟା ରଙ୍ଗମଞ୍ଚରେ ଗାଇବି । କିଛିକ୍ଷଣ ବସିଲୁ, ତାଙ୍କର ଗୀତ ଶିଖାଇବାର ଢ଼ଙ୍ଗ ଦେଖିଲୁ। ଅମାୟିକ ସରଳ ମଣିଷ, ତିଳେ ଗର୍ବ କି ଅହଙ୍କାର ନାହିଁ, ସଭିଏଁ ଆପଣାର ପିଲାଠୁ ବୁଢ଼ାଯାଏ, ମଧୁର ବଚନ, ସ୍ନେହର ଖଣି, ସୌମ୍ୟକାନ୍ତି, ଉଜ୍ଜ୍ୱଳ ଜ୍ୟୋତି, ସ୍ୱାଭିମାନରେ ପରିପୂର୍ଣ୍ଣ, ଜାତୀୟତା ହିଁ ଏକମାତ୍ର ବ୍ରତ, ସ୍ୱାଧୀନଚେତା, ମନପ୍ରାଣରେ ଖାଣ୍ଟି ସ୍ୱଦେଶ ପ୍ରେମ । ' (୧୯୯୨/୩ୟ ଖଣ୍ଡ/ପୃ. ୨୦୬)

୯ । 'ଏହି ସମୟରେ ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଡ଼କ୍ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ଏକ ଗ୍ରାମ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ପରିକଳ୍ପନା କଲେ । ସେହି ପ୍ରସ୍ତାବକୁ ରୂପରେଖ ଦେବା ଉଦ୍ଦେଶ୍ୟରେ ଛକଡ଼ି ସାଳନ୍ଦୀ ନଦୀ କୂଳରେ ଆମ୍ବ ତୋଟାହିଁ ଏତାଦୃଶ ଶିକ୍ଷାୟତନରେ ପ୍ରକୃଷ୍ଟ ସ୍ଥାନ ବୋଲି ସୂଚନା ଦେଲେ । ନିଜର ଜମିବାଡ଼ି ଏଥିପାଇଁ ସେ ଦାନ କଲେ । ତା'ପରେ ଆଗେଇ ଆସିଲେ ଆଉ ଦୁଇଜଣ । ଜମିଦାର ମିଆଁ ସାହେବ ଓ ଭରମର ପାଢ଼ୀ - ସେମାନଙ୍କର ସେଠା ଜମି ଅକାତରେ ଦାନ କଲେ । ଖଣି ମାଲିକ ସିରାଜୁଦ୍ଦିନ ଓ ଅନ୍ୟ ବଦାନ୍ୟ ବ୍ୟକ୍ତିମାନେ ଆର୍ଥିକ ସାହାଯ୍ୟ ପ୍ରଦାନ କଲେ । ବାଉଦପୁରର ସଚ୍ଚୋଟ ଓ କର୍ମଠ ଓକିଲ ନରେନ୍ଦ୍ର ପ୍ରସାଦ ଦାସ ପୁରା ସମୟ ଦେଇ ଏକନିଷ୍ଠ ସଂପାଦକ ଭାବରେ ସେ କାର୍ଯ୍ୟ ତୁଲାଇବାରୁ, ୧୯୪୮ ମସିହାରେ ଭଦ୍ରକ ମହାବିଦ୍ୟାଳୟ ସଗର୍ବରେ ଏକ ଉଚ୍ଚ ଶିକ୍ଷାୟତନ ଭାବରେ ମଥା ଟେକି ଠିଆ ହେଲା ।' (୧୯୯୦/୧ମ ଖଣ୍ଡ/ପୃ. ୩୯-୪୦)

୧୦। 'ଗାଁରେ ପାଞ୍ଚୋଟି ସାହି - ପଣ୍ଡାସାହି, ଉପର ସାହି, ମଝିସାହି, କର ସାହି, ପାଣ ସାହି । ଉପର ଓ ମଝି ସାହିରେ ସମ୍ଭ୍ରାନ୍ତ କରଣ ମାନଙ୍କ ଘର, ପଣ୍ଡା ଓ କରସାହି ବ୍ରାହ୍ମଣମାନଙ୍କର ଆସ୍ଥାନ, ପାଣ ସାହିରେ ହରିଜନମାନେ ବଡ଼ ଜମିମାଲିକଙ୍କ ଜାଗାରେ କୁଡ଼ିଆ ବାନ୍ଧି ରହୁଥିଲେ ।

ପଣ୍ଡା ସାହିଟି ହେଲା ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ । ପୁରୁଷୋତ୍ତମ କ୍ଷେତ୍ରର ବିଗ୍ରହଙ୍କ ଠାରୁ ଭିନ୍ନ ଧରଣର- ଏଠି ତିନିମୂର୍ତ୍ତି ନାହାନ୍ତି, ଖାଲି ବଡ଼ ଚକାଆଖିଆ ମୂର୍ତ୍ତିଟି ।' (୧୯୯୦/୧ମ ଖଣ୍ଡ/ପୃ. ୫୯)

୧୧। 'ପ୍ରତି ବରଷ ଧାରା ଶ୍ରାବଣ ମାସରେ ଆମ ଗାଁର ତିନି ସାହିରେ ଝୁଲଣ ଯାତ୍ରା ଖୁବ୍ ଧୁମ୍‌ଧାମରେ ସମାହିତ ହୁଏ । ସେତେବେଳେ ପ୍ରାୟ ନଦୀର ଦୁଇକୂଳ ଖାଉଥାଏ । ଏପରିକି ବଢ଼ିପାଣି ଆମ ଝୁଲଣ ବଙ୍ଗଳାର ଦାଣ୍ଡ ପାହାଚ ଯାଏ ମାଡ଼ି ଆସେ । ଲଗାଣ

ବରଷା ମଧ ଚାଲିଥାଏ । କରସାହିର କୂଳ ଦେବତା ଗୋପୀନାଥଙ୍କ ଝୁଲଣ ବଂଗଳା ମନ୍ଦିରକୁ ଲାଗିଛି । ମାତ୍ର, ଉପର ସାହିର ରାଇକିଶୋର ଓ ଆମ ସାହିତର ରାଧାଗୋବିନ୍ଦ ଏ ଦୁଇ ସାହିର ବଙ୍ଗଳା ମନ୍ଦିରଠାରୁ ଟିକିଏ ଛାଡ଼ରେ । ଶୁକ୍ଳ ତୃତୀୟା ତିଥିରେ ଠାକୁର ରାତିରେ ବିଜେ କରନ୍ତି ଯେ ପୂର୍ଣ୍ଣିମା ପର୍ଯ୍ୟନ୍ତ ଯାତ୍ରା ଲାଗି ରହେ । ଦି' ସାହି ଭିତରେ ପ୍ରତିଯୋଗିତା । ଭାରି ଜୋରସୋର୍‌ରେ ଚାଲେ । ବୃନ୍ଦାବନର କୁଞ୍ଜ ଢ଼ାଞ୍ଚାରେ ଦି ସାହିର କୁଞ୍ଜ ସଜାଯାଏ । ପିଲାଏ ଆନନ୍ଦରେ ମାତି ଯାଆନ୍ତି, ଦିନରାତି କୁଞ୍ଜ ସଜେଇବାରେ ଲାଗନ୍ତି । କଣ ଭାଇଙ୍କ (ସୁରେନ୍ଦ୍ର ପ୍ରସାଦ) ଆନ୍ତରିକ ଉଦ୍ୟମରେ କାମ ଚାଲେ । ସେ ଯାହା ବତାନ୍ତି, ଆମେ ସେ ସବୁ ଅତି ଉତ୍ସାହରେ କରିବାକୁ ଲାଗୁ । ସେହି କେତେଦିନ ବହି ପତ୍ରରେ ଡ଼ୋରି ବନ୍ଧାଯାଏ । (୧୯୯୦/୨ୟ ଖଣ୍ଡ/ପୃ. ୭୫-୭୬)

୧୨। ତା' ପରେ ମୋତେ ଅନାଇ କବି (କବିଶେଖର ଚିନ୍ତାମଣି ମହାନ୍ତି) ପଚାରିଲେ- ତୁମ ସାଙ୍ଗ (ଶ୍ରୀ ଗୌରଚନ୍ଦ୍ର ମହାପାତ୍ର)ତ ମୋର ବହୁତ କାବ୍ୟ - କବିତା ପଢିଛି । ତୁମେ କିଛି ପଢ଼ିଛ ? ଗଦ୍ୟ ? ଉପନ୍ୟାସ, ଗପ, ପ୍ରବନ୍ଧ, ଭ୍ରମଣ ?ମୋ ପକ୍ଷରୁ ଅନନ୍ତ (ଗୌର ଓ ଲକ୍ଷ୍ମୀନାରାୟଣ ଦୁହିଁଙ୍କ ବନ୍ଧୁ) ତତ୍‌କ୍ଷଣାତ୍ ଛୋଟ ତାଲିକାଟିଏ ପେଶ୍ କରିଦେଲା ରୂପାଚୁଡ଼ି, ଟଙ୍କାଗଛ, ଯୁଗଳ ମଠ, ତ୍ରିବେଣୀ, ବୁଲାଫକିର, ଶନି ସପ୍ତା ଇତ୍ୟାଦି ଉପନ୍ୟାସ ।

ବାଃ, ତାହାହେଲେ, ଦେଖୁଛି, ତୁମ୍ଭେମାନେ ଖାଲି ପାଠ ବହି ମୁଖସ୍ଥ କରୁନାହିଁ, ଆଜିକାଲି ମୋ ଭଳି ପାମର ଲେଖକଙ୍କ ବହି ସବୁ ମଧ ପଢୁଛ । ଭଲକଥା । ତାହାହେଲେ ଆମ ସାହିତ୍ୟ ଅତି ଉଚ୍ଚକୁ ଉଠିବ ।

ଆମକୁ ଠିଆ ହେବାର ଦେଖି, କବିବର ଆଶ୍ୱାସନା ଦେଲେ - ତୁମ ପତ୍ରିକାଟି ରଖିଲି, ପଢ଼ିବି, ମୋ ମତାମତ ଲେଖିକରି ଦେବି, ଆସି ନେଇଯିବ । ବାସ୍ତବିକ ଆଜି ତୁମମାନଙ୍କ ପରି ତରୁଣ ଲେଖକ ମାନଙ୍କୁ ଦେଖି ମୋର ଅଭିଳାଷ ପୂରଣ ହେଲା । ମୁଁ ତ ବାଟ କାଟିବା ଉପରେ ହେଲିଣି । ଆଉ କେତେଦିନ ? ଏଣିକି ଓଡ଼ିଆ ସାହିତ୍ୟର ଭାର ତୁମ ଉପରେ ଆସି ପଡ଼ିଲା, ବଞ୍ଚେଇ ରଖିବ, ବଢ଼େଇବ । କବି ଶେଖରଙ୍କୁ ଭୂମିରେ ପ୍ରଣାମ କରି ଆମେ ବାହୁଡ଼ିଲୁ । (ନବପତ୍ର-୧୯୯୦/୩ୟ ଖଣ୍ଡ/ପୃ. ୪୧)

୧୩। 'ଏହି ସମୟରେ ପ୍ରସିଦ୍ଧ ବଙ୍ଗଳା ଥିଏଟରର ବିଶିଷ୍ଟ ଅଭିନେତା ମନିବାବୁଙ୍କ (ଯତୀନ୍ଦ୍ର ମୋହନ ମୁଖାର୍ଜୀ) ସାନଭାଇ (ସ୍ଥାନୀୟ ମୁନସଫ୍ କୋର୍ଟର କିରାଣୀ) ଫନି ବାବୁଙ୍କ ଅକ୍ଳାନ୍ତ ଉଦ୍ୟମରେ ଆମ ଗାଁରେ ଗୋଟିଏ ସୌଖୀନ ଥିଏଟର ପାର୍ଟି ଗଢ଼ାଗଲା । ଆମେ ସଭିଏଁ ଫନିବାବୁଙ୍କୁ 'ଅଜା' ବୋଲି ଡ଼ାକୁଥିଲୁ । ଆଖପାଖ ଗାଁ ସାହାପୁର

ଛାନୁଗଞ୍ଜ, ଅସ୍ତଳ ଓ ବଙ୍କ ସାହିରୁ ଉତ୍ସାହୀ ଯୁବକମାନେ ଆସି ଏଥିରେ ଯୋଗ ଦେଉଥିଲେ । ଉପର ସାହିର ଝୁଲଣ ବଙ୍ଗଳାରେ ନିତି ରାତିରେ ରିହାରସାଲ ହେଉଥିଲା । ଅଚ୍ଛା ଅଭିନୟର ନିର୍ଦ୍ଦେଶକ ଥିଲେ । ସଂଗୀତ ନିର୍ଦ୍ଦେଶକର ଭାର ନେଇଥିଲେ ଜନପଦ କବି ବାଞ୍ଛାନିଧି ମହାନ୍ତିଙ୍କ ଭାଇ ପ୍ରେମାନନ୍ଦ । ପ୍ରଥମେ 'ଚନ୍ଦ୍ରଗୁପ୍ତ' ନାଟକ ମଞ୍ଚସ୍ଥ ହେଲା । ... ତା' ପରେ ଆମ ସାହିରେ 'ଫୁଲରା' ଓ 'କାରିଗରି' ନାଟକ ଦୁଇଟି ମଞ୍ଚସ୍ଥ ହୋଇଥିଲା । ଉତ୍ସାହୀ ଯୁବକମାନେ ଜୀବିକା ସନ୍ଧାନରେ ଗାଁ ଛାଡ଼ି ଚାଲିଯିବାରୁ, ଦଳ ଆପେ ଆପେ ଭାଙ୍ଗିଗଲା ତେବେ କେତେଦିନ ପରେ ଆମେ ପିଲାଏ ମିଶି ଠାକୁର ଦାଣ୍ଡରେ 'ଲକ୍ଷ୍ମଣ ବର୍ଜ୍ଜନ' ନାଟକ ମଞ୍ଚସ୍ଥ କରିଥିଲୁ । ଲବ-କୁଶ ଭୂମିକାରେ ଉପା ଓ ମୁଁ ବାହାରିଥିଲୁ । ସେତିକିରେ ଗାଁରେ ନାଟ୍ୟ ଅଧ୍ୟାୟ ସରିଲା ।' (ନବପତ୍ର- ୧୯୯୦/୩ୟ ଖଣ୍ଡ, ପୃ. ୩୪)

## ପରିଶିଷ୍ଟ-୯

# ସେମାନଙ୍କ ଦୃଷ୍ଟିରେ - ଲକ୍ଷ୍ମୀନାରାୟଣ ମହାନ୍ତି

### ନିତ୍ୟାନନ୍ଦ ମହାପାତ୍ର :

'୧୯୮୬ ମସିହା କଥା କହିବି । ମନେ ପଡୁଛି । ସେହିବର୍ଷ କଟକରେ 'ଓଡ଼ିଆ ଲେଖକ ସହଯୋଗ ସମିତି' ପ୍ରତିଷ୍ଠା ସହ, ତାହାର ମୁଖପତ୍ର 'ଉଦୟ'ର ସଂପାଦନା କରିଥିଲେ । ଭାରତର ପ୍ରସିଦ୍ଧ PEN ଅନୁଷ୍ଠାନର ଏକମାତ୍ର ଓଡ଼ିଆ ସଭ୍ୟ ଥିଲେ ।' (ତପୋବନର ତପସ୍ୱୀ, ପୃ. ୩୬)

### ଶ୍ରୀ ଯୁଗଳ କିଶୋର ଦତ୍ତ :

'ଜଣେ ଦରଦୀବନ୍ଧୁ ଓଡ଼ିଆ ଅନୁବାଦ ସାହିତ୍ୟ ଜଗତର ପ୍ରାଣ ପ୍ରତିଷ୍ଠାତା ଲକ୍ଷ୍ମୀନାରାୟଣ ମହାନ୍ତି ଆଜି ଆମ ଭିତରେ ନାହାଁନ୍ତି, ସତକଥା, କିନ୍ତୁ ତାଙ୍କର ଅନୁବାଦ ସାହିତ୍ୟ ପାଠକ ମନରେ ସବୁଦିନ ପାଇଁ ଅମ୍ଳାନ ହୋଇ ରହିବ । ତାଙ୍କରି ପ୍ରେରଣାରେ ମୁଁ ଅନୁବାଦ ସାହିତ୍ୟ ପ୍ରତି ଆଗେଇ ଯାଇଥିଲି । ତାଙ୍କ ଭଳି ଏତେ ସ୍ନେହ, ଭଲପାଇବା ମୁଁ ଆଉ କୌଣସି ସାହିତ୍ୟିକଙ୍କ ପାଖରୁ ଆଜିଯାଏ ପାଇନାହିଁ ।' (ତପୋବନର ତପସ୍ୱୀ-ପୃ. ୪୮)

### ଶ୍ରୀ ଗୌରଚନ୍ଦ୍ର ମହାପାତ୍ର :

'ନବମ ଶ୍ରେଣୀରେ (ଭଦ୍ରକ ହାଇସ୍କୁଲ) ପଢୁଥିବା ସମୟରେ ମୁଁ 'ରଶ୍ମିରେଖା' ବୋଲି ଗୋଟିଏ ହାତଲେଖା ପତ୍ରିକା ପ୍ରକାଶ କରିଥିଲି । ସେହି ପତ୍ରିକାରେ ସେ (ଲକ୍ଷ୍ମୀନାରାୟଣ) ପ୍ରଥମେ ଲେଖା ଆରମ୍ଭ କରିଥିଲା । ସେ ପତ୍ରିକାର ଲେଖା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ତହିଁରେ ତାର ଲେଖା ଆରମ୍ଭ ହେଲା ଯେ ଆଉ ଶେଷ ହୋଇ ନାହିଁ ।' (ତପୋବନର ତପସ୍ୱୀ-ପୃ. ୪୩)

### ଡକ୍ଟର ଗଙ୍ଗାଧର ବଳ :

'ସ୍ୱଭାବତଃ ସେ ଥିଲେ (ଲକ୍ଷ୍ମୀନାରାୟଣ) ଜଣେ ସ୍ନେହୀ, ଗୁଣଗ୍ରାହୀ ଓ ମିଷ୍ଟଭାଷୀ ବ୍ୟକ୍ତି । ନିଜର ସାରସ୍ୱତ କୃତି ଓ ପ୍ରତିଷ୍ଠା ସତ୍ତ୍ୱେ ତାଙ୍କ ମନରେ ନଥିଲା ଅହଙ୍କାର । ସେ ଅନ୍ୟକବି, ସାହିତ୍ୟିକଙ୍କ କୃତିତ୍ୱର ଥିଲେ ସଶ୍ରଦ୍ଧ ପ୍ରଶଂସକ । ନିଜର ସ୍ୱଭାବ ସୁଲଭ ବିନୟ ହେତୁ ସେ ଅନ୍ୟମାନଙ୍କୁ ଆପଣାର କରିପାରିଥିଲେ ।' (ତପୋବନର ତପସ୍ୱୀ - ପୃ. ୭୬)

## ବୀଣାପାଣି ମହାନ୍ତି :

'ଓଡ଼ିଶାରେ ଯେତେବେଳେ ସାଧାରଣ ଶିକ୍ଷା ଲୋକମାନଙ୍କର ନଥିଲା, ସେତେବେଳେ ଓଡ଼ିଆ ସାହିତ୍ୟ ମଧ୍ୟ ସେମାନଙ୍କ ପାଖରେ ଦୁର୍ବୋଧ ହୋଇପଡୁଥିଲା । ଏ ସବୁକୁ ଦୃଷ୍ଟିରେ ରଖି ଲକ୍ଷ୍ମୀନାରାୟଣ ବାବୁ ଇଂରାଜୀ ଓ ପଡ଼ୋଶୀ ସାହିତ୍ୟକୁ ସରଳ ଭାବରେ ଅନୁବାଦ କରି ଚାଲିଲେ, ଏବଂ କ୍ରମଶଃ ତାହା ଓଡ଼ିଆ ପାଠକଙ୍କ ଦ୍ୱାରା ଆଦୃତ ହେଲା ।' ××× ଓଡ଼ିଆ ସାହିତ୍ୟରେ ଅନୁବାଦର ଅନ୍ୟତମ ପୃଷ୍ଠଭୂମି ରଚନା କରିଥିବାରୁ ଲକ୍ଷ୍ମୀନାରାୟଣ ମହାନ୍ତି ଚିରସ୍ମରଣୀୟ ହୋଇ ରହିବେ । ଆମ ମାଟିର ଦିଗନ୍ତ ନିକଟବର୍ତ୍ତୀ, ଓ ସୁଦୂର ଦିଗନ୍ତର ଉନ୍ମୋଚକ ଭାବରେ ଓଡ଼ିଆ ସାହିତ୍ୟର ଇତିହାସରେ ସେ ଅପ୍ରତିଦ୍ୱନ୍ଦୀ ସ୍ମାରକୀ । (ତପୋବନର ତପସ୍ୱୀ- ପୃ. ୪୦-୪୨)

## ଡକ୍ଟର ଆଚାର୍ଯ୍ୟ ଭାବାନନ୍ଦ (ଡ଼କ୍ଟର ଭାବଗ୍ରାହୀ ମିଶ୍ର):

'ବୟସରେ ସେ (ଲକ୍ଷ୍ମୀନାରାୟଣ) ମୋ ଠାରୁ ବଡ଼ ଥିଲେ (ବୋଧହୁଏ !) କିନ୍ତୁ ବୟସର ଗାରିମାକୁ ସେ ମୋ ଉପରେ ଚାପିବାକୁ ଚେଷ୍ଟା କରିନଥିଲେ । ବରଂ ଜଣେ ସହୃଦୟ ବନ୍ଧୁ ଭାବରେ ଆମ ସହିତ ସାହିତ୍ୟ ଆଲୋଚନା କରିବାରେ ମନୋନିବେଶ କରି 'ଭବିଷ୍ୟତ'ରେ ମୋ ଠାରୁ ଲେଖା ଚାଲୁରଖିବାର ସଂକଳ୍ପ କରାଇ ସାରିଥିଲେ ।' (ତପୋବନର ତପସ୍ୱୀ - ପୃ. ୩୬)

## ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି :

'ଜଣେ ବନ୍ଧୁବତ୍ସଳ ତଥା ଦରଦୀ ବନ୍ଧୁ ଭାବେ ଲକ୍ଷ୍ମୀନାରାୟଣ ବାବୁ ସମସ୍ତଙ୍କର ସମ୍ମାନ ଓ ଶ୍ରଦ୍ଧା ଅର୍ଜନ କରିଥିଲେ । ଦୂରରୁ ସେ ଗମ୍ଭୀର ଦେଖାଗଲେ ମଧ୍ୟ ଅତି ନିକଟରୁ ଓ ଆନ୍ତରିକ ସଂପର୍କରୁ ଜାଣିହେବ, ସେ ଜଣେ ହାସ୍ୟରସିକ ବ୍ୟକ୍ତି । ମୃଦୁ ହାସ୍ୟ ସହିତ ତାଙ୍କ ଥଟ୍ଟା ପରିହାସ ଶାଣିତ ହେଲେ ମଧ୍ୟ ସେଥିରେ ଆନନ୍ଦ ଭରି ରହିଥାଏ । ଏହିପରି ବନ୍ଧୁ ଅନ୍ତରଂଗ ମୁହୂର୍ତ୍ତ ତାଙ୍କ ସହିତ ମୋର ଅତିବାହିତ ହୋଇଛି ।' (ତପୋବନର ତପସ୍ୱୀ, ପୃ. ୫୦)

## ଶ୍ରୀ ଅପୂର୍ବ ରଞ୍ଜନ ରାୟ :

'ସେ ଥିଲେ ଆଜୀବନ ସାଧକ ତପସ୍ୱୀ । ବହୁତ ପଢ଼ନ୍ତି । ଅନେକ ଦୁର୍ଲ୍ଲଭ ପତ୍ରପତ୍ରିକା ଓ ଗ୍ରନ୍ଥର ସେ ସଂଗ୍ରାହକ । ....ନୂତନ ଲେଖକ ଲେଖିକାଙ୍କ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଥାଏ । (କାଳାନ୍ତର / ୦୬-୦୨-୨୦୦୫)

## ଡକ୍ଟର ଶିରୀଶ ଚନ୍ଦ୍ର ଜେନା :

'କୌଣସି ଗତାନୁଗତିକ ଧରାବନ୍ଧା ସାହିତ୍ୟିକ ନିୟମ ଭିତରେ ସେ ବାନ୍ଧିହୋଇ ସ୍ଥାଣୁ ପାଲଟି ନାହାଁନ୍ତି । ସର୍ବଦା ସେ ଗତିଶୀଳ । ବିଭିନ୍ନ ଦେଶକୁ ପୁସ୍ତକ ମାଧ୍ୟମରେ ତାଙ୍କର

ପରିଭ୍ରମଣ । ତାଙ୍କର ଅନ୍ତର୍ନିହିତ ଇଚ୍ଛା ଥିଲା ଓଡ଼ିଶାର ସବୁ ଶ୍ରେଣୀର ପାଠକଙ୍କୁ ସେ ଛୁଇଁବେ । ଏଥିପାଇଁ ସେ ରହସ୍ୟ ରୋମାଞ୍ଚଧର୍ମୀ ଉପନ୍ୟାସଠାରୁ ଧାର୍ମିକ ବାଣୀକୁ ମଧ୍ୟ ଅନୁବାଦ କରି ପାଠକ ମାନଙ୍କ ପାଖରେ ଥୋଇ ଦେଇଛନ୍ତି । ବିଶ୍ୱ କ୍ଲାସିକ୍ ସାହିତ୍ୟକୁ ଅଭିଯାତ ସାହିତ୍ୟିକଙ୍କ ପାଖରେ ରଖି ସାରା ସଂସାରକୁ ପରଖିବାର ଆଶ୍ୱସନା ସେ ଶୁଣାଇଛନ୍ତି ।' (ଗପ ବହି, ସେପ୍ଟେମ୍ବର ୨୦୦୩, ପୃ. ୧୧)

**ବାଞ୍ଛାନିଧି ଦାସ :**

ପୃଥିବୀରେ ଏମନ୍ତ କଥାକାର ନାହାଁନ୍ତି, ଯାହାଙ୍କ ଲେଖାର ମନୋଜ୍ଞ କଥାଟିଏ, କାହାଣୀଟିଏ, ଅଭୂଲା ଅଂଶଟିଏ ଲକ୍ଷ୍ମୀନାରାୟଣ ଓଡ଼ିଆରେ ଅନୁବାଦ କରିନାହାଁନ୍ତି । 'ଅନୁବାଦବେଳେ ସେ ଗାଁ ଗହଳିର ସାଧାରଣ ପାଠକର ମନକଥା ନିଜ ମନରେ ସର୍ବାଗ୍ରେ ରଖୁଥିଲେ । ଅନୁବାଦଟା ଲାଗୁଥିଲା ଯଥା ଏକ ମୌଳିକ ଓଡ଼ିଆ ସୃଷ୍ଟି । ଦେଶ ବିଦେଶର ଜ୍ଞାନ ଓ ସନ୍ଦେଶକୁ ସେ ସତେ ଯେମିତି ଆପଣାର ଯାଦୁକାରୀ କଲମ ରୂପକ ସିରିଞ୍ଜରେ ଆମ ଓଡ଼ିଆଙ୍କ ଧମନୀରେ ଇଞ୍ଜେକ୍ଟ କରିଦେଉଥିଲେ ।' (ତପୋବନର ତପସ୍ୱୀ - ପୃ. ୧୨୯)

**ଡକ୍ଟର ମନୀନ୍ଦ୍ର ମହାନ୍ତି :**

'ଲକ୍ଷ୍ମୀନାରାୟଣଙ୍କର ଗଳ୍ପ ସମ୍ଭାର ପ୍ରସଂଗରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଚରିତ୍ର ଗୁଡ଼ିକରେ ବହୁ ପରିମାଣରେ ସାମାଜିକ ଦାୟିତ୍ୱବୋଧ ପରିଲକ୍ଷିତ ହୁଏ । ଦ୍ୱିତୀୟତଃ ଜନସାଧାରଣ ଜୀବନ ସହିତ ତାଙ୍କର ବହୁବର୍ଷର ସଂସ୍ପର୍ଶ ଯୋଗୁଁ ଚରିତ୍ରଗୁଡ଼ିକରେ ସ୍ୱାଭାବିକତାର ସ୍ୱର ସୁସ୍ପଷ୍ଟ । ତୃତୀୟତଃ, ଆଦର୍ଶ ଚରିତ୍ର ପ୍ରତି ତାଙ୍କର ଗାଳ୍ପିକ - ମାନସ ଆକୃଷ୍ଟ । ଏହି ଆଦର୍ଶ ଜୀବନ ପ୍ରତି ତାଙ୍କର ଏକ ମୋହ ରହିଥିବାର ପରିଲକ୍ଷିତ ହୁଏ । ବହୁ ଚରିତ୍ର ତାଙ୍କର ସମସ୍ୟାଧର୍ମୀ ହୋଇଛି । ଏହାର ପରୋକ୍ଷ ସମାଧାନର ସେ ଯେପରି ଉପାୟ ପ୍ରଦାନ କରିଅଛନ୍ତି । କେତୋଟି ଚରିତ୍ର ସୃଷ୍ଟି କରିବା ମୂଳରେ ଗାଳ୍ପିକଙ୍କର ଗଭୀର ଯନ୍ତ୍ରଣା ଥିବାର ମଧ୍ୟ ଅନୁଭୂତ ହୁଏ । ଏଥିପାଇଁ ଗାଳ୍ପିକଙ୍କର ସମ୍ବେଦନଶୀଳ ହୃଦୟ ହିଁ ଦାୟୀ ।' (ତପୋବନର ତପସ୍ୱୀ- ପୃ. ୧୨୮)

**'ପ୍ରଜାତନ୍ତ୍ର ପ୍ରଚାର ସମିତି' (୧୯୯୮) ପୁରସ୍କାର :**

'ଗତ ଅର୍ଦ୍ଧ ଶତାବ୍ଦୀ ଧରି ଅନୁବାଦ ସାହିତ୍ୟକୁ ସମୃଦ୍ଧ କରିବାରେ ଆପଣଙ୍କର ଅଗ୍ରଣୀ ଭୂମିକା ସ୍ମରଣୀୟ । ବିଭିନ୍ନ ଭାଷାର ଉଚ୍ଚକୋଟୀର ସୃଜନଶୀଳ ସାହିତ୍ୟକୃତିକୁ ଓଡ଼ିଆ ଭାଷାରେ ଅନୁବାଦ କରି ଆପଣ ଭାରତୀୟ ପ୍ରାନ୍ତୀୟ ସାହିତ୍ୟ ଓ ବିଦେଶୀ ସାହିତ୍ୟକୁ ଓଡ଼ିଶାର ଅଗଣିତ ପାଠକଙ୍କ ନିକଟରେ ପରିଚିତ କରାଇପାରିଛନ୍ତି ।'

**ଡକ୍ଟର ବିଜୟାନନ୍ଦ ସିଂହ :**

'ଜୀବନର ବିଭିନ୍ନ ବିଭାଗକୁ ଚିତ୍ରିତ କରିବାରେ ଲକ୍ଷ୍ମୀନାରାୟଣଙ୍କ ଭୂମିକା ଅବିସ୍ମରଣୀୟ । ସୁନିର୍ବାଚିତ କଥାବସ୍ତୁ ଓ ଅପୂର୍ବ ଭାଷାଶୈଳୀରେ ତାଙ୍କ କଥା ସାହିତ୍ୟର ଆତ୍ମପ୍ରକାଶ ।

ଆମ ସାହିତ୍ୟରେ ଲକ୍ଷ୍ମୀନାରାୟଣ ପୁଣି ମିନିଗଳ୍ପର ଆଦ୍ୟ ପ୍ରବର୍ତ୍ତକ । କିନ୍ତୁ ଏସବୁ ସତ୍ତ୍ୱେ ଅନୁବାଦକ ରୂପେ ଲକ୍ଷ୍ମୀନାରାୟଣ ମହାନ୍ତି ଆମ ସାହିତ୍ୟରେ ଯଥେଷ୍ଟ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।' (କୋଣାର୍କ ବିଷୁବ ସଂଖ୍ୟା ୨୦୦୬, ପୃ. ୧୨୬)

## ପରିଶିଷ୍ଟ-୧୦

## ଅନୁଷ୍ଠାନ ପତ୍ର-୧



## ଜଗନ୍ନାଥ ସାହିତ୍ୟ ସମିତି - ୧୯୩୬

**ଉତ୍କଳୀୟ କଳା, ସାହିତ୍ୟ ଓ**
**ସଂସ୍କୃତିର ଏକମାତ୍ର ପୀଠ**

**ସମିତିର ଲକ୍ଷ୍ୟ ଓ କାର୍ଯ୍ୟକ୍ରମ:**

୧। 'ସମିତି'ର ଉଦ୍ଦେଶ୍ୟ ଉତ୍କଳର ସଂସ୍କାରପନ୍ଥୀ ଓ ନବୀନ ସାହିତ୍ୟିକ ବର୍ଗଙ୍କୁ ଉତ୍ସାହିତ କରି ଦେଶର କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନବ ଜୀବନ ସଂଚାର କରିବା ଓ ସୁଧୀ ପାଠକ ବର୍ଗଙ୍କୁ ଶସ୍ତା ଦାମ୍‌ରେ ଉତ୍କୃଷ୍ଟ ସାହିତ୍ୟ ପୁସ୍ତକ ଯୋଗାଇବା ।

୨। ସମିତିର ସଭ୍ୟ ଶ୍ରେଣୀଭୁକ୍ତ ହେବା ପାଇଁ ପ୍ରାଥମିକ ଦେୟ ଏକଟଙ୍କା ମାତ୍ର ।

୩। ସଭ୍ୟ ଶ୍ରେଣୀଭୁକ୍ତ ହେଲାକ୍ଷଣି ସମିତିର ପ୍ରଥମ ଅବଦାନ 'ସଂଘର୍ଷ' କବିତା ଗୁଚ୍ଛଟି ବିନା ମୂଲ୍ୟରେ ପ୍ରତ୍ୟେକ ସଭ୍ୟଙ୍କୁ ଉପହାର ଦିଆଯିବ ।

୪। ତା'ପରେ ଅନ୍ୟାନ୍ୟ ପରବର୍ତ୍ତୀ ପୁସ୍ତକଗୁଡ଼ିକ ପ୍ରକାଶ ପାଇବାର ବର୍ଷକ ମଧ୍ୟରେ ଅର୍ଦ୍ଧ ମୂଲ୍ୟରେ ମିଳିପାରିବ ।

୫। ପ୍ରତି ମାସରେ ଖଣ୍ଡିଏ ଖଣ୍ଡିଏ ଲେଖାଏଁ ପୁସ୍ତକ ସମିତି ତରଫରୁ ପ୍ରକାଶିତ ହେବ ।

୬। ଉତ୍କଳୀୟ ଖ୍ୟାତନାମା ଲେଖକଙ୍କ ଛଡ଼ା ସମିତିର ସଭ୍ୟମାନଙ୍କର ଅପ୍ରକାଶିତ ପାଣ୍ଡୁଲିପି ସମିତି ଦ୍ୱାରା ଉପଯୁକ୍ତ ବିବେଚିତ ହେଲେ 'ସମିତି' ତାର ଆଂଶିକ ବା ସମସ୍ତ ମୁଦ୍ରଣର ଭାର ଗ୍ରହଣ କରିବ ।

୭। ସମିତି ଯେ କୌଣସି ବିଷୟରେ ଲେଖା ପ୍ରକାଶ କରିବେ; ଯଥା- ଉତ୍କଳର ଇତିହାସ, ଭୂଗୋଳ, ପୁରାଣ, ଗଳ୍ପ, ଉପନ୍ୟାସ, କଳା ଓ ସାହିତ୍ୟ ସମ୍ବନ୍ଧୀୟ ଉତ୍କଳର ପ୍ରକାଶିତ ହୋଇନଥିବା ବିଷୟକୁ ବିଶେଷ ଦୃଷ୍ଟି ଦେବେ ଓ ସେ ଦିଗରେ କଲମ ଚଳାଉଥିବା ଲେଖକଙ୍କୁ ସଂପୂର୍ଣ୍ଣ ସୁଯୋଗ ଦିଆଯିବ ଓ ଉତ୍ସାହିତ କରାଯିବ ।

୮। ଯେଉଁମାନେ ପ୍ରାଥମିକ ଦେୟ ଛଡ଼ା ଏକକାଳୀନ ଟ.୩୦ କିମ୍ବା ଟ.୨ ୧ ଆମ ନିକଟରେ ଜମା ରଖିବେ, ସେମାନଙ୍କୁ ବିନା ଡ଼ାକ ଖର୍ଚ୍ଚରେ ଯଥାକ୍ରମେ ବର୍ଷେ କିମ୍ବା ଛ ମାସ ଯାଏ ଆମେ ପ୍ରତିମାସ ପ୍ରକାଶନ ସଂଗେ ସଂଗେ ଖଣ୍ଡିଏ ପୁସ୍ତକ ପଠାଇ ଦେବୁ ।

୯। ଯେଉଁମାନେ କେବଳ ଏକଟଙ୍କା ମାତ୍ର ଦେବେ, ସେମାନଙ୍କୁ ପ୍ରକାଶନ ପରେ ଜଣାଇ ଦିଆଯିବ । ସେମାନେ ପୁସ୍ତକ ନେବାର ବନ୍ଦୋବସ୍ତ କିମ୍ବା ଏଜେଣ୍ଟଙ୍କ ଠାରୁ ପାଇପାରିବେ ।

୧୦। ପ୍ରତି ପୁସ୍ତକର ମୂଲ୍ୟ ଆଠଅଣାରୁ ବେଶୀ ହେବ ନାହିଁ ।

୧୧। ସମିତିର ଲେଖକ ମାନଙ୍କୁ ଯଥୋଚିତ ପାରିଶ୍ରମିକ ଦିଆଯିବ ।

୧୨। ସମିତିର ସମ୍ପାଦକ ଆୟବ୍ୟୟ ହିସାବ ବୁଝିବେ ଓ ଚିରସ୍ଥାୟୀ ସଭାପତି ତାହା ଠିକ୍ କି ଭୁଲ୍ ପ୍ରତିମାସ ଦେଖିବେ ।

୧୩। ଦେଶର ଅନ୍ୟାନ୍ୟ ସାହିତ୍ୟିକ ଅନୁଷ୍ଠାନ ଆମ ସହିତ ସମ୍ବନ୍ଧ ସ୍ଥାପନ କରିବାକୁ ଆଗ୍ରହ ପ୍ରକାଶ କଲେ, ସାଦରେ ଗ୍ରହଣ କରିହେବ ।

୧୪। ଟଙ୍କା ପଇସା ବା ଚିଠିପତ୍ର ସମ୍ପାଦକଙ୍କଠାକୁ ପଠାଇବେ ।

୧୫। ସମିତିର ଏଜେଣ୍ଟଙ୍କ ପାଇଁ ଦର ଅତି ଶସ୍ତା । ଏଜେନ୍ସି ଦର ପାଇଁ ସମ୍ପାଦକଙ୍କୁ ଲେଖିବାକୁ ହୁଏ ।

୧୬। ସମିତି ସମ୍ବନ୍ଧରେ ଆଉ କିଛି ଜାଣିବାକୁ ଥିଲେ, ତଳ ଠିକଣାକୁ ଏକ ଅଣାର ଡ଼ାକ ଟିକେଟ ସହ ଲେଖିଲେ ସମସ୍ତ ବିଷୟ ଜାଣି ହୁଏ ।

**ଟଙ୍କା ଓ ପତ୍ର ପଠାଇବାର ଠିକଣା:**

ଜଗନ୍ନାଥ ସାହିତ୍ୟ ସମିତି, ଭଦ୍ରକ (ବି.ଏନ୍.ରାୟ)

**ଶ୍ରୀ ଚକ୍ରଧର ମହାନ୍ତି**

ସମ୍ପାଦକ, ଜଗନ୍ନାଥ ସାହିତ୍ୟ ସମିତି

# ଅନୁଷ୍ଠାନ ପତ୍ର-୨

## ଓଡ଼ିଆ ଲେଖକ ସହଯୋଗ ସମିତି ଲି.

### ପ୍ରଧାନ ପୃଷ୍ଠପୋଷକ : ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା

### ସଭାପତି: ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସମ୍ପାଦକ : ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

୧। ଏହି ସମିତିଟି ବିହାର ଓ ଓଡ଼ିଶାର ସମବାୟ ଆଇନ ଅନୁସାରେ ରେଜିଷ୍ଟ୍ରୀ କରାଯାଇଅଛି ।

୨। ଏହାର ମୁଖ୍ୟ ଉଦ୍ଦେଶ୍ୟ - ଓଡ଼ିଆ ଭାଷା ତଥା ସାହିତ୍ୟର ସମୃଦ୍ଧି କରାଇବା ସଂଗେ ସଂଗେ ଲେଖକ ଲେଖିକା ମାନଙ୍କୁ ଆତ୍ମନିର୍ଭରଶୀଳ ଓ ସହଯୋଗୀ ହେବାକୁ ଉତ୍ସାହିତ କରିବା ।

୩। ଯେ କୌଣସି ଅଠର ବର୍ଷରୁ ଊର୍ଦ୍ଧ୍ୱ ଓଡ଼ିଆ ଲେଖକ ବା ଲେଖିକା ଏହାର ସଭ୍ୟ ହୋଇପାରନ୍ତି ।

୪। ସଭ୍ୟ ହେବାକୁ ଚାହିଁଲେ, ଛାପା ସଭ୍ୟ ଫର୍ମ ଓ ଅଂଶ ଦରଖାସ୍ତ ପୂରଣ କରି ସମ୍ପାଦକଙ୍କୁ ଆବେଦନ କରିବାକୁ ହୁଏ ଏବଂ ତତ୍‌ସହ ଅଂଶଧନ ମଧ ପ୍ରେରଣ କରିବାକୁ ପଡ଼େ ।

୫। ପ୍ରତି ଅଂଶର ମୂଲ୍ୟ ଦଶଟଙ୍କା ଓ ପ୍ରବେଶିକା ଫି ଚାରିଅଣା । ଏକକାଳୀନ ଦଶ ଗୋଟି ଅଂଶ କିଣିଲେ, ପରିଚାଳନା କମିଟିର ସଭ୍ୟ ହେବାକୁ ଉପଯୁକ୍ତ ବିବେଚିତ ହେବେ । କେହି ପଚାଶଟିରୁ ଅଧିକ ଅଂଶ ଗ୍ରହଣ କରିପାରିବେ ନାହିଁ ।

୬। ବର୍ତ୍ତମାନ ସମିତିର ମୂଳଧନ ଦଶ ହଜାର ଟଙ୍କା ରଖାଯାଇଛି ।

୭। ଅଂଶ ନ କିଣିଲେ ସମିତିର ସଭ୍ୟ ହୋଇପାରିବେ ନାହିଁ । ସମିତିର ସଭ୍ୟମାନଙ୍କୁ ବାର୍ଷିକ କୌଣସି ପ୍ରକାର ଚାନ୍ଦା ଦେବାକୁ ପଡ଼େ ନାହିଁ ।

୮। ସମିତି ତରଫରୁ ଏକ ଓଡ଼ିଆ ମାସିକ ପତ୍ରିକା 'ଉଦୟ' ପ୍ରକାଶ କରାହେଉଛି ।

୯। ସମିତି ଓଡ଼ିଆରେ କାବ୍ୟ, କବିତା, ପ୍ରବନ୍ଧ, ଉପନ୍ୟାସ, ଗଳ୍ପ, ନାଟକ ଇତ୍ୟାଦିପ୍ରକାଶ କରିବାକୁ ଯତ୍ନ କରୁଛନ୍ତି । ନିର୍ବାଚନ କମିଟି ଦ୍ୱାରା ଗୃହୀତ ଲେଖା ହିଁ ସମିତି ଦ୍ୱାରା ପ୍ରକାଶିତ ହୁଏ ।

୧୦। ସଭ୍ୟମାନେ ନିଜ ହାତରୁ ପଇସା ଖର୍ଚ୍ଚ କରି ବହି ଛାପିବାକୁ ଚାହିଁଲେ, ଆମେ ତାଙ୍କୁ ସାହାଯ୍ୟ କରିବୁ ।

୧୧। କଟକର ବାଲୁବଜାରରେ ସମିତିର ବହି ଦୋକାନଟିଏ ଖୋଲା ହୋଇଛି ।

୧୨। ସମିତି ତରଫରୁ ପ୍ରକାଶିତ ଲେଖା ପାଇଁ ଉପଯୁକ୍ତ ପାରିଶ୍ରମିକ ଦିଆଯାଏ ।

୧୩। ସମିତି ସମ୍ପର୍କୀୟ ଯେ କୌଣସି ବିଷୟ ପାଇଁ ସମ୍ପାଦକଙ୍କୁ ଆବେଦନ କରିବାକୁ ହୁଏ । ସମିତିର ଉତ୍ତରୋତ୍ତର ଶ୍ରୀବୃଦ୍ଧି ହିଁ ତାର ସଭ୍ୟମାନଙ୍କ ସାଧୁତା, କର୍ମନିଷ୍ଠା, ଅଧ୍ୟବସାୟ ଓ ସହଯୋଗ ଉପରେ ନିର୍ଭର କରେ ।

ସମ୍ପାଦକ, ଓଡ଼ିଆ ଲେଖକ ସହଯୋଗ ସମିତି ଲିମିଟେଡ୍,
ବାଲୁବଜାର, ଚାନ୍ଦିନୀଚୌକ, କଟକ

**ମାସିକ 'ଉଦୟ' ପତ୍ରିକା ୧୯୪୮ ମସିହା - ୬ଷ୍ଠ ସଂଖ୍ୟା**
**(ଜୁଲାଇ -ସେପ୍ଟେମ୍ବର)ରୁ ସଂଗୃହୀତ ।**

## ପରିଶିଷ୍ଟ - ୧୧

# ଲକ୍ଷ୍ମୀନାରାୟଣଙ୍କ ନିଜ କଥା

ମୌଳିକ ଗଳ୍ପ, ଉପନ୍ୟାସ ଠୁ ଆରମ୍ଭ କରି ଅନୁବାଦ ଓ ଅନୁସୃଜନାତ୍ମକ ପ୍ରତ୍ୟେକ ପୁସ୍ତକର ଲକ୍ଷ୍ମୀନାରାୟଣ ନିଜସ୍ୱ ବକ୍ତବ୍ୟ କିଛି ରଖିଛନ୍ତି । ବିଶେଷ କରି ଅନୁସୃଜିତ ପୁସ୍ତକମାନଙ୍କର ମୂଳ ଗ୍ରନ୍ଥ ଓ ମୂଳ ଲେଖକଙ୍କ ସବିଶେଷ ପରିଚୟ ପ୍ରଦାନ କରିବାରେ ସେ ବେଶ୍ ଯତ୍ନବାନ୍ ଥିଲେ । ତାଙ୍କର ଏହି ନିଜସ୍ୱ ବକ୍ତବ୍ୟଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ତାଙ୍କ ସାରସ୍ୱତ ପ୍ରତିଭାର ଅନେକଗୁଡ଼ିଏ ଦିଗର ସୂଚନା ପାଇପାରିବା, ଯଥା- ତାଙ୍କ ମିନିଗଳ୍ପର ଆଭିମୁଖ୍ୟ, ମୌଳିକ ଉପନ୍ୟାସର କଥାବସ୍ତୁ ଚୟନରେ ତାଙ୍କର ରଚି, ଅନୁସୃଜନ ପାଇଁ ପୁସ୍ତକ ଚୟନର ରଚି, ସଂକ୍ଷେପିତ ଓ ଅନୁସୃଜିତ ଉପନ୍ୟାସ ସଂପର୍କରେ ତାଙ୍କର ଆଭିମୁଖ୍ୟ ଓ ସୁଚିନ୍ତିତ ଆଲୋଚନା ଇତ୍ୟାଦି ।

ଏଠାରେ ତାଙ୍କର ବିପୁଳ ପୁସ୍ତକମାନଙ୍କ ମଧ୍ୟରୁ ମାତ୍ର ୬ଖଣ୍ଡ ପୁସ୍ତକର ନିଜଲେଖା (ଅଗ୍ରଲେଖ) ପାଠକମାନଙ୍କ ଅବଗତି ନିମନ୍ତେ ଉପସ୍ଥାପିତ କରାଗଲା । ସେହି ପୁସ୍ତକଗୁଡ଼ିକ ହେଲେ-

୧. ପ୍ରଥମ ପ୍ରେମ - ମୌଳିକ ଉପନ୍ୟାସ - ପ୍ରକାଶନ ସମୟ - ୧୯୪୮

୨. ଦେହ ନିଲାମ ହେଉଛି - ଗଳ୍ପ ସଂକଳନ - ପ୍ରକାଶନ ସମୟ - ୧୯୫୯

୩. ଲଢ଼େଇ ସରିଲା ଯେବେ - ଅନୁସୃଜିତ ଗଳ୍ପ ସଂକଳନ - ପ୍ରକାଶନ ସମୟ - ୧୯୬୯
୪. ଆନନ୍ଦମଠ - ସଂକ୍ଷେପିତ ଉପନ୍ୟାସମାଳା, ସିରିଜ୍-୨- ପ୍ରକାଶନ ସମୟ - ୧୯୭୦
୫. ସିଦ୍ଧାର୍ଥ - ସଂକ୍ଷେପିତ ଉପନ୍ୟାସମାଳ, ସିରିଜ୍-୯ - ପ୍ରକାଶନ ସମୟ - ୧୯୭୧
୬. କଳାପିଲା - ସଂକ୍ଷେପିତ ଉପନ୍ୟାସ - ପ୍ରକାଶନ ସମୟ - ୧୯୯୬

## ପ୍ରଥମ ପ୍ରେମ

### ପୂର୍ବାଭାଷ

ମଣିଷ ଜୀବନରେ ସଂଗ୍ରାମ ଅଛି, ଅନଟନ ଅଛି, ଆଉରି ଅଛି ଜଟିଳ ରାଜନୀତି, କିନ୍ତୁ ସବୁରି ଉପରେ ଅଛି ପ୍ରେମ, ଆନନ୍ଦ, ସୌନ୍ଦର୍ଯ୍ୟପିପାସା । ଯାହା ନରକ ନୁହେ, ସ୍ୱର୍ଗ-ବ୍ୟଭିଚାର ନୁହେଁ, ଭୋଗ ।

ନାରୀ, ଯୁବତୀ, ରୂପସୀ, ସ୍ତ୍ରୀ ଏବଂ ପ୍ରେୟସୀ । ସେ ସ୍ତ୍ରୀ ହେଲେ ବି ତା ହୃଦୟ-ଆଗ୍ନେୟଗିରିରେ ସବୁବେଳେ କୁହୁଳୁଥାଏ ପାଇବାର ଆକାଂକ୍ଷା । ତା'ରି ମୋହରେ ସେ ସବୁକିଛି କରିଯାଇପାରେ ।

ଦୁଇଟି ଯୁବକ ଏବଂ ଗୋଟିଏ ଯୁବତୀ- ପୁରୁଷ, ପ୍ରିୟତମା, ପ୍ରେମିକ- ଆଉ ଏହି ଆକାଶ ତଳ ମାଟି । ଏମିତି ପବିତ୍ର ଦିବସ ଆସେ, ଯେବେ ଏହି ମାଟି ସୁନା ରଙ୍ଗ ଧରେ । ମନରେ ପିପାସାର ଜୁଆର ଉଠେ, ଦେହ ଦେବତାର ଦାନ ବୋଲି ମନେହୁଏ । କଣ୍ଟକାକୀର୍ଣ୍ଣ ପଥରେ ଗୋଲାପ ଫୁଟେ । ପ୍ରିୟତମା ଓ ପ୍ରେମିକ ସବୁକୁ ପଛରେ ପକାଇ ଦେଇ ଜୟଯାତ୍ରା ଆରମ୍ଭ କରନ୍ତି । ଶରୀର ସେଠାରେ ତୁଚ୍ଛ, ମୋହ ଓ ପିପାସା ଅଦମ୍ୟ । ସେହି ସ୍ୱର୍ଗୀୟ ପ୍ରେମ ଜୀବନରେ ଉଏଁ ଥରେ, ଆଉ ତାହାହିଁ ପ୍ରଥମ ପ୍ରେମ ।

## ଦେହ ନିଲାମ ହେଉଛି

### ଆଭାଷ

ସଭ୍ୟତା ଆଗେଇଉଛି । ସଂସାରର ରୂପ ବଦଳୁଛି, ଆଉ ତହିଁ ସଙ୍ଗେ ସାହିତ୍ୟର ଧାରା ମଧ୍ୟ । ଦିନ ଥିଲା, ଯେତେବେଳେ ମନୋରଞ୍ଜନ ପାଇଁ ଲୋକେ ରାତି ରାତି ବସି ଅଦ୍ଭୁତ ଗପ ଶୁଣୁଥିଲେ । କାଳର କୁଟୀଳ ଚକ ଦ୍ରୁତ ଘୂରି ଯାଉଛି । ଆଜିର ଜୀବନ ସଂଗ୍ରାମ କ୍ଷେତ୍ରରେ ମଣିଷ ସମୟକୁ ମାପି ଚାଲିଛି । ତେଣୁ ସେ ଚାହୁଁଛି, ତା'ର ସୀମିତ ଅବସର ସମୟ ଭିତରେ ନିଜର ମାନସିକ କ୍ଷୁଧା ମେଣ୍ଟାଇବ । ସେଇଥିପାଇଁ ଆଧୁନିକ ସାହିତ୍ୟ ରାଜ୍ୟରେ ଅତି କ୍ଷୁଦ୍ର ଗପର ଉଦ୍ଭାବନ ଏବଂ ତା'ର ଅସୀମ ଜନପ୍ରିୟତା ଅର୍ଜନ ।

"ଦେହ ନିଲାମ ହେଉଛି" ସେହିପରି କେତୋଟି ଆଦିରସାତ୍ମକ କ୍ଷୁଦ୍ର ଗପର ସଞ୍ଚୟନ । ଝଙ୍କାର, ଆସନ୍ତା କାଲି, ରବିବାର ପ୍ରଜାତନ୍ତ୍ର, ପ୍ରଦୀପ, ତରଣୀ, ଅଳକା, ନିର୍ଭୀକ ପ୍ରଭୃତି

ସାମୟିକ ପତ୍ରପତ୍ରିକାରେ ସେଗୁଡ଼ିକ ପ୍ରକାଶିତ ହୋଇ ପାଠକବର୍ଗଙ୍କର ଅକୁଣ୍ଠ ଶୁଭେଚ୍ଛା ଲାଭ କରିଛି । ସେଥିପାଇଁ ସଂପାଦକବୃନ୍ଦ ତଥା ପାଠକଙ୍କ ଠାରେ ଲେଖକ ଆଜୀବନ ଋଣୀ । ଏଥିରୁ କେତୋଟି ଗପର କଥାବସ୍ତୁ ଇତିହାସ, ପୁରାଣ, ବୌଦ୍ଧ ଜାତକ, ମନସ୍ତତ୍ତ୍ୱ, ଯୌନ ବିଜ୍ଞାନ ଇତ୍ୟାଦି ଗ୍ରନ୍ଥରୁ ଆହୃତ ହୋଇ କାହାଣୀ ମାଧ୍ୟମରେ ରୂପାୟିତ ହୋଇଛି ।

## ଲଢ଼େଇ ସରିଲା ଯେବେ

### ପଦେ ଅଧେ

ଆଧୁନିକ ଅତ୍ୟୁନ୍ନତ ବୈଜ୍ଞାନିକ ଯୁଗରେ ଉତ୍କଳୀୟ ପାଠକଙ୍କୁ ଆନ୍ତର୍ଜାତିକ ସାହିତ୍ୟ ସହିତ ମୋଟାମୋଟି ପରିଚୟ କରାଇଦେବା ନିମନ୍ତେ 'ମହୋଦଧି' ଏକ ବିଧିବଦ୍ଧ ଯୋଜନା ପ୍ରଣୟନ କରିଛି । ତାହାର ପ୍ରଥମ ଦୁଃସାହସିକ ପଦକ୍ଷେପ ରୂପେ ପ୍ରକାଶ ପାଇଲା ଯୁଦ୍ଧୋତ୍ତର ପଟଭୂମିକା ଉପରେ ରଚିତ ଆଧୁନିକ ଜର୍ମାନ ଛୋଟ ଗପର ଏକ ପ୍ରତିନିଧିମୂଳକ ସଞ୍ଚୟନ ।

ବିଖ୍ୟାତ ସୁଇଡ଼ିଶ ଲେଖିକା ଶ୍ରୀମତୀ ସିଗ୍ରିଦ କାଲେ ଭାରତରେ କେତୋଟି ବର୍ଷ ବିତାଇଥିଲେ । ସେତେବେଳେ ସେ ଆମ ଦେଶର ଆଧୁନିକ ସାହିତ୍ୟ ତଥା ପାଠକଙ୍କ ସହିତ ପରିଚିତ ହେବାର ସୁବର୍ଣ୍ଣ ସୁଯୋଗ ଲାଭ କରିଥିଲେ । ଅନ୍ୟ ଦେଶର ସାହିତ୍ୟରୁ କିଛି ଉଜ୍ଜ୍ୱଳ ରତ୍ନ ଆହରଣ କରି ଆମକୁ ପ୍ରଦାନ କରିବାକୁ ତାଙ୍କର ମନ ବଳିବାରୁ ବହୁ ଶ୍ରମ ସ୍ୱୀକାର କରି ସେ ଜର୍ମାନ ସାହିତ୍ୟରୁ କେତେଗୁଡ଼ିଏ ଉତ୍କୃଷ୍ଟ ଗପ ବାଛି ଭାରତୀୟ ପାଠକଙ୍କ ନିମନ୍ତେ ଅନୁବାଦ କରାଇଥିଲେ । ଏଥିରେ ଅନ୍ତର୍ଭୁକ୍ତ ସତରଟି ଗପ ଆମ ପାଠକଙ୍କ ଉଦ୍ଦେଶ୍ୟରେ ବିଶେଷ ଭାବରେ ବଛା ଯାଇଛି । ସ୍ୱଲିଖିତ ଭୂମିକାରେ ମଧ୍ୟ ସେ ଯୁଦ୍ଧୋତ୍ତର ଜର୍ମାନ କଥା ସାହିତ୍ୟ ଉପରେ ସମ୍ୟକ ଆଲୋକପାତ କରିଛନ୍ତି ।

ଏହି ସୁମୁଦ୍ରିତ ଗ୍ରନ୍ଥଟିର ପ୍ରସାର ଉପରେ ଆମର ସମୁଦାୟ ବ୍ୟୟବହୁଳ ଭବିଷ୍ୟତ ଯୋଜନା ନିର୍ଭର କରେ ।

## ଆନନ୍ଦମଠ

### ଦ୍ୱିତୀୟ କୋଠରୀ

ଦେଖିଲେ ତ, ପ୍ରଥମ କୋଠରୀରେ ଅମୂଲ୍ୟ ରତ୍ନ ଭାବରେ ବିଭିନ୍ନ ରସର ସାଂତୋଟି ଉପନ୍ୟାସ କିପରି ଯତ୍ନରେ ସାଇତା ହୋଇରହିଛି । ପ୍ରତ୍ୟେକ ଉପନ୍ୟାସକୁ ଯଦି ମୁଁ ଏକ୍ଷଣି ପଢ଼ି ବସେ, ତାହାହେଲେ ଖଣ୍ଡିକରେ ଆମର ଏଇଠି ରାତି ପାହିଯିବ, ଆମେ ଅନ୍ୟ କୋଠରୀ ସବୁ ଦେଖିପାରିବା ନାହିଁ । ସେଇଥିପାଇଁ ମୁଁ ସେ ସବୁର ସାରକଥା ଠିକେ ଠିକେ ଆପଣମାନଙ୍କୁ କହିଦେଲି । ଆମ ଜାତୀୟ ସାହିତ୍ୟରେ ଯେମିତି ଅଛି, ଠିକ୍ ସେମିତି ପୃଥିବୀରେ ଅନ୍ୟ ସବୁ

ଦେଶର ସାହିତ୍ୟରେ ମଧ୍ୟ ବହୁ କାଳଜୟୀ ଉପନ୍ୟାସ ରହିଛି, ଯାହାର ଆବେଦନ ସାର୍ବଜନୀନ ଓ ସର୍ବକାଳୀନ । ପାଶ୍ଚାତ୍ୟ ଦେଶରେ ସେହିସବୁ ଅକ୍ଷୟ ସାହିତ୍ୟ କୃତିର ସଂକ୍ଷିପ୍ତ ରୂପାନ୍ତର ଦେଖାଯାଏ, ଯାହାଫଳରେ ଅତି କମ୍ ସମୟ ଭିତରେ ଗୁଡ଼ିଏ ବଛା ବଛା ବହି ପଢ଼ିହୁଏ । ସେହି ସଂକ୍ଷିପ୍ତ ରଚନା ସବୁ ପଢ଼ିସାରିଲା ପରେ ମୂଳ ଗ୍ରନ୍ଥ ପଢ଼ିବାର ଆଗ୍ରହ ପାଠକର ମନରେ ଜାତ କରାଇବା ଉଦ୍ଦେଶ୍ୟରେ ଏହି ଧରଣର ବହିସବୁ ସେଠାରେ ବହୁଳ ପ୍ରଚାରିତ ହୋଇଥାଏ । ସେସବୁ ପଢ଼ିବାକୁ କମ୍ ସମୟ ଲାଗେ, ମୂଳ ରସ ଆସ୍ୱାଦନ କରିହୁଏ ଏବଂ ଦାମ ମଧ୍ୟ କମ୍ ଦେବାକୁ ପଡ଼େ । ସୁତରାଂ ସେସବୁ ବହିର ଚାହିଦା ଯଥେଷ୍ଟ ବେଶି । ମାତ୍ର ଆମର ଗରିବ ଦେଶରେ ସେପରି ସୁପରିକଳ୍ପିତ ଯୋଜନା ହୋଇ ନଥିବାରୁ, ମୁଁ ସ୍ଥିର କଲି ଯେ, ପୃଥିବୀର ନାନା ଦେଶରୁ ସଂଗୃହୀତ ବିଭିନ୍ନ ସ୍ୱାଦର ଶତାଧିକ ଚିରନ୍ତନ ତଥା ଜନପ୍ରିୟ ଉପନ୍ୟାସର ସଂକ୍ଷିପ୍ତ ରୂପ ମୋର ଗରିବ ପାଠକଙ୍କ ନିକଟରେ ଉପସ୍ଥାପିତ କରିବି । ସେଥିପାଇଁ ଆୟୋଜନ କରିଛି, ୩୦ ଖଣ୍ଡରେ ସେହିସବୁ ଉପନ୍ୟାସର ସାରକଥା ପ୍ରକାଶିତ ହେବ । ପ୍ରତ୍ୟେକ ଖଣ୍ଡରେ ପୃଷ୍ଠା ସୀମିତ ହୋଇଥିବାରୁ, ଅନ୍ତତଃ ପାଞ୍ଚ ଛଅ ଖଣ୍ଡରୁ ଅଧିକ ଉପନ୍ୟାସ ରହିପାରିବ ନାହିଁ । ଏଣେ ପୃଷ୍ଠା ବଢ଼ାଇ ଦେଲେ, ବହିର ଦାମ ମଧ୍ୟ ବେଶି ହୋଇଯିବ ଏବଂ ଗରିବ ପାଠକେ ତାହା କିଣି ପଢ଼ି ପାରିବେ ନାହିଁ । ସେହି ଦୃଷ୍ଟିରୁ ବହିଗୁଡ଼ିକୁ ଛୋଟ ଛୋଟ ଖଣ୍ଡରେ ବିଭକ୍ତ କରି ଦିଆଯାଇଛି । ମୋର ଏହି ବ୍ୟୟବହୁଳ ଯୋଜନାଟିକୁ କାର୍ଯ୍ୟକାରୀ କରିବା ପାଇଁ ପ୍ରକାଶକ ବନ୍ଧୁ ଶ୍ରୀ ନବକିଶୋର ମହାପାତ୍ର ଆଗ୍ରହରେ ଆଗଭର ହେବାରୁ, ମୋର ଦୃଢ଼ ଆଶା ଓ ବିଶ୍ୱାସ, ଯଥାଶୀଘ୍ର ସଂପୂର୍ଣ୍ଣ ଯୋଜନାଟି ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବ, ଯେହେତୁ ଅନ୍ତତଃ ପ୍ରତି ମାସରେ ଖଣ୍ଡିଏ ଲେଖାଏଁ ବହି ପ୍ରକାଶନର ଯଥାଯଥ ବ୍ୟବସ୍ଥା ହୋଇଛି ।

ଏହି ଦ୍ୱିତୀୟ କୋଠରୀଟିରେ ପ୍ରଥମେ ରହିଛି ବଙ୍ଗଳାର ସାହିତ୍ୟ ସମ୍ରାଟ ବଙ୍କିମ ଚନ୍ଦ୍ରଙ୍କର ଅବିସ୍ମରଣୀୟ ସାହିତ୍ୟ କୀର୍ତ୍ତି 'ଆନନ୍ଦମଠ' । ଏହି ଉପନ୍ୟାସ ଜରିଆରେ ସେ ଭାରତବର୍ଷରେ ଦେଶାତ୍ମବୋଧ ଜଗାଇବା ସଙ୍ଗେସଙ୍ଗେ ଦେଶବାସୀଙ୍କୁ ସଂଗ୍ରାମର ପ୍ରେରଣାରେ ଉଦ୍‌ବୁଦ୍ଧ କରିବା ପାଇଁ ଏକ ମହତ୍ତମ ପ୍ରଚେଷ୍ଟା କରିଥିଲେ । ଉପନ୍ୟାସରେ "ବନ୍ଦେ ମାତରମ୍" ସଙ୍ଗୀତଟି ସ୍ୱାଧୀନତା ସଂଗ୍ରାମର ଏକମାତ୍ର ମୂଳ ମନ୍ତ୍ର ଥିଲା । ଏହି ମନ୍ତ୍ରରେ ଦୀକ୍ଷିତ ହୋଇ ଦିନେ ସମଗ୍ର ଭାରତବର୍ଷର ସଂଗ୍ରାମୀ ଜନତା ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ତୁମୂଳ ଅହିଂସା ଆନ୍ଦୋଳନ ଆରମ୍ଭ କରିଥିଲା ଏବଂ ବହୁ ବୀର ଶହୀଦ ହୋଇଥିଲେ । ସେହି "ବନ୍ଦେ ମାତରମ୍" ଆଜି ଆମର ଅନ୍ୟତମ ଜାତୀୟ ସଙ୍ଗୀତ ହୋଇଅଛି । ତା'ପରେ ଅଛି ଇଂଲଣ୍ଡର ଏକ ପ୍ରସିଦ୍ଧ ଶକ୍ତିଶାଳୀ ଆଦି ରସାତ୍ମକ ଉପନ୍ୟାସ "ଚକ୍ଷୁଦାନ", ଲେଖିଛନ୍ତି ଶାର୍ଲଟ ବ୍ରଣ୍ଟି । ରେଭେରେଣ୍ଡ ବ୍ରଣ୍ଟିଙ୍କର ତିନୋଟି ଝିଅ- ବଡ଼ ଶାର୍ଲଟ, ମଝିଆଁ ଏମିଲ, ଆଉ ସାନ ଆନି । ତିନି ଭଉଣୀଙ୍କ ଭିତରେ ଉଜ୍ଜ୍ୱଳ ସାହିତ୍ୟିକ ପ୍ରତିଭା ନିହିତ ଥିଲା । ପ୍ରଥମେ ତିନିହେଁ ଛଦ୍ମ ନାମରେ କବିତା ରଚନା କରୁଥିଲେ । ତା' ପରେ ସେମାନେ ମିଶି ଉପନ୍ୟାସରେ ହାତ ଦେଲେ ଏବଂ ସଫଳ

ମଧ୍ୟ ହେଲେ । ଏମିଲିଙ୍କର "ଉଇଦେରିଂ ହାଇଟସ" ଏକ ଅମର କୃତି ଏବଂ ଆନିଙ୍କର "ଆଗ୍ନେସାଗ୍ରେ" ମଧ୍ୟ ସୁପାଠ୍ୟ । ଉଭୟେ ଯକ୍ଷ୍ମାକ୍ରାନ୍ତ ହୋଇ ପ୍ରାଣ ହରାଇଥିଲେ । ତା' ପରେ ବ୍ରଣ୍ଟି ୩୯ ବର୍ଷ ବୟସରେ ବିଭା ହେଲେ ଏବଂ ତହିଁ ପରବର୍ଷ ଇହଧାମ ତ୍ୟାଗ କଲେ । ତୃତୀୟଟି ହେଉଛି ନରୱେର ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟିକ ନୁଟ ହାମସୁନଙ୍କର କରୁଣ ରସାତ୍ମକ ଉପନ୍ୟାସ "କାମିନୀ" । ତାଙ୍କର "କ୍ଷୁଧା" ଓ "ମାଟିର ମାୟା" ଉପନ୍ୟାସ ବିଶ୍ୱ ବିଦିତ ଏବଂ ବହୁ ଭାଷାରେ ମଧ୍ୟ ଅନୂଦିତ ହୋଇଅଛି । ସେ ୧୯୨୦ ସାଲରେ ସାହିତ୍ୟରେ ନୋବେଲ ପୁରସ୍କାର ପାଇଥିଲେ । ଚତୁର୍ଥ ଓ ପଞ୍ଚମ ସ୍ଥାନ ଅଧିକାର କରିଛନ୍ତି ଯଥାକ୍ରମେ ଆର୍ନେଷ୍ଟ ହେମିଙ୍ଗଓୟେଙ୍କର "ପ୍ରତିଧ୍ୱନି" ଓ ଜନିଷ୍ଟ ଡୁମାଙ୍କର "ସ୍ୱୟଂବୃତା" । ବିଶ୍ୱବିଖ୍ୟାତ ଫରାସୀ ଔପନ୍ୟାସିକ ଆଲେକଜାଣ୍ଡାର ଡୁମାଙ୍କର ସୁଯୋଗ୍ୟ ସନ୍ତାନ ହେଉଛନ୍ତି ଜନିଷ୍ଟ ଡୁମା । ବାପାଙ୍କ ପରି ସେ ମଧ୍ୟ କେତେଖଣ୍ଡ ଉପନ୍ୟାସ ରଚନା କରିଥିଲେ । ମାତ୍ର ତାଙ୍କର ଖ୍ୟାତି ଚାରିଆଡ଼େ ବ୍ୟାପିଲା, ଯେତେବେଳେ ତାଙ୍କର ନାଟକଗୁଡ଼ିକ ସଫଳତା ସହକାରେ ମଞ୍ଚସ୍ଥ ହେଲା । ଦୁଃସାହସୀ ସଂଗ୍ରାମୀ ମାର୍କିନ ଲେଖକ ହେମିଙ୍ଗଓୟେ ବିଭିନ୍ନ ରଣକ୍ଷେତ୍ରରେ ବିପ୍ଳବୀ ଯେଉଁ ପ୍ରତ୍ୟକ୍ଷ ଭୟାବହ ଅଭିଜ୍ଞତା ଅର୍ଜନ କରିଥିଲେ, ସେ ସବୁ ସେ ନିଜର ଉପନ୍ୟାସ ଓ କାହାଣୀରେ କୁଶଳତା ସହକାରେ ଲିପିବଦ୍ଧ କରିଥିଲେ । ଅଲୌକିକ ଶୈଳୀ, ପ୍ରଖର ଅନୁଭୂତି, କାବ୍ୟାଶ୍ରୟୀ ବର୍ଣ୍ଣନା, ଭୟଙ୍କର କଥାବସ୍ତୁ ପାଇଁ ସେ ବିଦେଶରେ ଅନ୍ୟ ମାର୍କିନ ଲେଖକମାନଙ୍କଠାରୁ ଅଧିକ ପରିଚିତ ଓ ଜନପ୍ରିୟ ଥିଲେ । ୧୯୫୪ ସାଲରେ ଶାନ୍ତି, ଅହିଂସା ଓ ପୌରୁଷର ବାଣୀ ପ୍ରଚାରିତ ଛୋଟ ଉପନ୍ୟାସ "ବୁଢ଼ା ଓ ସମୁଦ୍ର" ନିମନ୍ତେ ତାଙ୍କୁ ନୋବେଲ ପୁରସ୍କାର ପ୍ରଦାନ କରିଯାଇଥିଲା । ତାଙ୍କର ଶ୍ରେଷ୍ଠ ଉପନ୍ୟାସ ହେଉଛି ୧୯୪୦ ସାଲରେ ପ୍ରକାଶିତ "ପ୍ରତିଧ୍ୱନି"- ସ୍ପେନର ଅନ୍ତର୍ବିପ୍ଳବରେ ଫାସିଷ୍ଟ ବିରୋଧୀ ସଂଗ୍ରାମର ପଟ୍ଟଭୂମିକା ଉପରେ ରଚିତ । ରବାର୍ଟ ଜୋର୍ଡାନର ଆତ୍ମବଳି, ଏନସେଲମୋର୍ ସମର ନୈପୁଣ୍ୟ, ପାବ୍‌ଲୋର ଅଧୋପତନ ଓ ମାରିୟାର ଗଭୀର ପ୍ରେମ ଏପରି କରୁଣରସ ସୃଷ୍ଟି କରିଛି ଯେ ମଣିଷର ନିୟତି ଓ ପାରିପାର୍ଶ୍ୱିକ ଅବସ୍ଥା ବିରୁଦ୍ଧରେ ଜୀବନର ରକ୍ତାକ୍ତ ଅକ୍ଷୟ ମନରେ ଚହଲ ପକାଏ । ଏହା ଏକ ଅସାଧାରଣ ସାହିତ୍ୟ କୀର୍ତ୍ତି, ଚଳଚ୍ଚିତ୍ରରେ ମଧ୍ୟ ରୂପାୟିତ ହୋଇଛି । ଏହି ଅବସରରେ ମାର୍କିନ ଉପନ୍ୟାସ ସମ୍ବନ୍ଧରେ ମୋଟାମୋଟି କିଛି କହିଲେ ଅପ୍ରାସଙ୍ଗିକ ହେବନାହିଁ ବୋଲି ମୁଁ ମନେ କରୁଛି ।

ପଞ୍ଚଦଶ ଶତାବ୍ଦୀରେ କଲମ୍ବସ ଆମେରିକା ଆବିଷ୍କାର କରନ୍ତେ, ୟୁରୋପୀୟମାନେ ଦଳ ଦଳ ହୋଇ ସେହି ବିଚିତ୍ର ମହାଦେଶରେ ବସତି ସ୍ଥାପନ କରିବାକୁ ଲାଗିଲେ । ତା'ପରେ ନାନା ପ୍ରକାର ଭାଷା, ଜାତୀୟତା ଓ ଆଚାର ବ୍ୟବହାର ମାନବ ଜୀବନର ପ୍ରୟୋଜନ ବୋଧରେ ଏକାକାର ହୋଇଗଲା । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ସେମାନଙ୍କର ସମୟ କେବଳ ପ୍ରାଥମିକ ସଂଗ୍ରାମରେ ଅତିବାହିତ ହେଲା । ତେଣୁ ସେମାନେ ୟୁରୋପୀୟ ସାହିତ୍ୟରୁ ନିଜର ମାନସିକ ତୃଷା ନିବାରଣ କରିବାକୁ ଲାଗିଲେ । ଇଂଲଣ୍ଡର ଧର୍ମନୈଷ୍ଠିକ ପ୍ରଭାବ ବହୁ ପରିମାଣରେ

ଦୃଷ୍ଟିଗୋଚର ହେଉଥିବାରୁ, ସେହି ଧାରା ମାର୍କିନ ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଅପ୍ରତିହତ ରହିଥିଲା । ଅଷ୍ଟାଦଶ ଶତାବ୍ଦୀରେ ମାର୍କିନ ସାହିତ୍ୟର ପ୍ରକୃତ ଅଭ୍ୟୁଦୟ ହେଲା । ଚାର୍ଲସ ବ୍ରକଡେନ ବ୍ରାଉନ (୧୭୭୧-୧୮୧୦) ପ୍ରଥମ ଔପନ୍ୟାସିକ ଭାବରେ ଗଣ୍ୟ ହେଲେ ସୁଦ୍ଧା, ଜେମସ ଫେନିମୋର କୁପର (୧୭୮୯-୧୮୫୧) ଓ ୱାଶିଙ୍ଗଟନ ଇରଭିଙ୍ଗ (୧୭୮୩-୧୮୫୯) ସ୍ୱକୀୟ ଅତୁଳନୀୟ ସାରସ୍ୱତ ପ୍ରତିଭା ବଳରେ ସେହି ନୂତନ ମହାଦେଶରେ ନିଜର ସୁଦୃଢ଼ ଆସନ ପ୍ରତିଷ୍ଠା କରି ପାରିଥିଲେ ।

ଊନବିଂଶ ଶତାବ୍ଦୀର ବହୁ ବଳିଷ୍ଠ ଲେଖକଙ୍କର ଆବିର୍ଭାବରେ ମାର୍କିନ କଥା-ସାହିତ୍ୟ ବିଶ୍ୱ ଦରବାରରେ ନିଜର ଯଥାର୍ଥ ଆସନ ପ୍ରତିଷ୍ଠା କରିପାରିଲା । ଦ୍ୱିତୀୟ ମହାଯୁଦ୍ଧ ପରେ ନାନା ଦେଶରେ ସେମାନଙ୍କ ପ୍ରତି ପାଠକଙ୍କର ଯଥେଷ୍ଟ ଆଦର ଦେଖାଦେଲା । ବିଶେଷ ପରିଚିତ ଔପନ୍ୟାସିକମାନଙ୍କ ମଧ୍ୟରେ ନ୍ୟାଥନିୟେଲ ହଥର୍ଣ୍ଣ (୧୮୦୪-୬୪), ହାରିୟେଟ ଏଲିଜାବେଥ ବିଚେର ଷ୍ଟୋୱେ (୧୮୧୧-୯୬), ହ୍ୟାରମ୍ୟାନ ମେଲଭିଲ (୧୮୧୯-୯୧), ଚାର୍ଲସ ଫାରାର ବ୍ରାଉନେ (୧୮୩୪-୬୬), ମାର୍କ ଟୋୟନେ (୧୮୩୫-୧୯୧୦), ହେନେରୀ ଜେମସ (୧୮୪୩-୧୯୧୬), ସାରା ଅର୍ଣ୍ଣେ ଜିୱେଟ (୧୮୪୯-୧୯୦୯), ଥିଓଡର ଡ୍ରେଇଜାର (୧୮୭୧-୧୯୪୫), ଷ୍ଟିଫେନ କ୍ରେନ (୧୮୭୧-୧୯୦୦), ଶେରଉଡ ଅଣ୍ଡାରସନ (୧୮୭୬-୧୯୫୧), ଇଉଲା କାଥାର (୧୮୮୭-୧୯୪୭), ଜାକ ଲଣ୍ଡନ (୧୮୬୬-୧୯୧୬), ଜେମସ ବ୍ରାଞ୍ଚ କାବେଲ (୧୮୭୯), ଅପ୍‌ଟନ ସିନ୍‌କ୍ଲେୟାର (୧୮୭୯), ସିନକ୍ଲେୟାର ଲୁଇସ (୧୮୮୫-୧୯୫୧), ପାର୍ଲ ବକ (୧୮୯୨), ଉଇଲିୟମ ଫକନାର (୧୮୯୭-୧୯୬୨) ଓ ଆର୍ଣ୍ଣେଷ୍ଟ ହେମିଙ୍ଗଓୟେ (୧୮୯୮-୧୯୬୧) ଏବଂ ବିଂଶ ଶତାବ୍ଦୀରେ ଜନ ଷ୍ଟେଇନବେକ (୧୯୦୨-୬୮), ଏରସ୍କିନ କାଲ୍‌ଡ ୱେଲ (୧୯୦୨-୬୭), ରିଚାର୍ଡ ରାଇଟ (୧୯୦୮-୬୦) ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କ ଭିତରୁ ସିନକ୍ଲେୟାର ଲୁଇସ, ପାର୍ଲ ବକ, ଉଇଲିୟମ ଫକନାର, ଆର୍ଣ୍ଣେଷ୍ଟ ହେମିଙ୍ଗଓୟେ ଓ ଜନ ଷ୍ଟେଇନବେକ ଶ୍ରେଷ୍ଠ ଆନ୍ତର୍ଜାତିକ ସମ୍ମାନ ରୂପେ ନୋବେଲ ପୁରସ୍କାର ଲାଭ କରିଥିଲେ ମାତ୍ର ୧୯୩୦ ସାଲରୁ ୧୯୬୨ ସାଲ ମଧ୍ୟରେ ।

ମାର୍କ ଟୋୟେନ ସର୍ବପ୍ରଥମେ ଉପନ୍ୟାସ ରଚନା କ୍ଷେତ୍ରରେ ଏକ ବିଶିଷ୍ଟ ଶୈଳୀ ପ୍ରବର୍ତ୍ତନ କଲେ, ଯାହାର ପ୍ରୟୋଗଭଙ୍ଗୀ, ସ୍ୱର ଓ ଛନ୍ଦ ଆମେରିକାର ଲୋକ ଭାଷାରୁ ଗୃହୀତ । ୧୮୮୫ ସାଲରେ ତାହାଙ୍କ ରଚିତ ଉପନ୍ୟାସ "ହକ୍‌ଲବେରୀ ଫିନ" ରେ ଅସଲ ମାର୍କିନ ସାହିତ୍ୟର ସୂତ୍ରପାତ ହେଲା । ଆମେରିକାର ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳର ମଧ୍ୟଭାଗରେ ପ୍ରବାହିତ ମିସିସିପି ନଦୀର ପ୍ରଖର ସ୍ରୋତରେ ଭେଳା ଉପରେ ଭାସି ଚାଲିଥିଲା ବେଳେ ଟୋୟେନ ଉପରୋକ୍ତ ଉପନ୍ୟାସର ଦୁଇ ପ୍ରଧାନ ଚରିତ୍ର ଓ ବହୁ ବିଚିତ୍ର ଦୁଃସାହସିକ ଘଟଣାବଳୀର ସମ୍ମୁଖୀନ ହୋଇଥିଲେ । ସେ ବହୁ ଉପନ୍ୟାସ ଓ ହାସ୍ୟରସାତ୍ମକ ଗପ ଲେଖି ବିଶେଷ ଖ୍ୟାତି

ଅର୍ଜନ କରିଥିଲେ । ତାଙ୍କର "ଟମ ସାଉୟାର" ଶିଶୁମାନଙ୍କ ନିମନ୍ତେ ଏକ ଶ୍ରେଷ୍ଠ ଉପନ୍ୟାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଫେନିମୋର କୁପାରଙ୍କର ପ୍ରସିଦ୍ଧ ଉପନ୍ୟାସ "ଦି ଲାଷ୍ଟ ଅଫ୍ ଦି ମୋହିକାନ୍ସ"ରେ ମାର୍କିନ ଜୀବନର ପରିଚୟ ନଥିବାରୁ, ସେ ତୀବ୍ର ଭାବରେ ସମାଲୋଚିତ ହୋଇଥିଲେ । ୧୮୫୦ ସାଲରେ ପ୍ରକାଶିତ "ଦି ସ୍କାରଲେଟ ଲେଟାର", ଉପନ୍ୟାସରେ ହଥର୍ଣ ସ୍ୱଦେଶର ଧର୍ମୀୟ ଓ ନୈତିକ ଅଭିଜ୍ଞତାକୁ ରୂପ ଦେଇଥିଲେ । ମେଲଭିଲଙ୍କର ୧୮୫୧ ସାଲରେ ପ୍ରକାଶିତ "ମବି ଡିକ" ଏକ ଉଚ୍ଚକୋଟୀର ବାସ୍ତବବାଦୀ ଉପନ୍ୟାସ ଭାବରେ ଖ୍ୟାତି ଅର୍ଜନ କରିଥିଲା । ଉପନ୍ୟାସଟି ମୁଖ୍ୟତଃ ତିମି ଶିକାରର ଚାଞ୍ଚଲ୍ୟକର କାହାଣୀ ହେଲେ ସୁଦ୍ଧା ଏଥିରେ ଆସୁରିକ ପ୍ରବୃତ୍ତି, ମାନବିକ ଭ୍ରାତୃଭାବ ଓ ପାପମୋଚନର ଚମତ୍କାର ବିଶ୍ଳେଷଣ ଦିଆହୋଇଛି । ଷ୍ଟୋଓ୍ୱେଙ୍କର "ଟମ କକାଙ୍କ କୁଟୀର" ଓ ଡ୍ରେଇଜାରଙ୍କର "ସିଷ୍ଟର କେରୀ" ଉପନ୍ୟାସ ଦୁଇଟି ମାନବିକତା, ମମତା, ଦୟା ଓ ସେବାର ଜ୍ୱଳନ୍ତ ନିଦର୍ଶନ ବହନ କରିଛି । ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ୟୁରୋପରେ ଶିଳ୍ପ ବିପ୍ଳବ ଯୋଗୁ ଆମେରିକା ମଧ୍ୟ ବାସ୍ତବଧର୍ମୀ ମନୋଭାବ ଗ୍ରହଣ କଲା । ସୁତରାଂ କେତେକ ଲେଖକଙ୍କର ରଚନାରେ ଚିନ୍ତାର ସୂକ୍ଷ୍ମତା, ନୀତିବୋଧର ଜଟିଳତା ଓ ଶିଳ୍ପ ସଂଯମର ପରିଚୟ ସ୍ପଷ୍ଟ ଭାବରେ ମିଳିଲା । ହେନେରୀ ଜେମସଙ୍କର ଉପନ୍ୟାସ ଜଟିଳ ଓ ସଚେତନ ଶିଳ୍ପ ସୁଷମାରେ ସମୃଦ୍ଧ ହେଲା । ୧୮୯୦ ସାଲ ପରେ ଆମେରିକାରେ ସାମାଜିକ ଉପନ୍ୟାସର ସୁଅ ଛୁଟିଲା । ଏଗୁଡ଼ିକର ଲେଖକମାନେ ଆଂଶିକ ଭାବରେ ବାଲଜାକ ଓ ଜୋଲାଙ୍କ ପରି ୟୁରୋପୀୟ ବାସ୍ତବବାଦୀ ଓ ସ୍ୱଭାବବାଦୀ ଲେଖକଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଜ୍ୟାକ ଲଣ୍ଡନ, ଅପ୍‌ଟନ ସିନକ୍ଲେୟାର, ଥିଓଡର ଡ୍ରାଇଜାର, ସେରଉଡ ଅଣ୍ଡାରସନ, ସିନ୍‌କ୍ଲେୟାର ଲୁଇସ, ଫ୍ରାଙ୍କମରିସ, ଷ୍ଟିଫେନ କ୍ରେନ, ଜେମସ ଟି ଫାରେଲ, ଜନ ଷ୍ଟେଇନ ବେକ, ଜନ ଡସ ପାସୋସ, ସଲ ବେଲୋ, ରବାର୍ଟ ପେନ ଓ୍ୱାରେନ, ଆର୍ଣ୍ଣେଷ୍ଟ ହେମିଙ୍ଗଓ୍ୱେ, ଉଇଲିୟମ ଫକନାର ପ୍ରମୁଖ ସେହି ଗୋଷ୍ଠୀର ଅନ୍ତର୍ଭୁକ୍ତ । ଟମାସ୍ ଉଲଫଙ୍କର ଆତ୍ମଜୀବନୀ ମୂଳକ ଉପନ୍ୟାସ, ଉଇଲା କାଥାରଙ୍କର କାବ୍ୟିକ ରୀତିରେ ଆଞ୍ଚଳିକ ଜୀବନର ଚିତ୍ରଣ, ଥର୍ନଟନ ଓ୍ୱାଇଲଡ୍‌ଙ୍କର "ଆମ ସହର ଓ ସ୍କଟ ଫିଟଜେରାଲଡଙ୍କର ଜାଜ୍ ଯୁଗ ସଂପର୍କରେ କରୁଣ ଚିତ୍ର "ଦି ଗ୍ରେଟ ଗ୍ୟାଟସବି", ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା । ସାମାଜିକ ବାସ୍ତବବାଦୀ ଲେଖକଙ୍କର ବିପରୀତ ଗୋଷ୍ଠୀ ହେଉଛନ୍ତି ବିଂଶ ଶତାବ୍ଦୀର ମୁଖ୍ୟତଃ ଯୁବ ଲେଖକବୃନ୍ଦ । ବ୍ୟକ୍ତିଗତ ଅଭିଜ୍ଞତାର କାବ୍ୟିକ ପ୍ରକାଶ, ଜୀବନର ନିଃସଙ୍ଗତା ଓ ପ୍ରେମମୟ ଦୃଷ୍ଟିରେ ଜୀବନକୁ ଦେଖିବାର ପ୍ରୟାସ ଏମାନଙ୍କ ରଚନାରେ ବହୁଳ ପ୍ରକଟିତ । ହାଓ୍ୱାର୍ଡ ଫାଷ୍ଟ, ନରମ୍ୟାନ ମେଇଲାର କ୍ୟାଥେରିନ ଏନ୍. ପର୍ଟାର, ଟମାସ ଉଲ୍‌ଫ ଥର୍ନଟନ ଓ୍ୱାଇଲଡ ୟୁଡୋରା ଓ୍ୱେଲ୍‌ଟି, କାର୍ସନ ମ୍ୟାକକୁଲାର୍ସ, ଜେମସ ଜୋନ୍‌ସ, ମେରୀ ମ୍ୟାକାର୍ଥି, ମ୍ୟାକିନଲେ କାଣ୍ଟର, ଇଡ଼ିଥ ହୋୟାର୍ଟନ, ଏଲେନ ଗ୍ଲାସଗୋ ଗଟ୍ରୁଡ, ଷ୍ଟାଇନ; ଜୀନ ଷ୍ଟାଫର୍ଡ, କରୋଲାଇନ ଗର୍ଡନ, ଫ୍ଲାନାରୀ ଓକନର, ଟ୍ରମାନ କ୍ୟାପୋତି, ଜେ.ଡି. ସାଲିଞ୍ଜାର, ନବୋକଭ ହେରଲ୍ ଡ ରବିନସନ, ହେନରୀ ମିଲାର ଜାକ୍‌ଲିନ ସୁସାନ ପ୍ରମୁଖ ଏହି

ଗୋଷ୍ଠୀର ଅନ୍ତର୍ଭୁକ୍ତ । ମାତ୍ର ହେମିଙ୍ଗଓୟେ ନିଜର ସରଳତା, କର୍କଶତା ଭାବପ୍ରବଣତା ଓ ପରିହାସପ୍ରିୟତା ଯୋଗୁ ଜଣେ ଖାଣ୍ଟି ଆମେରିକାନ ବୋଲି ମନେ ହୁଅନ୍ତି । ବିଶ୍ୱବିଦ୍ୟାଳୟ ମହଲରେ ଅବଶ୍ୟ ଫକନରଙ୍କର ଆଦର ସବୁଠାରୁ ବେଶୀ, କାରଣ ହଥର୍ଣ ଓ ମେଲଭିଲଙ୍କ ପରି ପ୍ରାଚୀନପନ୍ଥୀମାନଙ୍କ ସହିତ ତାଙ୍କର କିଛି ସାମଞ୍ଜସ୍ୟ ରହିଛି । ଏହାଛଡ଼ା ଆଞ୍ଚଳିକ ଉପନ୍ୟାସର ଚାହିଦା ମଧ୍ୟ କିଛି କମ୍ ନୁହେଁ । ଯେ କୌଣସି ବହି ଦୋକାନକୁ ଗଲେ ଅନୁଭବ କରି ହେବ ଯେ ଆମେରିକାବାସୀଙ୍କର ସ୍ୱଦେଶର ଐତିହ୍ୟ ଓ ପରଂପରା ପ୍ରତି ପ୍ରଗାଢ଼ ଶ୍ରଦ୍ଧା ରହିଛି ।

ବିଦେଶୀର ଦୃଷ୍ଟିରେ ତରୁଣ ମାର୍କିନ ସାହିତ୍ୟ ପଚା-ସଢ଼ା ମନେହୁଏ ନାହିଁ, ଯଦିଚ ହୁଏତ ଜୀବନ-ଜିଜ୍ଞାସା କେତେକ ପରିମାଣରେ ଅସଂଲଗ୍ନ ସୌଖୀନ ପଥରେ ପ୍ରବାହିତ ହେଉଛି । ବହୁ ନବୀନ ଲେଖକ ଖାଲି ବୟସରେ ତରୁଣ ନୁହନ୍ତି, ସେମାନଙ୍କର କୃତି ସବୁ ସଂପୂର୍ଣ୍ଣ ପ୍ରତିଷ୍ଠା ଲାଭ କରି ପାରିନାହିଁ । ସେମାନଙ୍କ ଭିତରେ କେବଳ ପ୍ରତିଶ୍ରୁତି ନାହିଁ, ନିଜର କାହାଣୀ ଓ ଉପନ୍ୟାସରେ ରୂପାୟିତ ଜୀବନ ଦର୍ଶନ ମଧ୍ୟ ଅତିଶୟ ଶକ୍ତିଶାଳୀ । ଲେଖିକାମାନଙ୍କର ନିଜସ୍ୱ ଗୌରବ, ନାରୀ ସୁଲଭ ଅନୁକମ୍ପାମୟୀ ସୂକ୍ଷ୍ମତା ସହିତ ଜୀବନାନୁରାଗ ନିର୍ଭୀକ ଅନୁସନ୍ଧିତ୍ସା ଅତ୍ୟନ୍ତ ବିସ୍ମୟକର । ମାର୍କିନ ସାହିତ୍ୟରେ ଅବଶ୍ୟ କେତେକ ପରିମାଣରେ ଶିଳ୍ପ ଓ ଦର୍ଶନର ସ୍ଖଳନ ଓ ଲକ୍ଷ୍ୟ ପଥର ଅଶୁଦ୍ଧତା ମିଳିପାରେ, ମାତ୍ର ତାହାର ସବୁଠାରୁ ବଡ଼ ପରିଚୟ ହେଉଛି ମୋଟାମୋଟି ବିଚିତ୍ର ମିଶ୍ର ଅଭିଜ୍ଞତାକୁ ପ୍ରବଳ ଶକ୍ତିରେ ହୁଏତ ବେଳେବେଳେ ଦିଗହରା ଦୃଷ୍ଟିରେ ନିବିଡ଼ ପରିଗ୍ରହଣ । ଶେଷ ଅବଧି ସାହିତ୍ୟ ତ ହେଉଛି ଜୀବନର ବ୍ୟାଖ୍ୟା । ସୁତରାଂ ଜୀବନ ସମ୍ବନ୍ଧରେ ବୁଦ୍ଧିର ସାହସିକତା ମାର୍କିନ ସାହିତ୍ୟରେ ସର୍ବକ୍ଷେତ୍ରରେ ପରିବ୍ୟାପ୍ତ ।

ଅତି କମ୍ ପରିସର ଭିତରେ ଆମେରିକାର ଉପନ୍ୟାସ ସାହିତ୍ୟର ଉତ୍ପତ୍ତି ଓ କ୍ରମବିକାଶ ସମ୍ବନ୍ଧରେ ସମ୍ୟକ୍ ଧାରଣା ଆପଣମାନଙ୍କୁ ଦେଲି । ପରେ ଅନ୍ୟାନ୍ୟ ଦେଶର ଉପନ୍ୟାସ ସମ୍ବନ୍ଧରେ ଗୋଟିକ ପରେ ଗୋଟିଏ କିଛି କିଛି ଶୁଣିବାକୁ ପାଇବେ । ସମୟ ଓ ସୁଯୋଗକୁ ଅପେକ୍ଷା କରିବାକୁ ହେବ ।

ହେଉ, ଚାଲନ୍ତୁ ଆର କୋଠରୀକୁ, ଦେଖିବା କି କି ଧନ ରତ୍ନ ସେଠାରେ ସାଇତା ହୋଇଛି ।

## ସିଦ୍ଧାର୍ଥ

### ନବମ କୋଠରୀ

ଦୁଇ ହଜାର ବର୍ଷ ତଳର ଭାରତୀୟ ପୃଷ୍ଠଭୂମିକା ତଥା ଦର୍ଶନ ଉପରେ ଜଣେ ୟୁରୋପୀୟ ସାହିତ୍ୟିକ ରଚନା କଲେ ଏକ ବିସ୍ମୟକର ରସୋତୀର୍ଣ୍ଣ ମହନୀୟ କାବ୍ୟୋପନ୍ୟାସ

"ସିଦ୍ଧାର୍ଥ" ୧୯୨୩ ସାଲରେ । ବୁଦ୍ଧଦେବଙ୍କ ସମସାମୟିକ ସିଦ୍ଧାର୍ଥ ନାମଧେୟ ତରୁଣ ବ୍ରାହ୍ମଣ କୁମାର ନିର୍ବାଣ ଲାଭର ଆଶାରେ ସଂସାର ତ୍ୟାଗ କରି'କଠୋର ତପସ୍ୟାରେ ନିମଗ୍ନ ହେଲା । ବୁଦ୍ଧଦେବଙ୍କର ଉପଦେଶ ଲାଭ କରି ସେ ଯଥାର୍ଥ ପଥ ଖୋଜି ପାଇଲା ନାହିଁ । ତେଣୁ ଶ୍ରମଣର ପୋଷାକ ତ୍ୟାଗ କରି ସେ ଲୋକାଳୟକୁ ଫେରିଗଲା । ଅଚିରେ ସାଂସାରିକ ଜୀବନର ସକଳ ଆନନ୍ଦ ପରିପୂର୍ଣ୍ଣ ରୂପେ ଉପଭୋଗ କରି ଦିନେ ହଠାତ୍ ସେ ଉପଲବ୍ଧି କଲା ଯେ ଏସବୁ ଅଳୀକ ଓ ମିଥ୍ୟା । ପୁଣି ସେ ପଥରେ ବାହାରି ପଡ଼ିଲା । ଏଥର ନଦୀଘାଟର ଜଣେ ନାଉରିର ସାହଚର୍ଯ୍ୟରେ ସେ ଶାନ୍ତି ପାଇଲା, ସତ୍ୟ ଓ ଆନନ୍ଦର ସନ୍ଧାନ ଲଭିଲା । ଏହି କାହାଣୀର ମାଧୁର୍ଯ୍ୟ ଓ ଦାର୍ଶନିକ ତତ୍ତ୍ୱର ସୌନ୍ଦର୍ଯ୍ୟ ସକଳ ଶ୍ରେଣୀର ପାଠକଙ୍କୁ ଗଭୀର ଭାବରେ ଅଭିଭୂତ କରେ । ତାଙ୍କର ବହୁ ବିଶ୍ୱ ବିଖ୍ୟାତ ଗ୍ରନ୍ଥ ମଧ୍ୟରୁ "ସିଦ୍ଧାର୍ଥ" ସର୍ବାଧିକ ପରିଚିତ ତଥା ପ୍ରଚାରିତ । ଟମାସ ମାନ ଓ କାଫକାଙ୍କର ସମଗୋତ୍ରୀୟ ଗଦ୍ୟ ଲେଖକ ହିସାବରେ ସେ ଦରବାରରେ ସମ୍ମାନନୀୟ ।

ନୋବେଲ ଲରିୟେଟ ହାରମେନ ହେସଙ୍କର ସାହିତ୍ୟିକ ଚରିତ୍ର ବିଚାର କରି ପଣ୍ଡିତମାନେ ମନ୍ତବ୍ୟ କରିଛନ୍ତି- "ଗୀତ ଲେଖାର ମିଜାଜ ନେଇ ସେ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ ସୁଦ୍ଧା କ୍ରମେ କ୍ରମେ ତାଙ୍କର ମିଜାଜ ମହାକାବ୍ୟ ଆଡ଼କୁ ଆଗେଇ ଯାଇଛି । ସେ ବ୍ୟକ୍ତିଗତ ଭାବନାର ଜଗତରୁ ଯାଇ ନୈର୍ବ୍ୟକ୍ତିକ ଜଗତରେ ପହଞ୍ଚିଛନ୍ତି । ଦୁଇ ବିଭିନ୍ନ ଓ ବିପରୀତ ଚିନ୍ତା ଭିତରେ ସମନ୍ୱୟ ଆନୟନ ହେଉଛି ତାହାଙ୍କ ସାହିତ୍ୟର ମୂଳ ଲକ୍ଷ୍ୟ ।"

ଚାରିଜଣ ନୋବେଲ ପୁରସ୍କାର ବିଜୟୀ ବିଦେଶୀ ସାହିତ୍ୟିକ ଭାରତବର୍ଷକୁ କେନ୍ଦ୍ର କରି ଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରୁ ନୈଷ୍ଠିକ ଇଂରେଜ ରାଜଭକ୍ତ ରୁଡ଼ିୟାର୍ଡ଼ କିପଲିଙ୍ଗଙ୍କ (୧୯୦୬) ରଚନାରେ ଅବଶ୍ୟ ଭାରତର ଛବି ଅଛି, ମାତ୍ର ପ୍ରାଣର ସ୍ପନ୍ଦନ ନାହିଁ । ଦିନେମାର ସାହିତ୍ୟିକ କାର୍ଲ ଜେଲେରୂପଙ୍କର (୧୯୧୭) ବୌଦ୍ଧ ଉପାଖ୍ୟାନ ଭିତ୍ତିକ ଉପନ୍ୟାସ "ତୀର୍ଥଯାତ୍ରୀ କାମାନିତା" ରେ ବିଷୟବସ୍ତୁ ପ୍ରତି ଲେଖକଙ୍କର ଯଥେଷ୍ଟ ଶ୍ରଦ୍ଧାଶୀଳତା ପ୍ରକଟିତ ହୋଇଛି । ଜର୍ମାନ ସାହିତ୍ୟିକ ଟମାସ ମାନ (୧୯୨୯) ବେତାଳ ପଞ୍ଚବିଂଶତିର ଷଷ୍ଠ ଉପାଖ୍ୟାନକୁ ଅବଲମ୍ବନ କରି ଜନପ୍ରିୟ ଉପନ୍ୟାସ "ମସ୍ତକ ବିନିମୟ" ରଚନା କରିଛନ୍ତି, ଯେଉଁଥିରେ ହିନ୍ଦୁ ଦର୍ଶନର ସମ୍ୟକ୍ ବିଶ୍ଳେଷଣ ପରିଲକ୍ଷିତ । ମାତ୍ର ହେସଙ୍କର ସମଗ୍ର ରଚନାବଳୀରେ ହିନ୍ଦୁ ତଥା ବୌଦ୍ଧ ଦର୍ଶନର ମୂଳ ସତ୍ୟ ସବୁ ଓତପ୍ରୋତ ଭାବରେ ଜଡ଼ିତ ରହିଛି । "ସିଦ୍ଧାର୍ଥ" ତହିଁର ଏକ ଉଜ୍ଜ୍ୱଳ ଉଦାହରଣ ।

ଦକ୍ଷିଣ ଜର୍ମାନୀର ପ୍ରାକୃତିକ ସୌନ୍ଦର୍ଯ୍ୟମୟ କ୍ଷୁଦ୍ର ସହର କାଲ୍‌ଭ ରେ ହେସ ୧୮୭୭ ଜୁଲାଇ ୨ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଓ ମାତାମହ ଭାରତୀୟ କେନ୍ଦ୍ରର ପାଦ୍ରୀ ଥିଲେ । ତାଙ୍କର ମାଆଙ୍କର ଜନ୍ମ ଅବଶ୍ୟ ଭାରତବର୍ଷରେ । ତାଙ୍କର ମାତାମହୀଙ୍କର ଭାରତୀୟ ବିଦ୍ୟାରେ ଅଗାଧ ପାଣ୍ଡିତ୍ୟ ଥିବାରୁ, ଶୈଶବରୁ ହେସ ଭାରତୀୟ ଇତିହାସ ଓ

ଦର୍ଶନର ସଂସ୍ପର୍ଶରେ ଆସିବାର ଯଥେଷ୍ଟ ସୁଯୋଗ ପାଇଥିଲେ । ସେ ନିଜେ ସ୍ୱୀକାର କରିଛନ୍ତି ଯେ ଏହି ମହାନ ଜାତୀୟ ଐତିହ୍ୟରୁ ସେ ଗଭୀର ପ୍ରେରଣା ଲଭିଥିଲେ । ପିତାମାତା ଆଶା କରିଥିଲେ, ପୂର୍ବ ପୁରୁଷଙ୍କର ପଥ ଅନୁସରଣ କରି ସେ ଧର୍ମଯାଜକ ହୋଇ ଚୀନ କିମ୍ବା ଭାରତବର୍ଷକୁ ଯିବେ । କିନ୍ତୁ ଶୈଶବରୁ ଏହି ଧରାବନ୍ଧା ଜୀବନ ତାହାଙ୍କୁ ଅସହ୍ୟବୋଧ ହେଲା । ଇତି ମଧ୍ୟରେ ସେ କାବ୍ୟ ଦେବୀଙ୍କର ରସାମୃତ ପାନ କରିଥିଲେ ଏବଂ ଗୋଟିଏ ନିଜସ୍ୱ ଜୀବନ ଦର୍ଶନର ଅସ୍ପଷ୍ଟ ଅନୁଭୂତି ତାହାଙ୍କୁ ଚଞ୍ଚଳ କଲା । ତେଣୁ ସ୍ୱନିର୍ବାଚିତ ପଥରେ ଅଗ୍ରସର ହେବାର ଆକାଂକ୍ଷାରେ ବିଦ୍ରୋହ ଘୋଷଣା କରି ସେ ପୋଥିଗତ ଧର୍ମ ଶିକ୍ଷାରେ ଡୋରି ବାନ୍ଧିଲେ । ଏଥିରେ ତାଙ୍କର ପିତାମାତା ଅବଶ୍ୟ ବିଚଳିତ ହେଲେ । ପୁଅର କାନ୍ଧରୁ ଭୂତ ଛଡ଼ାଇବା ଉଦ୍ଦେଶ୍ୟରେ ସେମାନେ ହେସଙ୍କୁ ଜର୍ମାନୀର ଜଣେ ଧର୍ମଗୁରୁଙ୍କ ଠାକୁ ନେଲେ । କିନ୍ତୁ କ୍ଷୀଣକାୟ କିଶୋରର ସ୍ୱକୀୟତାର କାଠିନ୍ୟ ନିକଟରେ ସବୁ ଗୁଣିଗାରିଡ଼ି ବ୍ୟର୍ଥ ହେଲା । ହେସ ଚବିଶ ବର୍ଷ ବୟସରେ ନିଜର ପ୍ରଥମ ଅପରିଣତ ଆତ୍ମଜୀବନୀ ମୂଳକ ଉପନ୍ୟାସ "ଚକ୍ର ତଳେ" ରେ ଏହି ଘଟଣାଟି ଲିପିବଦ୍ଧ କରିଛନ୍ତି । ସେହି ପ୍ରସଙ୍ଗରେ ସେ କହିଛନ୍ତି- "ଦୁନିଆର ରଙ୍ଗମଞ୍ଚରେ ଯେଉଁ ନର ନାରୀମାନେ ଅଂଶ ଗ୍ରହଣ କରିଛନ୍ତି ମୁଁ ସେମାନଙ୍କର ଅନ୍ତରଙ୍ଗ ପରିଚୟ ପାଇବାକୁ ଚାହେଁ, ରାସ୍ତାରେ ଚାଲି ଯାଉଥିବା ଗାଡ଼ିର ଶବ୍ଦ କାନ ପାତି ଶୁଣେ, ଦୂର ଦୂରାନ୍ତର ଅଖ୍ୟାତ ସ୍ଥାନର ଛୋଟ ଛୋଟ ସରାଇଖାନାରେ ମଦ ଗିଲାସ ହାତରେ ଧରି ଗପ କରି ଅଳସ ମୁହୂର୍ତ୍ତଗୁଡ଼ିକ କଟାଇ ଦେବାର ବାସନା ମୋ ମନରେ ଜାଗେ, ଉଚ୍ଛୃଙ୍ଖଳ ତରୁଣୀମାନଙ୍କ ସହିତ ଶାଳୀନତାର ବନ୍ଧନମୁକ୍ତ ଭାଷାରେ ପ୍ରାଣ ଖୋଲି କଥା କହିବାକୁ, ଆଉ କେବେ କେବେ ଧନୀର କ୍ଲବରେ ବିଲିୟାର୍ଡ ଖେଳିବାକୁ ମୋର ମନହୁଏ ।" ଏଥିରେ ତାହାଙ୍କ ଜୀବନର ଗୋଟିଏ ପ୍ରଧାନ ସ୍ୱରର ପରିଚୟ ଧରା ପଡ଼େ । ପୃଥିବୀରେ ସକଳ ସୁନ୍ଦର ଓ କଦର୍ଯ୍ୟ, ମହତ ଓ ତୁଚ୍ଛ ବିଷୟର ପ୍ରତ୍ୟକ୍ଷ ଅଭିଜ୍ଞତା ତାହାଙ୍କ ଜୀବନରେ ଶ୍ରେଷ୍ଠ ଶିକ୍ଷଣୀୟ ସଂପଦ । ଏହି ତତ୍ତ୍ୱ ତାଙ୍କର ପରବର୍ତ୍ତୀ ପ୍ରାୟ ସକଳ ଗ୍ରନ୍ଥରେ ପରୋକ୍ଷ ଭାବରେ ଏବଂ "ସିଦ୍ଧାର୍ଥ"ରେ ପ୍ରତ୍ୟକ୍ଷ ଭାବରେ କୁହାଯାଇଛି । ତାଙ୍କର ପରବର୍ତ୍ତୀ ଉପନ୍ୟାସ "ନାରସିଜ ଉଣ୍ଡ ଗୋଲ୍‌ଡମଣ୍ଡ"ରେ ଅନ୍ୟ ଏକ ବାଳକର ଚରିତ୍ର ପ୍ରଦତ୍ତ ହୋଇଛି, ଯାହାକୁ ପିତାର ପ୍ରଭୁତ୍ୱର କଠୋରତା ଯୋଗୁଁ ନିଜ ଆତ୍ମାର ପ୍ରେରଣାକୁ ସୁପ୍ତ ରଖିବାକୁ ପଡ଼ିଥିଲା ।

ବିଦ୍ୟାଳୟ ଛାଡ଼ି ହେସ ଜଣେ ଘଡ଼ିବାଲା ଅଧୀନରେ ଶିକ୍ଷାନବିସ ଭାବରେ କାର୍ଯ୍ୟ କଲେ । ଏଠାକାର ଶ୍ରମିକ ଜୀବନର ସୁଖ-ଦୁଃଖର ଗଭୀର ଅଭିଜ୍ଞତା ତାଙ୍କର ମର୍ମସ୍ପର୍ଶୀ ଉପନ୍ୟାସ "କନୁଲ୍‌ପ"ରେ ପ୍ରତିଫଳିତ ହୋଇଛି । ତା'ପରେ ସେ ବିଶ୍ୱବିଦ୍ୟାଳୟର ବହି ଦୋକାନରେ ଗୋଟିଏ କାମ ପାଇ ଟୁବିନଗେନକୁ ଗଲେ ଏବଂ ସେଠାରେ ଜର୍ମାନ ସାହିତ୍ୟର ସାଗରରେ ଅମୃତ ମନ୍ଥନ କଲେ । ମାତ୍ର ଦରମା ଖୁବ୍ କମ ଥିବାରୁ, ଆଉ ଗୋଟିଏ ବହି ଦୋକାନରେ ଚାକିରି ପାଇ ସେ ବେସ୍‌ଲକୁ ଚାଲିଗଲେ । ବାସ୍ତବିକ ଏଠାରେ ହିଁ ତାଙ୍କର ସାହିତ୍ୟିକ ଜୀବନ

ଆରମ୍ଭ ହେଲା ଏବଂ କେତୋଟି ସଫଳ କୃତି ପରେ ସେ ଏକ ସମ୍ଭ୍ରାନ୍ତ ପରିବାରରେ ବିବାହ କଲେ । ଜୀବିକା ଅର୍ଜନ ନିମନ୍ତେ ଦଶବର୍ଷ କାଳ ତାହାଙ୍କୁ ବିଭିନ୍ନ ପେଷା ଅବଲମ୍ବନ କରିବାକୁ ହୋଇଥିଲା । ତାଙ୍କର ତତ୍କାଳୀନ ମାନସିକ ବିପ୍ଳବର ନିଖୁଣ ଛବି ନିଜର ବିଖ୍ୟାତ ଉପନ୍ୟାସ "ପିଟାର କାମେନତସିନତ୍"ରେ ଦେଖିବାକୁ ମିଳେ ।

ୟୁରୋପୀୟ କୃତ୍ରିମ ସଭ୍ୟତାର ନିଷ୍ଠୁର ହାତରୁ ମୁକ୍ତି ପାଇବା ଉଦ୍ଦେଶ୍ୟରେ ହେସ ୧୯୧୧ରେ ତାଙ୍କର ମାଆଙ୍କର ମାତୃଭୂମି ତଥା ସକଳ ଦର୍ଶନ ଓ ସଂସ୍କୃତିର ମିଳନ କ୍ଷେତ୍ର ଭାରତକୁ ଆସିଲେ । କିନ୍ତୁ ତାଙ୍କର ସେହି ଉଚ୍ଚ ଆଶା ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ତାଙ୍କର "ଇଣ୍ଡିୟାନ ବୁଚ" ଗ୍ରନ୍ଥରୁ ଜଣାପଡ଼େ, ବାସ୍ତବ ଭାରତ ତାଙ୍କର କଳ୍ପିତ ଭାରତକୁ ନିର୍ମମ ଭାବରେ ହତାଶ କଲା । ପ୍ରଥମ ମହାଯୁଦ୍ଧ ଭିତରେ ମାନବିକ ଆତ୍ମା ବିରୁଦ୍ଧରେ ଯାନ୍ତ୍ରିକ ସଭ୍ୟତାର ଯେଉଁ ଅଭିଯାନ ଦିନେ ସେ ଦେଖିଥିଲେ, ଛଦ୍ମ ନାମରେ ପ୍ରକାଶିତ ଉପନ୍ୟାସ "ଡେମିୟାନ"ରେ (୧୯୧୯) ସେ ନିଃସଙ୍କୋଚରେ ନିଜର ସଂସ୍କାରମୁକ୍ତ ଆତ୍ମାକୁ ଉନ୍ମୁକ୍ତ କରି ଦେଇଥିଲେ । ଏହି ଉପନ୍ୟାସର ନାୟିକାକୁ ଶାଶ୍ୱତ ନାରୀର ପ୍ରତିଭୂ ଓ ମାନବିକ ଆକର୍ଷଣର ପ୍ରତୀକ ମନେ କରି, ସେ କହିଥିଲେ- "ମୃତ୍ୟୁ ସମ୍ବନ୍ଧରେ ଲୋକଙ୍କର ସାଧାରଣତଃ ଯେଉଁ ଧାରଣା ଅଛି, ମୋ ନିକଟରେ ତାହା ସତ୍ୟ ବୋଲି ମନେହୁଏ ନାହିଁ । ସୁତରାଂ ମୁଁ ଭାବେ, ଯେଉଁ ଦିନ ମୁଁ ଶେଷ ନିଃଶ୍ୱାସ ତ୍ୟାଗ କରିବି, ସେହି ଦିନ ମୋ ମାଆ ମୋତେ ତାହାର ଗର୍ଭର ନିଷ୍କଳୁଷ ଅନସ୍ତିତ୍ୱ ଭିତରକୁ ଫେରାଇ ନେବ ।" ତାଙ୍କର ଅନ୍ୟତମ ଉପନ୍ୟାସ "ଦେର ଷ୍ଟେପେନଉଲଫ"ର (୧୯୨୭) ନାୟକ ହାରି ହେଲାର ବୁର୍ଜୋୟା ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି ଏବଂ ପ୍ରକୃତ ସଂଗୀତ, ଆନନ୍ଦ, କର୍ମ ଓ ପ୍ରେମର ସନ୍ଧାନରେ ବ୍ରତୀ ହୋଇ ଶେଷରେ ଏକମାତ୍ର ଶିଳ୍ପ ଭିତରେ ଆଶ୍ରୟ ପାଇଛି । "ନାରସିକ ଉଣ୍ଡ ଗୋଲ୍ଡମଣ୍ଡ" (୧୯୩୦) ଉପନ୍ୟାସରେ ଅନ୍ତର୍ନିହିତ ଦାର୍ଶନିକ ତତ୍ତ୍ୱ ହେଉଛି, ପାପର ଅଭିଜ୍ଞତା ଲାଭ ନ କଲେ ପ୍ରକୃତ ମୁକ୍ତି ମିଳେ ନାହିଁ । ହେସଙ୍କର ପ୍ରତ୍ୟେକ ଉପନ୍ୟାସରେ ଦାର୍ଶନିକ ମତବାଦ ଓ ଉଚ୍ଚ ଆଦର୍ଶ ପ୍ରକଟିତ ହୋଇଛି ଏବଂ ସେ ଜଣେ ଚିନ୍ତାନାୟକ ବୋଲି ସ୍ୱୀକୃତ ହୋଇଛନ୍ତି । ସେ କହିଛନ୍ତି- "ମୁଁ ଉଦ୍ଦେଶ୍ୟମୂଳକ ଭାବରେ କିଛି ଲେଖେ ନାହିଁ । ମୁଁ ଗଣତନ୍ତ୍ରରେ ବିଶ୍ୱାସ କରେ । କିନ୍ତୁ ଯେଉଁ ଗଣତନ୍ତ୍ର ବ୍ୟକ୍ତିକୁ ସମ୍ମାନ ନ ଦେଖାଇ ଜନତାର ମନକୁ ପୀଡ଼ା ଦେଇ ଏକ ବୃହତ୍ ପିଣ୍ଡ ତିଆରି କରିବାକୁ ଚାହେଁ, ସେହି ଗଣତନ୍ତ୍ରକୁ ମୁଁ ମରଣ ଭଳି ଘୃଣା କରେ । ସାମାଜିକ ସମସ୍ୟା ମୋତେ ଆଦୌ ଆକୃଷ୍ଟ କରେନା । ବ୍ୟକ୍ତିର ସମସ୍ୟାକୁ ଅବଶ୍ୟ ମୁଁ ବଡ଼ କରି ଦେଖିଛି, କାରଣ ସମସ୍ୟା ମୁକ୍ତ ବ୍ୟକ୍ତି ହିଁ ସମସ୍ୟାହୀନ ସମାଜ ପ୍ରତିଷ୍ଠା କରିପାରେ ।" ଜଣେ ପ୍ରଧାନ ପୁରୋହିତର ଜୀବନକୁ କେନ୍ଦ୍ର କରି ୧୯୪୫ ସାଲରେ "ଦାସ ଗ୍ଲାସପାରଲେନ୍‌ସପିଏ" ଉପନ୍ୟାସ ପ୍ରକାଶିତ ହେଲା ଏବଂ ପରବର୍ଷ "ଗଭୀର ତତ୍ତ୍ୱ ସନ୍ଧିତ୍ସା ଓ ବିଶ୍ୱମାନବିକତାର ଉଚ୍ଚ ଚିନ୍ତାଧାରା ନିର୍ଭୀକ ଭାବରେ ପ୍ରକାଶ କରିଥିବା" ଯୋଗୁଁ ତାହାଙ୍କୁ ନୋବେଲ ପୁରସ୍କାର ପ୍ରଦତ୍ତ ହେଲା ।

ବିଶ୍ୱ ସାହିତ୍ୟରେ ଏହା ଏକ ଅଦ୍ୱିତୀୟ ଉପନ୍ୟାସ, ଯେଉଁଥିରେ ଆଗାମୀ ଦୁଇ ହଜାର ବର୍ଷ ପରେ ଏକ କାଳ୍ପନିକ ରାଷ୍ଟ୍ରରେ ନୂତନ ସଭ୍ୟତାର ଅଭ୍ୟୁତ୍ଥାନ ହୋଇଛି ଏବଂ ଏହି ଅଭିନବ ସଂପ୍ରଦାୟର ଧର୍ମମତ ଭିତରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶ୍ରେଷ୍ଠ ଚିନ୍ତାଧାରାର ସମନ୍ୱୟ ଘଟିଛି । ପ୍ରଧାନ ପୁରୋହିତ ଜୋସେଫର ମୃତ୍ୟୁ ପରେ ସ୍ୱରଚିତ କେତେଗୁଡ଼ିଏ କବିତା ଓ ତିନୋଟି ଗପ ମିଳିଥିଲା । ଗପରେ ସେ ନିଜର ତିନି ଜନ୍ମର ଆତ୍ମଚରିତ ଲେଖିଛି- ପ୍ରଥମ ଜନ୍ମରେ ଆଦିମ ସମାଜର ଗୁଣିଆ, ଦ୍ୱିତୀୟ ଜନ୍ମରେ ଖ୍ରୀଷ୍ଟାନ ସନ୍ନ୍ୟାସୀ ଓ ତୃତୀୟ ଜନ୍ମରେ ଭାରତର ରାଜପୁତ୍ର ଭାବରେ ।

ହେସଙ୍କର କବି ଖ୍ୟାତି ମଧ୍ୟ ଜଣା ନୁହେଁ । ତାଙ୍କର କବିତା ପ୍ରଧାନତଃ ସୁରଧର୍ମୀ ଓ ଚିତ୍ରଧର୍ମୀ, ଯେଉଁଥିରେ ଗୂଢ଼ ତତ୍ତ୍ୱ କଥା ପ୍ରଚ୍ଛନ୍ନ ରହିଛି । "କୁହୁଡ଼ି" କବିତାର ଅନ୍ତର୍ନିହିତ ଭାବ ହେଉଛି- "ଯେତେବେଳେ ଜୀବନର ସୂର୍ଯ୍ୟଙ୍କୁ ଢାଙ୍କି ଦେଇ ମରଣର କୁହୁଡ଼ି ମାଡ଼ି ଆସିବ, ସେତେବେଳେ ଆମେ ହଠାତ୍ ଉପଲବ୍ଧି କରିବା ଯେ ଏତେ ଦିନ ଯେଉଁମାନଙ୍କ ସହିତ ବିତାଇଲେ ସେମାନଙ୍କ ଭିତରୁ କେହି ଆମ ସାଙ୍ଗରେ ଯିବେ ନାହିଁ, ଏବେ ଏକାକୀ ଯାତ୍ରା କରିବାକୁ ହେବ ।" ସମାଲୋଚକଙ୍କ ମତରେ, ୟୁରୋପର କାଳର ମନସ୍ତତ୍ୱ ବିଶ୍ଳେଷକ ଉପନ୍ୟାସର ସାର୍ଥକ କୃତି ନିମନ୍ତେ ହେସ ପ୍ରଶଂସନୀୟ । ଜଣେ ମାର୍କିନ ପ୍ରଯୋଜକ-ନିର୍ଦ୍ଦେଶକ ଭାରତୀୟ ତାରକାମାନଙ୍କ ଦ୍ୱାରା "ସିଦ୍ଧାର୍ଥ"ଙ୍କୁ ଗତ ବର୍ଷ ଭାରତର ପଟ୍ଟଭୂମିରେ ଚଳଚ୍ଚିତ୍ରରେ ରୂପାୟିତ କରିଛନ୍ତି ।

କାଳ କ୍ରମେ ସ୍ରଷ୍ଟାକୁ ଲୋକେ ଭୁଲିଯାଆନ୍ତି, ମାତ୍ର ତାହାର ସୃଷ୍ଟି ବିଶ୍ୱବିଖ୍ୟାତ ହୋଇ ରହେ । "ଟମ କକାର କୁଟୀର" ର ଲେଖିକା ଶ୍ରୀମତୀ ହାରିୟେଟ ଏଲିଜାବେଥ ବିଚାର ଷ୍ଟୋଙ୍କର ଆଜି ଦୁନିଆରେ ସେହିପରି ଅବସ୍ଥା ହୋଇଛି । ହୁଏତ ଅନେକ ତାଙ୍କର ନାମ ଜାଣନ୍ତି ନାହିଁ, ଅଥଚ ତାଙ୍କର ଅମର ଉପନ୍ୟାସ ପଢ଼ିଛନ୍ତି, ଅବା ସିନେମାରେ ଦେଖିଛନ୍ତି ।

ଆମେରିକାର ସାଧାରଣ ଗୃହସ୍ଥ ଲାଇମାନ ବିଚାରଙ୍କର ଝିଅ ହାରିୟେଟ ବିଦ୍ୟାଳୟରେ କିଛି ଲେଖାପଢ଼ା ଶିଖିଥିଲେ । ବାରବର୍ଷ ବୟସରେ ସେ ପ୍ରସିଦ୍ଧ କବି ବାୟରନଙ୍କର ମୃତ୍ୟୁ ସମ୍ବାଦ ଶୁଣି ମନମରା ହୋଇ ନିରୋଳାରେ ଏକା ଦିନ ବିତାଇବାକୁ ସୁଖ ପାଉଥିଲେ । ବାବାଙ୍କର ପୁଅ ଝିଅଙ୍କ ପ୍ରତି କଡ଼ା ନିର୍ଦ୍ଦେଶ ଥିଲା, ସ୍କଟଙ୍କର ଉପନ୍ୟାସ ଛଡ଼ା ଅନ୍ୟ କିଛି ଶସ୍ତା ବହି ପଢ଼ିବେ ନାହିଁ । ଦିନେ ହାରୟେଟ କୋଇଲା ଘରେ ଅଚାନକ ଖଣ୍ଡିଏ "ଆରବ ରଜନୀ" ପୁସ୍ତକ ଦେଖି ପାରି ଲୁଚାଇ ତାହାକୁ ଶେଷ କଲେ । ତାହା ଦ୍ୱାରା ସେ ଏତେ ଅନୁପ୍ରାଣିତ ହେଲେ ଯେ ହାଣ୍ଡିଶାଳରେ ବସି ସେ ଗପସବୁକୁ ନିଜେ ଲେଖିବାକୁ ଲାଗିଲେ । ହାଣ୍ଡିଶାଳର ଚାରିଆଡ଼େ କଣ୍ଟା ଚାମଚ, ହାଣ୍ଡି କରେଇ ଇତ୍ୟାଦି ଖେଳା ହୋଇ ରହିଥାଏ, ଆଉ ଛଅ-ସାତୋଟି ପୁଅ ଝିଅ ତାହାକୁ ଘେରି ବସି ରହି ବାରମ୍ବାର ପଚାରୁ ଥାଆନ୍ତି- କଅଣ ଲେଖୁଛ ? କାହିଁକି ଲେଖୁଛ ?

ସିନସିନ୍ନାଟିରେ ହାରିୟେଟଙ୍କର ବାପାଙ୍କ ସ୍କୁଲର ଶିକ୍ଷକ କେଲଭିନ ଷ୍ଟୋଙ୍କୁ ସେ ବିବାହ କରିଥିଲେ । ସେହି ସ୍କୁଲଟି କ୍ରୀତଦାସ ପ୍ରଥାର ବିରୋଧୀମାନଙ୍କର ହୋଇଥିବାରୁ, ସେମାନଙ୍କଠାରୁ ସେ କ୍ରୀତାଦାସଙ୍କ ଉପରେ ହେଉଥିବା ଅତ୍ୟାଚାର ସମ୍ବନ୍ଧରେ ବହୁତ ଖବର ପାଉଥିଲେ । ସେ କିଛିଦିନ ଗୋଟିଏ ବଗିଚାରେ କଟାଇଥିଲେ, ଯେଉଁଠି କ୍ରୀତାଦାସମାନଙ୍କ ଦ୍ୱାରା ଚାଷ କାମ କରା ହେଉଥିଲା । ତା'ପରେ ତାଙ୍କର ସ୍ୱାମୀ ବାଉଡୁଇନ କଲେଜରେ ଶିକ୍ଷକତାର ଚାକିରି ପାଇବାରୁ, ସେ ସ୍ୱାମୀଙ୍କ ସହିତ ବାର୍ନସଉଇକକୁ ଚାଲିଗଲେ । ସେଠାରେ ହାରିୟେଟ ନାନା ସୂତ୍ରରୁ ଜାଣି ପାରିଲେ, କିପରି ମାଲିକମାନେ ନିଗ୍ରୋ କ୍ରୀତଦାସମାନଙ୍କ ଉପରେ ଅକଥ୍ୟ ଅତ୍ୟାଚାର ଚଳାଇଛନ୍ତି ଏବଂ କ୍ରୀତଦାସ ପ୍ରଥା ମାଧ୍ୟମରେ ଭୟଙ୍କର ଅନ୍ୟାୟ, ପାପ ଓ ଅରାଜକତା ଚାଲିଛି । ତହୁଁ ସେ ସ୍ଥିର କଲେ, ଆଉ ଚୁପ୍ ହୋଇ ବସି ରହିବେ ନାହିଁ, ନିଶ୍ଚୟ ଏହାର ଗୋଟିଏ କିଛି ପ୍ରତିକାରର ବ୍ୟବସ୍ଥା କରିବେ । କାଗଜ କଲମ ଧରି ସେ ଲେଖିବାକୁ ବସିଲେ- ଜଣେ ତିରିଶ ବର୍ଷର ଅଖ୍ୟାତା ଗୃହିଣୀ, ଦୋହୋରା ଚେହେରା, ମୁଣ୍ଡରେ ସିଧା ସିନ୍ଥି ଓ ବଡ଼ ଜୁଡ଼ା, ଗାଲର ହାଡ଼ ଟିକିଏ ଉଚ୍ଚା, ବସାବସା ଆଖି, ପରିଧାନ ପାଦ ପର୍ଯ୍ୟନ୍ତ ଆବୃତ ଧଳା ଗାଉନ । ନିତି ହାଣ୍ଡିଶାଳର ଓ ଘରର ଯାବତୀୟ କାମ ସାରି, ସେ ଟେବୁଲ କତିରେ ଆସି ବସୁଥିଲେ ଏବଂ ଦୁଆତରେ କାଠି କଲମ ବୁଡ଼ାଇ ଖଣ୍ଡିକ ପରେ ଖଣ୍ଡିଏ କାଗଜ ଲେଖି ଚାଲିଥିଲେ । ଗୋଟିଏ ଘରର କୋଣରେ ନିଭୃତରେ ନୀରବରେ ବସି ସେ ଦୁର୍ଦ୍ଦଣ୍ଡ ପ୍ରବଳ ପ୍ରତାପୀ ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଏକକ ଅଭିଯାନ ଆରମ୍ଭ କଲେ । ୧୮୫୭ ସାଲରେ ଉପନ୍ୟାସଟି ପ୍ରଥମେ ପ୍ରକାଶିତ ହେଲା । ପ୍ୟାରିସର ତିନୋଟି ସମ୍ବାଦପତ୍ରରେ ପ୍ରଥମେ ଏହା ଧାରାବାହିକ ଭାବରେ ବାହାରିବା ସଙ୍ଗେସଙ୍ଗେ ସମଗ୍ର ୟୁରୋପରେ ଚହଳ ପଡ଼ିଗଲା ଏବଂ ବହୁ ଭାଷାରେ ମଧ୍ୟ ଅନୂଦିତ ହେଲା, କେବଳ ଓୟେଲସରେ ତିନି ଥର ଛାପା ହେଲା । ଦେଖାଗଲା, କେବଳ ବାଇବେଲ ଛଡ଼ା ଏତେ ଭାଷାରେ ଆଉ କୌଣସି ବହି ଛାପା ହୋଇନାହିଁ । ଟଲଷ୍ଟୟ ମତ ଦେଲେ- ଉପନ୍ୟାସଟି କଳାର ଏକ ଉଚ୍ଚସ୍ତରର ଜ୍ୱଳନ୍ତ ଉଦାହରଣ ।

ଆମେରିକାର ରାଷ୍ଟ୍ରପତି ଆବ୍ରାହମ ଲିଙ୍କନ କହିଲେ- ଏହି ବହିଟି ଆମେରିକାରେ ଗୃହ ଯୁଦ୍ଧର ଏକମାତ୍ର କାରଣ ନ ହେଲେ ସୁଦ୍ଧା ଏକ ବିଶେଷ କାରଣ, ଏଥିରେ କିଛି ସନ୍ଦେହ ନାହିଁ । ଫଳରେ, କ୍ରୀତଦାସ ପ୍ରଥା ବେଆଇନ ଘୋଷିତ ହେଲା । ସମାଲୋଚକମାନେ ମନ୍ତବ୍ୟ କଲେ- ଏହା ତ ଗୋଟିଏ ସାମାନ୍ୟ ଉପନ୍ୟାସ ନୁହେଁ, ପୃଥିବୀରେ ଏକ ଐତିହାସିକ ଘଟଣା ।

ଆଜି ହାରିୟେଟ ଇହଜଗତରେ ନାହାନ୍ତି ସତ, ମାତ୍ର ତାଙ୍କର ଚିର ସ୍ମରଣୀୟ କୃତି ସାରସ୍ୱତ ଗନ୍ତାଘରେ ସଯତ୍ନରେ ସାଇତା ହୋଇଛି । ତେବେ ଏଥିରୁ ଲେଖିକା ଜୀବିତାବସ୍ଥାରେ ତାଙ୍କର ଯଥାଯଥ ସ୍ୱୀକୃତି, ସମ୍ମାନ, ପ୍ରତିପତ୍ତି ଓ ଅର୍ଥ ଲାଭ କରିଥିଲେ । ପରିଣତ ବୟସରେ ସେ ଥରେ ଇଂଲଣ୍ଡକୁ ବୁଲି ଯାଇଥିଲେ । ସେତେବେଳେ ସ୍ୱୟଂ ମହାରାଣୀ ତଥା ଅଗଣିତ

ନରନାରୀ ସେଠାରେ ତାହାଙ୍କୁ ସାଦର ଅଭ୍ୟର୍ଥନା ଜଣାଇଥିଲେ । କିନ୍ତୁ ତାଙ୍କର ଶେଷ ଜୀବନ ଅତ୍ୟନ୍ତ ଦୁଃଖଦାୟକ ଓ ମର୍ମସ୍ପର୍ଶୀ ବୋଲି କୁହାଯାଇପାରେ ।

ହିନ୍ଦୀ ସାହିତ୍ୟର ଯଶସ୍ୱୀ ଔପନ୍ୟାସିକ ଯଜ୍ଞଦତ୍ତ ଶର୍ମା ଭାରତୀୟଙ୍କ ନିକଟରେ ଅବଶ୍ୟ ଅପରିଚିତ ନୁହନ୍ତି । ତେଣୁ ତାହାଙ୍କ ସମ୍ବନ୍ଧରେ ଆଲୋଚନା ଏଠାରେ ନିଷ୍ପ୍ରୟୋଜନ ।

ଦେଖିବା ଚାଲନ୍ତୁ, ଆଉ କୋଠରୀରେ କି କି ରତ୍ନସବୁ ଅଛି ।

## କଳାପିଲା

### ରିଚାର୍ଡ ରାଇଟ୍

ଆମେରିକାର ସାଂପ୍ରତିକ ସାମାଜିକ ଜୀବନ ଓ ଚଳଣି ଶିଶୁମାନଙ୍କର ଶିକ୍ଷା ଓ ମାନସିକ ବିକାଶ ଉପରେ କିପରି ପ୍ରଭାବ ବିସ୍ତାର କରିଛି, ବିଶେଷତଃ ନିଗ୍ରୋ ପିଲାମାନେ କିପରି କଳା-ଗୋରା ଭେଦଭାବର ଶିକାର ହେଉଛନ୍ତି, ସେହି ସଂପର୍କରେ ଅନେକ କଥା "କଳାପିଲା" ଉପନ୍ୟାସଟିରୁ ଜାଣିହେବ । ତାହା ଛଡ଼ା ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ପିଲାଟିଏ ଦୃଢ଼ ଇଚ୍ଛାଶକ୍ତି ବଳରେ ଜୀବନ ସଂଗ୍ରାମରେ କିପରି ବିଜୟୀ ହୋଇପାରେ, ତହିଁର ରୋମାଞ୍ଚକର କାହାଣୀ ଏଥିରେ ଦିଆଯାଇଛି ।

ରିଚାର୍ଡ ରାଇଟ୍ (୧୯୦୮) ନିଜେ ବି ଜଣେ କଳାଲୋକ, ମିସିସିପିରେ ଜନମ । ସେ ଅଠର ବର୍ଷ ବୟସରେ ଚିକାଗୋକୁ ଆସିଲେ, ସରକାରୀ ଡାକ ବିଭାଗରେ ଚାକିରି ପାଇଲେ, ଆଉ ଲେଖାଲେଖିରେ ମନ ଦେଲେ । ସେ ଅଚିରେ ଜଣେ ବାମପନ୍ଥୀ କବି ଓ ଲେଖକ ଭାବରେ ସ୍ୱୀକୃତି ଲାଭ କଲେ । "ଟମ କକାଙ୍କ ପୁଅଝିଅ" କାହାଣୀ ସକାଶେ ସେ ୧୯୩୮ରେ ଶ୍ରେଷ୍ଠ କଥାକାର ରୂପେ "ଷ୍ଟୋରୀ ମାଗାଜିନ ପୁରସ୍କାର" ପାଇଥିଲେ । "ନେଟିଭ ସନ" ଉପନ୍ୟାସ ଯୋଗୁଁ ସେ ବିଶ୍ୱବିଖ୍ୟାତ ହେଲେ । "ବ୍ଲାକବୟ" (କଳାପିଲା) ଉପନ୍ୟାସଟି ହେଲା ତାଙ୍କର ଶେଷ ରଚନା ଏବଂ ଆମେରିକାରେ ବହୁଳ ପ୍ରଚାରିତ ।

ଏହି ଉପନ୍ୟାସର କଥାସାର "ଶିଶୁଲେଖା" ପତ୍ରିକାରେ ୧୯୯୩-୯୪ରେ ପ୍ରକାଶିତ ହୁଅନ୍ତେ, ପାଠକଗଣଙ୍କ ଅତୁଟ ଶ୍ରଦ୍ଧା ତା' ଉପରେ ପଡ଼ିଲା । ପାଠକଙ୍କ ଅନୁରୋଧ କ୍ରମେ ବର୍ତ୍ତମାନ ତାହା ବହି ଆକାରରେ ପ୍ରକାଶିତ ହେଲା । ଏଥିପାଇଁ ସଂପାଦକ ତଥା ପ୍ରକାଶକଙ୍କୁ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

## ପରିଶିଷ୍ଟ - ୧୨

## ସହାୟକ ଗ୍ରନ୍ଥ


୧। ତପୋବନର ତପସ୍ୱୀ : ଲକ୍ଷ୍ମୀନାରାୟଣ

୨। ନବପତ୍ର (୧୯୯୦ ରୁ ୧୯୯୨)

୩। କୋଣାର୍କ (ବିଷୁବ ସଂଖ୍ୟା-୨୦୦୬)

୪। ମାସିକ ସାହିତ୍ୟପତ୍ର 'ଜନସୁଧା' (ଫେବୃଆରୀ ୨୦୦୩ ସଂଖ୍ୟା)

୫। ଦୈନିକ ସମ୍ବାଦପତ୍ର 'ଆଇନା' (୧୩ ମାର୍ଚ୍ଚ ୨୦୦୫)

୬। 'ଧ୍ୱନି ପ୍ରତିଧ୍ୱନି' (ସାପ୍ତାହିକୀ- ରବିବାର ଚିଠି-ଅଧାପକ ବିଶ୍ୱରଂଜନ- ୦୬.୦୫.୦୭)



କେନ୍ଦ୍ର ସାହିତ୍ୟ ଏକାଡେମୀ ଅନୁବାଦ ପୁରସ୍କାର

